# ବାକ୍‌ତତ୍ତ୍ୱ

(ଶାସ୍ତ୍ରୀୟ ନିବନ୍ଧ କେତୋଟି)

ରଚନା : ନକୁଳ ଚଂଦ୍ର ସାହୁ
'ଶବ୍ଦଘର', ଗୋଡ଼ିସାହି, କଟକ-୭୫୪୦୦୬

ପ୍ରକାଶକ : କାବ୍ୟଲୋକ
ନିଜିଗଡ଼ କୁରୁଖି, ହରିରାଜପୁର
ଜଟଣୀ, ପୁରୀ-୭୫୨୦୫୦
ମୋ: ୯୪୩୭୨୮୩୯୦୭

ସ୍ୱତ୍ୱ : ଶ୍ରୀମତୀ ସୁଚିତ୍ରା ସାହୁ

ପ୍ରଚ୍ଛଦ : ବିଜୟ ପ୍ରଧାନ
ଅକ୍ଷର : ଉଦୟ ନାରାୟଣ ଚଇନି
ମୁଦ୍ରଣ : ଜଗନ୍ନାଥ ଗ୍ରାଫିକ୍ସ, ଭୁବନେଶ୍ୱର-୨୨
ପ୍ରଥମ ପ୍ରକାଶ : ଶ୍ରୀଗୁଣ୍ଡିଚା-୨୦୧୬
ମୂଲ୍ୟ : ୨୦୦ ଟଙ୍କା ମାତ୍ର

---

# Vāk Tattwa

(Theories of Vāk )

By **Nakula Chandra Sahoo**
Sabda Ghara, Godisahi, Cuttack-754006

Publisher **Kavyaloka**
Nijigarh Kurukhi, Harirajpur, Jatani, Puri-752050
M-9437283907

© Smt. Suchitra Sahoo

Cover Bijay Pradhan
D.T.P. Udaya Narayan Chaini
Printer Jagannatha Graphic, BBSR-22
1st. Edition Srigundicha-2016
Price **Rs. 200/- only**

**ISBN 978-93-85316-53-1**



Source: Author, Digitized by PPRACHIN, SOA



ସଦ୍‌ଗୁରୁ ଶ୍ରୀ ଶ୍ରୀ ଓଁକାର ବାବା

*ଶ୍ରୀଗୁରୁ ଚରଣ ସଜ ସରୋଜ ତଳେ*

- ନକୁଳ ଚଂଦ୍ର



Source: Author, Digitized by PPRACHIN, SOA

## ଆଦ୍ୟ ସମାସ

**ବାକ୍‌କଳା**



## ଅଧଃ ସମାସ

**ଓଡ଼ିଆ ଭାଷା ସୃଷ୍ଟି କଳା**



Source: Author, Digitized by PPRACHIN, SOA

# ପ୍ରାକ୍‌ବାକ୍

ଶାସ୍ତ୍ରୀୟ ଓଡ଼ିଆ ଭାଷାର ଖଣ୍ଡିଏ ଶାସ୍ତ୍ରୀୟ ଗ୍ରନ୍ଥ 'ବାକ୍‌ତତ୍ତ୍ୱ' । ଦୁଇଟି ଅଧ୍ୟାୟରେ ବିଭକ୍ତ । ପ୍ରଥମ ଅଧ୍ୟାୟ 'ବାକ୍‌କଳା' । ଦ୍ୱିତୀୟ ଅଧ୍ୟାୟ 'ଓଡ଼ିଆ ଭାଷା ସୃଷ୍ଟିକଳା' ।

'ବାକ୍‌ତତ୍ତ୍ୱ' ଏକ ସାହିତ୍ୟ ଗ୍ରନ୍ଥ । ସାହିତ୍ୟ ସର୍ଜନା ପାଇଁ ପଥ ପ୍ରଦର୍ଶକ ସାହିତ୍ୟତାତ୍ତ୍ୱିକ ପୁସ୍ତକ । ଭାରତୀୟ ଆଦିସାହିତ୍ୟ ବେଦ ଓ ତନ୍ତ୍ର ଆଧାରିତ ଏହାର ପ୍ରସଂଗ । ଏହାର ଦୁଇଟି ପାର୍ଶ୍ୱ; ସାହିତ୍ୟ ଓ ଆଧ୍ୟାତ୍ମିକ । ଏହାର ଦୁଇଟି ପକ୍ଷ; ଭାରତୀୟ ଦର୍ଶନ ଓ ଯୌଗିକ କ୍ରିୟା ମାଧ୍ୟମରେ ପରାଶକ୍ତିଙ୍କ ଅକ୍ଷର ବ୍ରହ୍ମ ରୂପରେ କିପରି ଘଟିଚି ଜନ୍ମ, ତାହା ଅନୁଶୀଳନ । ସାରସ୍ୱତ ସୃଷ୍ଟିର ଆଦିଉତ୍ସ ଋଗ୍‌ବେଦର ବାଗାମ୍ଭୃଣୀସୂକ୍ତ ଆଲୋଚିତ ।

ସୃଷ୍ଟିର ଆଦି କଳା 'ବାକ୍' ପୁଣି 'ବାକ୍' ସେହି କଳା ଯାହା କଳା ସର୍ଜନାର ଭଗ । ସମଷ୍ଟି ରୂପରେ ଯିଏ ବେଦାନ୍ତର ପ୍ରକୃତି, ବେଦର ସରସ୍ୱତୀ ଓ ସୃଷ୍ଟିର ଈଶ୍ୱରୀ; ଅଦ୍ୱୈତର ସିଏ ମାୟାଏବଂ ସିଦ୍ଧଙ୍କ କୁଣ୍ଡଳିନୀ ! ଶୈବତନ୍ତ୍ରର 'ପ୍ରକାଶ'ଙ୍କ ସେହି 'ବିମର୍ଶ'ଙ୍କୁ ଦଶଦିଗରୁ ଛଅଟି ଆଲୋଚନା ମଧ୍ୟରେ ଦର୍ଶନ କରିବା ଓ କରାଇବା ଉଦ୍ୟମ କରାଯାଇଛି । ଏହା ଗୋଟିଏ ସାରସ୍ୱତ ସୃଷ୍ଟିକଳାତତ୍ତ୍ୱ ।

ବାକ୍ ପରାଶକ୍ତି, ପରାକଳା । ସିଏ ଉଚ୍ଚାରିତ ହେଲେ ଧ୍ୱନି, ହୁଏ ଶବ୍ଦ । ଶବ୍ଦ ଦୁଇ ପ୍ରକାର, ଉଚ୍ଚରିତ ଓ ଅନୁଚ୍ଚାରିତ । ଅନୁଚାରିତ ଅନାହତ ଶବ୍ଦ 'ଶକ୍ତି' ସିଏ ଦେବୀ ଓଁ । ଉଚ୍ଚାରିତ ଓଁ ଅଟେ ଶବ୍ଦ । ଶବ୍ଦ ଓଁ ଅକ୍ଷର ତତ୍ତ୍ୱ ବୈଖରୀ । ଅନୁଚାରିତ ଓଁ ପରା ପଶ୍ୟନ୍ତି ଓ ମଧ୍ୟମା; ତାଙ୍କର ରୂପ ତିନୋଟି ପରାବାକ୍ ମୂଳାଧାର ଚକ୍ରର 'ସ୍ପଂଦ'(Dynamic Creative power) ଅଟନ୍ତି । ପଶ୍ୟନ୍ତି ଓ ମଧ୍ୟମା ତୁରୀୟ ଓ ସୁଷୁପ୍ତିରେ ଉଚ୍ଚାରିତ; ଏହାକୁ ମାନବ ସ୍ମୃତିକୋଷ କରି ପାରି ନଥାଏ ସଂରକ୍ଷିତ ।

'ସ୍ପଂଦ' (movement) ଅର୍ଥ 'ସ୍ଫୋଟ' (Explosion) । ଏହାର ପ୍ରତିଶବ୍ଦ 'ସ୍ଫୁରଣ' (Throb), 'କଂପନ' (Trembling), ଚଳନ, (Motion), 'ଉଦୟ' (Arise), 'ଉନ୍ମେଷ' (Expansion), 'ଆଭାସନ' (Reflection), ଏବଂ ଉନ୍ମୀଳନ (Unfolding) ପ୍ରଭୃତି । 'ସ୍ପଂଦ' ଆନ୍ଦୋଳିତ ଇଚ୍ଛାଶକ୍ତି, ଇଚ୍ଛାତ୍ୱଂ ତସ୍ୟେ ସା ଦେବୀ (ମାଳିନୀବିଜୟ ତନ୍ତ୍ର ୩.୫), ଇଚ୍ଛାଶକ୍ତି ପ୍ରକଟିତା ହେଲେ ସିଏ ଜ୍ଞାନଶକ୍ତି ଓ କ୍ରିୟାଶକ୍ତି ରୂପରେ ରଚନ୍ତି ପ୍ରବାହ ।



Source: Author, Digitized by PPRACHIN, SOA

'ସ୍ପଂଦ', 'ଆଦିସ୍ଫୁରଣ', ଯେତେବେଳେ ଶକ୍ତିଙ୍କ ଘଟେ ଉନ୍ମେଷ ! 'ସ୍ପଂଦ ସ୍ୱରୂପଃ' ପ୍ରବନ୍ଧରେ କୁହାଯାଇଛି, 'Spanda is the constant vibration,' ସ୍ୱାତ୍ମନ୍ୟୁଚ୍ଛଳନାତ୍ମକଃ, spanda is the leaping up of the lord's own shakti,' ସାଧାରଣ 'ସ୍ପନ୍ଦ', 'ବିମର୍ଶଶକ୍ତି'ଙ୍କ active ଉପାଦନ । ସିଏ 'ପ୍ରକାଶ' ସହିତ ଥାଆନ୍ତି Co-exists । 'ସ୍ପଂଦଶକ୍ତି' ପରମ ଶିବଙ୍କ ସତ୍ୟ ପ୍ରକୃତି । ଏହି ନିର୍ମଳ ସର୍ବୋଚ୍ଚ ସତ୍ୟ ପ୍ରତିଫଳିତ କରେ ପୂର୍ଣ୍ଣତାର ୩୬ ତତ୍ତ୍ୱ । 'ସ୍ପଂଦ' ମନ୍ତ୍ରର ପ୍ରାଣ ଶକ୍ତି । ଚେତନାର ଆନନ୍ଦ ଚିତ୍‌ଶକ୍ତି ସ୍ୱରୂପ ବ୍ରହ୍ମାଣ୍ଡ ପରିବ୍ୟାପ୍ତ ଏହି ଶକ୍ତି କରିଥାଏ ଶିବଙ୍କ ପ୍ରତିଷ୍ଠା ।

ସ୍ପଂଦରୁ ସୃଷ୍ଟି ଇଚ୍ଛାଶକ୍ତି, ଜ୍ଞାନଶକ୍ତି ଓ କ୍ରିୟାଶକ୍ତିଙ୍କ ପ୍ରବାହର ମାର୍ଗ ତିନୋଟି, ବର୍ଣ୍ଣ, ପଦ ଓ ମନ୍ତ୍ର । ପରାବାକ୍‌ଙ୍କ ସ୍ୱରୂପ (Form) ଛଅଟି ବା ଛଅଟି ତାଙ୍କ ଗତିପଥ (Courses) । ତିନୋଟି ସବ୍‌ଜେକ୍ଟିଭ । ବର୍ଣ୍ଣ, ପଦ ଓ ମନ୍ତ୍ର । ଅବ୍‌ଜେକ୍ଟିଭ୍ ଦୃଷ୍ଟିରୁ ଅନ୍ୟ ତ୍ରୟ କଳା, ତତ୍ତ୍ୱ ଓ ଭୁବନ ଅଟନ୍ତି (The Garland of letters, Sir John Woodroffe) । ପ୍ରାଣ ସହସ୍ରାରରେ ରହିଲେ ସ୍ଥିର, ଯୋଗୀ ଅନାହତ ଧ୍ୱନି ଦଶ ପ୍ରକାର କରିଥାନ୍ତି ଶ୍ରବଣ । ତାହାକୁ ଯୋଗଶାସ୍ତ୍ର କହନ୍ତି 'ବର୍ଣ୍ଣ' । 'ଉଚ୍ଚାରକରଣ ଧ୍ୟାନ ବର୍ଣ୍ଣ ସ୍ଥାନ ପ୍ରକଳ୍ପନୈଃ'; ଏଗୁଡ଼ିକ ପଦ୍ଧତି, ଯହିଁରେ ସଂପାଦିତ ହୋଇଥାଏ ଜୀବସତ୍ତା ବୋଲି 'ମାଳିନୀ ବିଜୟତନ୍ତ୍ର' ବର୍ଣ୍ଣନା କରିଛନ୍ତି । ତେଣୁ ଏହି ଜଗତ ଦେବତାର କାବ୍ୟ ଓ ତାଙ୍କ ପରମ ଚେତନାର ପ୍ରକାଶ, ବର୍ଣ୍ଣନା କରିଛନ୍ତି ବେଦ । ଏହି ଠାରୁ ଆରମ୍ଭ କରାଯାଇଛି ପ୍ରସଂଗ 'ସାହିତ୍ୟର ଆଦିତତ୍ତ୍ୱ' । ବ୍ରହ୍ମ ଓ ବାକ୍....ଯାବଦ୍ ବ୍ରହ୍ମ ବିଶିଷ୍ଟଂ ତାବତୀ ବାକ୍ (ଋଗ୍‌ବେଦ ୧୦/୧୬୪/୮), ସେହି ପରମ ଚେତନା ବ୍ରହ୍ମ, ବାକ୍ ସେହି ଚେତନାଙ୍କ ସ୍ୱତଃସ୍ଫୂର୍ତ୍ତ ପ୍ରକାଶ । ଶବ୍‌ଦବ୍ରହ୍ମ ସର୍ବଭୂତଙ୍କ ଚୈତନ୍ୟ, ଚୈତନ୍ୟଂ ସର୍ବଭୂତାନାଂ ଶବ୍‌ଦ ବ୍ରହ୍ମେତି ମେ ମତିଃ । ପୁଣି-ଶବ୍‌ଦ ବ୍ରହ୍ମେତି ଶବ୍‌ଦାର୍ଥଂ ଶବ୍‌ଦମ୍... ! ଶବ୍‌ଦବ୍ରହ୍ମଙ୍କ ଆଙ୍ଗିକ ଶବ୍‌ଦ (Art form) ଅର୍ଥ ସହିତ । ଅର୍ଥ ଦ୍ୱାରା ଶବ୍‌ଦ ବନ୍ଧା । ଶବ୍‌ଦମାନେ ଦିଅନ୍ତି ଅସୀମର ସ୍ୱାଦ ।

"Writing is making an attempt to say something in a beautiful and pleasing manner," ସାହିତ୍ୟ ଆତ୍ମରସ ! ରୁଚିଶୀଳ ଭାଷାରେ ଅଭିବ୍ୟକ୍ତ ଏବଂ ଭାଷା ହିଁ ସାହିତ୍ୟର ବାହକ । ସାହିତ୍ୟ ଶୁଷ୍କ ଶବ୍‌ଦସାଣ ନୁହେଁ, 'ବିଷୟଃ ପରମେଶ୍ୱରୀ' ! ସାହିତ୍ୟ ଶବ୍‌ଦଚିତ୍ର ! ଶବ୍‌ଦ ଓ ସଂସାର ଊର୍ଦ୍ଧ୍ୱରେ ବିଦ୍ୟମାନ ନିଃଶବ୍‌ଦର ଆତ୍ମତତ୍ତ୍ୱ ! ବିବିଧଦିଗ ଓ ଦୃଷ୍ଟିରୁ ହୋଇଛି ଅନୁଶୀଳିତ ।

'ବାକ୍‌ତତ୍ତ୍ୱ' ଥିଓରୀ ଦୃଷ୍ଟିରୁ ସାହିତ୍ୟ-ଦର୍ଶନ ଏବଂ ପ୍ରାକ୍ଟିକାଲ୍ ଦୃଷ୍ଟିରୁ ଯୋଗ । ବାହ୍ୟ ଦୃଷ୍ଟିକୋଣରୁ ରଚନା ସୃଷ୍ଟିଜ୍ଞାନ ହୋଇଥିବା ବେଳେ ପ୍ରାୟୋଗିକ ଅନୁଭବ ଦୃଷ୍ଟିରୁ



Source: Author, Digitized by PPRACHIN, SOA

ଏହା ଗୁରୁଜ୍ଞାନ । ପ୍ରାରବ୍ଧ ପୁଣ୍ୟ ଓ ଗୁରୁକୃପା ଏହି ଉପଲବ୍ଧିର ପାଥେୟ ! ଶବ୍‌ଦର ଚିନ୍ମୟ ଅସ୍ତିତ୍ୱ ବାକ୍ ଏବଂ ବାକ୍‌ର ଜଡ଼ତତ୍ତ୍ୱ ଶବ୍‌ଦ । ବାକ୍ ଅରୂପ ଚିନ୍ମୟ ବୀଜ ଏବଂ ଶବ୍‌ଦ ଯେମିତି ଛାୟାଛନ୍ନ ସବୁଜ ପାଦପର ଦୃଶ୍ୟ, ଇନ୍ଦ୍ରିୟଗ୍ରାହ୍ୟ । ବାକ୍ ଅତୀନ୍ଦ୍ରିୟ ।

ଦ୍ୱିତୀୟ ପ୍ରସଂଗ 'ବାକ୍‌ତତ୍ତ୍ୱ' । 'ଶବ୍‌ଦସାଧନା' କୁଣ୍ଡଳିନୀର ବିଷୟ । 'ବାକ୍' ପରାଶକ୍ତି କୁଣ୍ଡଳିନୀର ଏକ ମହତ୍ତ୍ୱପୂର୍ଣ୍ଣ ରୂପ । ତେଣୁ 'ବାକ୍'କୁ କୁହାଯାଇଛି 'ପରମତତ୍ତ୍ୱ' ।

ଶବ୍‌ଦସାଧନା ସିଦ୍ଧାନ୍ତର ମୂଳସ୍ରୋତ ବେଦ । ବେଦ ଅନୁଯାୟୀ ଶବ୍‌ଦ ସମସ୍ତ ଶକ୍ତିର କେନ୍ଦ୍ର । ଦୁଇଟି ବସ୍ତୁର ଆଘାତରୁ ଉତ୍ପନ୍ନ ଶବ୍‌ଦ ଧ୍ୱନ୍ୟାତ୍ମକ । ବିନା କୌଣସି ଆଘାତରୁ ଉତ୍ପନ୍ନ ଶବ୍‌ଦ 'ବ୍ରହ୍ମ' ତାହା 'ବ୍ରହ୍ମଶବ୍ଦ' । 'ଧ୍ୱନ୍ୟାତ୍ମକ' ଓ 'ବର୍ଣ୍ଣନାତ୍ମକ' ଶବ୍‌ଦ ଦ୍ୱିବିଧ । ପୁଣି ତାହା 'ସୂକ୍ଷ୍ମବାକ୍' ଓ 'ସ୍ଥୁଳବାକ୍' ଭେଦରେ ଦ୍ୱିବିଧ । ଅଦ୍ୱୈଇ ଅକ୍ଷର ଶବ୍‌ଦ 'ବିଦ୍ୟା' ଏବଂ ଅଦ୍ୱୈଇ ତତ୍ତ୍ୱର ସମନ୍ୱୟ 'ଓଁ' । ବର୍ଣ୍ଣମାଳା ଦୃଷ୍ଟିରୁ 'ଅ' ଶିବତତ୍ତ୍ୱ । ଅନ୍ତିମ 'ହ' ଶକ୍ତିତତ୍ତ୍ୱ । 'ଅ' ଓ 'ହ' ସହିତ 'ମ' ଯୁକ୍ତ ହେଲେ 'ଅହମ୍' 'କାମକଳାର'ର ଅନ୍ୟନାମ । ହାର୍ଦ୍ଦକଳା ଅଟେ କାମକଳା । ଶିବତତ୍ତ୍ୱ ସହିତ ମିଶ୍ରିତ ଶକ୍ତିତତ୍ତ୍ୱ ଅଟେ କାମକଳାର ଆତ୍ମତତ୍ତ୍ୱ । ଶବ୍‌ଦ ଜଗତ ମିଥୁନାତ୍ମକ । ସ୍ୱର ଓ ବର୍ଣ୍ଣର ମିଥୁନାତ୍ମକ ସଂଯୋଗରୁ ସୃଷ୍ଟି ଶବ୍‌ଦ ।

ଭାରତୀୟ ବାକ୍‌ତତ୍ତ୍ୱ ପରମ ରହସ୍ୟମୟ । ସେହି ରହସ୍ୟର ଚକ୍ରବ୍ୟୂହ ଦ୍ୱାର ଗୋଟିଏ ପରେ ଗୋଟିଏ କରାଯାଇଛି ଉନ୍ମୋଚିତ ।

ପରବର୍ତ୍ତୀ ଆଲୋଚନାର ଶୀର୍ଷକ 'ଭାରତୀୟ ଅକ୍ଷରତତ୍ତ୍ୱ' । ଆତ୍ମପୁରୁଷଙ୍କ ପୌରୁଷ ଶବ୍‌ଦ । 'ତତ୍‌ମିଦଂ ସର୍ବମ୍...। ଶବ୍‌ଦ ଅକ୍ଷର ଗଢ଼ା । 'ଯଦକ୍ଷରଂ ବେଦବିଦୋ ବଦନ୍ତି...' ! ତାହା 'ବାକ୍‌ବୈବ୍ରହ୍ମ' 'ବିଶ୍ୱରୂପାଃ' । କେମିତି ତାଙ୍କୁ ଅନୁସ୍ମରଣ କରୁଛି ଜୀବ, ମାନବ ଲାଭ କରୁଛି ଜୀବନର ଲକ୍ଷ୍ୟ ? 'ତଦକ୍ଷରଂ ତତ୍' ଏକ ଉପଶୀର୍ଷକ । ସେ ଏହି ଅକ୍ଷର 'ତତ୍',ତତ୍, ଅର୍ଥ ଈଶ୍ୱର । ଏହି ଅନୁଶୀଳନର ଅନ୍ତିମ ପର୍ବ 'ସର୍ବବର୍ଣ୍ଣାଗ୍ରୟଃ (ଅ) ପ୍ରକାଶଃ ପରମଶିବଃ' । ମୂଳାଧାରରୁ ଉଦୟ ଅକ୍ଷର ଅଟନ୍ତି 'ଶକ୍ତି' । ଯିଏ ଜୀବକୁ ଜୀବନ ପ୍ରଦାନ କରିଛନ୍ତି ।

ବ୍ରହ୍ମଙ୍କ ଦୁଇତତ୍ତ୍ୱ, ସତ୍ ଓ ଅସତ୍ । ସତ୍ ଚୈତନ୍ୟ । ଅସତ୍ ଜଡ଼ । ମନ୍ତ୍ରର ଶବ୍‌ଦ ସତ୍ । ଗଳ୍ପ ଓ କବିତାର ଶବ୍‌ଦ ଅସତ୍ । ଅକ୍ଷରତତ୍ତ୍ୱ ସିଦ୍ଧତତ୍ତ୍ୱ । ଶବ୍‌ଦ ଔପଦେଶିକ ଓ ନିଃଶବ୍‌ଦ ସ୍ୱୟଂ ପ୍ରକାଶ ବା ଆତ୍ମଦର୍ଶନ । ବାଚକ ଭୂମି ଉପରେ ବର୍ଣ୍ଣରୁ ମନ୍ତ୍ର ଓ ମନ୍ତ୍ରରୁ ହୁଏ ପଦର ବିକାଶ । ସେହିପରି ବାଚ୍ୟ ଭୂମି ଉପରେ କଳାରୁ ତତ୍ତ୍ୱ, ତତ୍ତ୍ୱରୁ ଭୁବନ ବା କାର୍ଯ୍ୟ ପଦାର୍ଥ ହୋଇଛି ଉତ୍ପନ୍ନ । ଯାହା କଳାତତ୍ତ୍ୱ ତାହା ଅକ୍ଷର (ଅବିନାଶୀ) ତତ୍ତ୍ୱ ।



Source: Author, Digitized by PPRACHIN, SOA

ପରବର୍ତ୍ତୀ ଏପିସୋଡ୍ 'ଭାରତୀୟ ଶବ୍‌ଦବାଦ' ଏକ ବିସ୍ତୃତ ଅନ୍ୱେଷା ଏବଂ ବୀକ୍ଷାରେ ରହିଛି ସାହିତ୍ୟର ସମକାଳ ସ୍ୱଭାବ । ଏହାର ପ୍ରଥମ ଅନ୍ୱେଷା ଶବ୍ଦବ୍ରହ୍ମମୟୀ ଦେବୀ ଏକ ଓ ଅନେକ ଅକ୍ଷର ଆକୃତି । ଦ୍ୱିତୀୟ ଅନ୍ୱେଷାର ଶୀର୍ଷକ 'ଋଗବେଦ ବାଗାମ୍ଭୃଣୀସୂକ୍ତ: ସରସ୍ୱତୀରୁ ଶିବା କଳାର ଜନନୀ । ତୃତୀୟ ଅନ୍ୱେଷା 'ରସସିଦ୍ଧାନ୍ତ ମୂଳତତ୍ତ୍ୱ', ଚତୁର୍ଥ ରସ ସିଦ୍ଧାନ୍ତ ଅନ୍ତର୍ଗତ 'ରସେଶ୍ୱର ତତ୍ତ୍ୱ' ଏବଂ ପଞ୍ଚମ ଅନ୍ୱେଷାର ଶୀର୍ଷକ 'ବୈଦିକ ଶବ୍‌ଦବାଦ' । ଏହି ଅଧ୍ୟାୟ ଦୀର୍ଘ । ସାଧାରଣ ପାଠକଙ୍କ ପାଇଁ ହୁଏତ କ୍ଲିଷ୍ଟ ! ଯେଣୁ ବିଷୟଟି ପୂର୍ଣ୍ଣ ଯୋଗ-ତାନ୍ତ୍ରିକ । ଆଗମ ଓ ନିଗମ ଦୁଇ ଶାସ୍ତ୍ରଙ୍କ ମନ୍ଥନଜ ସ୍ୱର ।

ତତ୍‌ପରବର୍ତ୍ତୀ ଅଧ୍ୟୟ 'ଭାରତୀୟ ବିଦ୍ୟା ଓ କଳାତତ୍ତ୍ୱ' । ସେ ବିଦ୍ୟା କିଏ ଯିଏ ପ୍ରଦାନ କରନ୍ତି ମୁକ୍ତି ? ଅବିଦ୍ୟା କ'ଣ ? ମହାବିଦ୍ୟା କ'ଣ ଏବଂ କେତୋଟି ? ବ୍ରହ୍ମସୂତ୍ରାନୁଯାୟୀ 'ବ୍ରହ୍ମବିଦ୍ୟା'ର ସ୍ୱରୂପ ଏବଂ ବୈଦିକ ବିଦ୍ୟାତତ୍ତ୍ୱର ଦୃଷ୍ଟିପାତ ! କଳା କ'ଣ ? କଳା ନିଜେ ନାମ ଓ ରୂପ ପ୍ରାଣ ଦ୍ୱାରା ସଂଜୀବୀତ । କଳା ରସ । ବୈଦିକ ଓ ତାନ୍ତ୍ରିକ ତତ୍ତ୍ୱ ଦ୍ୱାରା ହୋଇଛି ଅନୁଶୀଳିତ !

ସର୍ଜ୍ଜନାର ମୂଳ ଅବସ୍ଥା ଅବ୍ୟକ୍ତାବସ୍ଥାର ନାମ ଶକ୍ତି ଏବଂ ବ୍ୟକ୍ତାବସ୍ଥାର ନାମ କଳା । ସାହିତ୍ୟର ମୂଳ ଅବ୍ୟକ୍ତାବସ୍ଥାର ନାମ ବାକ୍ ଏବଂ ବ୍ୟକ୍ତାବସ୍ଥାର ନାମ ସାହିତ୍ୟ । ଜଗତର ମୂଳାବସ୍ଥା ଅବ୍ୟକ୍ତାବସ୍ଥା ଅଟେ ପ୍ରକୃତି ଏବଂ ବ୍ୟକ୍ତାବସ୍ଥାର ନାମ ବିକୃତି ବା ଜଗତ । ଜଗତର ଆଦି ବୀଜ ପ୍ରକୃତି: ପ୍ରକର୍ଷେଣ ସୃଷ୍ଟ୍ୟାଦିକଂ କରୋତୀତି = ପ୍ର+କୃ+ତି= ପ୍ରକୃତି କର୍ତ୍ତରି କ୍ତିଚ୍ ପ୍ରତ୍ୟୟଃ । ସେ ଭଗବାନଙ୍କର ମାୟାଶକ୍ତି,ପରା ଓ ଅପରା । ପ୍ରକୃତିକୁ ପଞ୍ଚଧା ବିଭକ୍ତ କରି ବର୍ଣ୍ଣନା କରିଛନ୍ତି 'ବ୍ରହ୍ମବୈବର୍ତ୍ତ':

ଗଣେଶ ଜନନୀ ଦୁର୍ଗା, ରାଧା, ଲକ୍ଷ୍ମୀଃ, ସରସ୍ୱତୀ
ସାବିତ୍ରୀ ଚ ସୃଷ୍ଟିବିଧୌ ପ୍ରକୃତିଃ ପଞ୍ଚଧାସ୍ମୃତ ।

ସୃଷ୍ଟିବିଧାନ ପାଇଁ ପ୍ରକୃତି ଦୁର୍ଗା, ରାଧା, ଲକ୍ଷ୍ମୀ, ସରସ୍ୱତୀ ଓ ସାବିତୀ ଭେଦରେ ପଞ୍ଚଧା ବିଭକ୍ତ । ଜନ୍ମିତ ବା ଜନ୍ମବାନ୍ ବସ୍ତୁର ଆଦି ରହିଛି । ସେମିତି ରହିଛି ଜଗତର ଆଦିତତ୍ତ୍ୱ ତିନୋଟି ଲୋହିତ ରଜ, ଶୁକ୍ଳ ସତ୍ତ୍ୱ ଏବଂ କୃଷ୍ଣତମ: ସତ୍ତ୍ୱରଜସ୍ତମସାଂ ସାମ୍ୟାବସ୍ଥା ପ୍ରକୃତିଃ । ଏହି ତତ୍ତ୍ୱ ତ୍ରୟ ସମାନାବସ୍ଥାକୁ କହନ୍ତି ପ୍ରକୃତି । ଆତ୍ମା (ପୁରୁଷ) ବ୍ୟତୀତ ଅନ୍ୟ ସର୍ବତ୍ର ଜଗତ୍ ପ୍ରକୃତି ପରିବ୍ୟାପ୍ତ । ପ୍ରକୃତିର ଆତ୍ମତତ୍ତ୍ୱ ଶକ୍ତି ଏବଂ ତାହା ତ୍ରିଗୁଣାତ୍ମିକା । ତ୍ରିଗୁଣାତ୍ମିକା ଶକ୍ତିଙ୍କ ଆକର୍ଷଣ ଓ ବିକର୍ଷଣରୁ କଳା ସୃଷ୍ଟି । ଯେମିତି ସମୁଦ୍ରରୁ କୂଳରେ ପିଟି ହେଉଥିବା ନୃତ୍ୟାୟିତ ଲହରୀମାଳା ଓ ସେମାନଙ୍କର ଉତ୍ତାଳ ଧ୍ୱନି ! ପୁଣି ପ୍ରକୃତିକୁ ଯଦି ପରା ଓ ଅପରା ଭେଦରେ ଗ୍ରହଣ କରିବା ବାକ୍ ଓ କଳା ଦୁହେଁ ପରାଶକ୍ତି । ପୌରାଣିକ ସାକାର ମୂର୍ତ୍ତିଦୃଷ୍ଟିରୁ ସେ ସରସ୍ୱତୀ ଏବଂ ଏହାଙ୍କ ମୂଳତତ୍ତ୍ୱ ଋଗ୍‌ବେଦର



Source: Author, Digitized by PPRACHIN, SOA

ବାଗାମ୍ଭୃଣୀୟସୂକ୍ତ; ସୂଚନା ଅନାବଶ୍ୟକ । ଏହି ଅଧ୍ୟାୟର ଶେଷ ପ୍ରବନ୍ଧ 'ଶାସ୍ତ୍ରୀୟ କଳାପର୍ଯ୍ୟାବରଣରେ ଆଦିକଳାର ସ୍ୱରୂପ' । ପୂର୍ବ ଏପିସୋଡ୍‌ରେ ବର୍ଣ୍ଣିତ କଳା କ'ଣ ? ଏହି ଏପିସୋଡ୍‌ରେ ବର୍ଣ୍ଣିତ ଆଦିକଳା 'ପ୍ରେମ' । ଚେତନାର ଅନ୍ତର୍ମୁଖୀ ଶକ୍ତି 'ପ୍ରେମ' ଓ ବହିର୍ମୁଖୀ ଶକ୍ତି 'ଅହଂକାର' । ଚେତନା କ'ଣ ? ଚେତନା ମନସ୍ତତ୍ୱ,ପ୍ରାଣତତ୍ତ୍ୱ ଓ ବାକ୍‌ତତ୍ତ୍ୱ ଉର୍ଜାର ମିଶ୍ରଣ । ଚେତନା ପରାଶକ୍ତି ଏବଂ ମାନବ ଚେତନା ଅଟେ ତାର ଆତ୍ମା । ବ୍ରହ୍ମାଣ୍ଡ ଚେତନା ପରମାତ୍ମା ବା ଅଟନ୍ତି ପରମଶିବ । ପ୍ରେମ ହେଲେ ଘଟେ ଭବ ମୁକ୍ତି । କଳା ଖଣ୍ଡରେ ଫସି ଯାଇଥିବା ଆତ୍ମା ଦୁଇ ଖଣ୍ଡଙ୍କ ମିଳନ ବା ପୂର୍ଣ୍ଣତାର ନାମ ପ୍ରେମ । ଯାହା ଜୀବ ଜନ୍ମ ଗ୍ରହଣର ଉଦ୍ଦେଶ୍ୟ ହୋଇଛି ଆବିଷ୍କୃତ । ଜନ୍ମଯାତନାରୁ ପ୍ରମୁକ୍ତିର ପଥ, ମୋକ୍ଷ ଲକ୍ଷ୍ୟ, କରାଯାଇଛି ସୂଚିତ ।

କଳା ଦୈବୀତତ୍ତ୍ୱ । ଅକ୍ଷର ବ୍ରହ୍ମତତ୍ତ୍ୱ । ଅକ୍ଷରଙ୍କ ସାମରସ୍ୟ ଶବ୍ଦ ବ୍ରହ୍ମତତ୍ତ୍ୱ । ବ୍ରହ୍ମମୟୀଙ୍କ କୃପାରୁ ପରିବ୍ୟାପ୍ତ ଅକ୍ଷରଲୀଳା (ସାହିତ୍ୟ ଓ ସଂସାର) ହୋଇଛି ପ୍ରତିପାଦିତ । ଶେଷକୁ ରହିଛି ସତ୍‌ପଥ ସହାୟକ ପ୍ରମାଣିତ କିଛି ଗ୍ରନ୍ଥଙ୍କ ଠିକଣା, ଯାହା ବାକ୍‌ତତ୍ତ୍ୱର ଉତ୍ସ ଓ ପ୍ରେରଣା ।

ଅକ୍ଷର, ଶବ୍ଦ ଓ କଳାର ଜନ୍ମ ବୃତ୍ତାନ୍ତ ପ୍ରଥମ ଅଧ୍ୟାୟରେ ଅନ୍ୱେଷିତ ହୋଇଥିବା ବେଳେ ଦ୍ୱିତୀୟ ଅଧ୍ୟାୟ ବେଳକୁ ଓଡ଼ିଆ ଉଡ୍‌ଡୀୟାନ ପୀଠ ! ତାନ୍ତ୍ରିକ ଭୂମି । ଏହି ଭୂମିରେ କଳାର ବୟସ କେତେ ? 'ଗୀତଗୋବିନ୍ଦ' ରେ କେତେ ପ୍ରତିଶତ ଶବ୍ଦ ବ୍ୟବହୃତ, ଭାବ ଓ ରସ ସଂଯୋଜିତ ଯାହା ଏହି ଭୂମିଜ ? ତତ୍‌କାଳୀନ ରାଷ୍ଟ୍ରୀୟ ଭାଷାଶୁଦ୍ଧ ସଂସ୍କୃତ । କିନ୍ତୁ ଉଡ୍ର ବନବାସୀ 'ଶାବରୀ' ନ କହୁଥିଲେ ବି ତ କହୁଥିଲେ ତ ଏକ ଭାଷା ? ସଂସ୍କୃତ ଶାସ୍ତ୍ରୀୟ ଭାଷାଠୁ ନିଷ୍ଚୟ ଅଲଗା ଗୋଟିଏ ମୌଖିକ ଔଡ୍ରୀଭାଷା ହେଉଥିଲା ବ୍ୟବହୃତ ! କ'ଣ ସେ ଭାଷାର ସ୍ୱରୂପ ?

ଶ୍ରୀରାମଚନ୍ଦ୍ର ମହାରାଜାଙ୍କ କାଳ ଖ୍ରୀ.ପୂ. ୨୦୫୦ ରୁ ଖ୍ରୀ.ପୂ. ୧୯୫୦ କହିଛନ୍ତି A.D. Pusalkar (The History and Culture of the Indian People, Vol.1) ଏବଂ ଏ. କଲ୍ୟାଣରମଣ, ତାଙ୍କ ରଚିତ, ଏସିଆ ପବ୍ଲିସିଂ ହାଉସ୍ (୧୯୬୯) ପ୍ରକାଶିତ ଗ୍ରନ୍ଥ: Aryatarangini, vol. I ରେ ନିର୍ଣ୍ଣୟ କରିଛନ୍ତି ଶ୍ରୀରାମଙ୍କ ତିରୋଧାନ (ଖ୍ରୀ.ପୂ. ୨୦୦୦ବର୍ଷ । ତାଙ୍କୁ ଫଳାହାର କରାଇଥିବା ଶବରୀ କେଉଁ ଭାଷାରେ କରିଥିଲା କଥୋପକଥନ ? ସିଏ ପଞ୍ଚବଟୀ, ଦଣ୍ଡକାରଣ୍ୟ ଓ ରାମଗିରିଭଳି ଏକ ନିଘଞ୍ଚ ବନଭୂମିର ଜଣେ ବନ୍ୟନାରୀତ ? ପ୍ରକାଶ ରହୁ 'ଶବର' ବୋଲି ଗୋଟିଏ ଭୂମିପୁତ୍ର ଜାତି ଓଡ଼ିଶାରେ ଅଛନ୍ତି । ପୁନଶ୍ଚ ଅବିଭକ୍ତ କୋରାପୁଟ ଜିଲ୍ଲା, ଅଛନ୍ତି ସଉରା ସଂପ୍ରଦାୟ । 'ଶବର' ଅପଭ୍ରଂଶରେ 'ସଉରା' । ପୁଣି 'ଲାଂଜିଆ ସଉରା' ଅନ୍ୟ ଏକ ବନଜାତି । ଭରତ ମୁନୀଙ୍କ



Source: Author, Digitized by PPRACHIN, SOA

ସମୟର 'ଶାବରୀ' ଏମାନଙ୍କ ଭାଷା ନ ହୋଇଥିବ କାହିଁକି ? ତାହା 'ଶାବରୀ' କି ହେଉ 'ଉଡ୍ର', ଗୋଟିଏ ପ୍ରନ୍‌ଭାଷା କାଳର ପ୍ରବାହରେ ବିକଶିତ ହୋଇ ହୋଇଛି ସାଂପ୍ରତିକ ଅତ୍ୟାଧୁନିକ ବହୁଭାଷା ମିଶ୍ରିତ 'ଓଡ଼ିଆ' । ପରବର୍ତ୍ତୀ ଆର୍ଯ୍ୟ-ଓଡ଼ିଆ ଭାଷାର ଜନ୍ମବେଦୀ 'ଚର୍ଯ୍ୟାଗୀତିକା', ସହଜିଆ ବୌଦ୍ଧଧର୍ମ ପ୍ରଚାରର ଗାନ ଓ ଦୋହା ! ଏମାନଙ୍କ ପରବର୍ତ୍ତୀ କ୍ରମବିକାଶ ଗୋରେଖନାଥ । 'ଶିଶୁବେଦ' ଓ 'ସପ୍ତାଙ୍ଗ ଯୋଗ' ରଚନା ବେଳକୁ ଓଡ଼ିଆ ଭାଷାର ପୂର୍ବାକାଶ ହୋଇଗଲାଣି ଉଦୟରାଗରେ ଲାଲେ-ଲାଲ ।

ଉଡ୍ର ଭାଷା କେତେ ପ୍ରାଚୀନ, ଯେତିକି ପ୍ରାଚୀନ ଉଡ୍ର ଜାତି ! ଉଡ୍ର ଏକ ଆଦିମ ଭୂମିଜ ବନ୍ୟ ଜାତି । ପୁରାଣରୁ କେବଳ ଏହାର ଇତିହାସ କଳ୍ପନା କରିହେବ । ମହାଭାରତ ଯୁଦ୍ଧରେ କଳିଙ୍ଗ ହସ୍ତୀବାହିନୀ କୌରବଙ୍କ ପକ୍ଷରୁ କରିଥିଲେ ସଂଗ୍ରାମ । ମହାଭାରତ କାଳ ଖ୍ରୀ.ପୂ. ୧୪୦୦ ନିର୍ଣ୍ଣୟ କରିଛନ୍ତି ପୁସଲ୍‌କର । ବଙ୍କିମ ଚନ୍ଦ୍ର ଚାଟାର୍ଜୀଙ୍କ ମତ ଖ୍ରୀ.ପୂ. ୧୪୩୦ । କୋଲ୍ ବ୍ରୁକ୍‌ଙ୍କ ମତ ଖ୍ରୀ.ପୂ. ୧୪୦୦ ଏବଂ ଉଇଲ୍‌ସନ୍ ଏଣ୍ଡ୍ ଫିନ୍‌ଷ୍ଟୋନ୍‌ଙ୍କ ମତ ମଧ୍ୟ ସେହି ଖ୍ରୀ.ପୂ. ଚତୁର୍ଦ୍ଦଶ ଶତକ । ସେ ସମୟରେ କଳିଙ୍ଗ ହସ୍ତୀ ପାଳକ ଓ ଚାଳକଙ୍କ ଭାଷା ନିଶ୍ଚୟ ନଥିଲା ବୈଦିକ ସଂସ୍କୃତ କିମ୍ବା ସଂସ୍କୃତ ! ଯେଣୁ ଶୁକ୍ଳ ଯଜୁର୍ବେଦ, ୩୦/୧୧, ଦୃଷ୍ଟିଗୋଚର ହୁଏ 'ହସ୍ତୀପ' ଶବ୍ଦ, ଏହା ହସ୍ତୀପାଳକର ସୂଚକ । (ଭାରତୀୟ ସଂସ୍କୃତି, ୮ମ ଖଣ୍ଡ, ରାମାୟଣ ପର୍ବ, ପୃଷ୍ଠା ୧୪୭, ସୁରେନ୍ଦ୍ର ନାଥ ଶତପଥୀ) । ମୂଳ ଓ ମୌଳିକ ଭାଷାଟି ନିଃସଂଦେହତଃ ଉଡ୍ର । ଶାବରୀ ମିଶ୍ରିତ ଏକ ବନାଂଚଳ ଭାଷା ଉଡ୍ର ବା ଔଡ୍ରୀ, ଯେଉଁ ଭାଷାର ବିକାଶିତ ସ୍ୱରୂପ ଆଧୁନିକ ଓଡ଼ିଆ । ଯେବେ ଠାରୁ ଉଡ୍ର (ଓଡ଼ିଆ) ଭାଷା ପ୍ରାମାଣିକତାର ସନ୍ତକ ଆସୁଛି ସାମ୍ନାକୁ, ତାହାର ସୃଷ୍ଟିତତ୍ତ୍ୱ ଓ ତଥ୍ୟ; (୧) 'ଓଡ଼ିଆ ଭାଷାର ଜନ୍ମପର୍ବ', (୨) 'ଭାଷାନଟୀର ଭ୍ରୁଣ ମୁଦ୍ରା' ଏବଂ (୩) 'ଶାସ୍ତ୍ରୀୟ ଓଡ଼ିଆ ଭାଷାର ପୁରାତତ୍ତ୍ୱ', ପ୍ରବନ୍ଧମାନଙ୍କରେ ଆଲୋଚିତ । ଓଡ଼ିଆ ଅକ୍ଷର ଜନ୍ମ ଓ ଶିଳାଲେଖରୁ କ୍ରମବିକାଶ 'ଅକ୍ଷରସୃଷ୍ଟି ତତ୍ତ୍ୱ' । 'ଶିଶୁବେଦ' ଉପରେ ଆଧାରିତ ଅନ୍ୟ ଦୁଇଟି ପ୍ରବନ୍ଧ, ଯେତେବେଳକୁ ପ୍ରମାଣିକ ଓଡ଼ିଆ ଭାଷା ଅତିକ୍ରମ କରୁଛି ତା' ଶୈଶବ ।

ବାକ୍ ଯେଉଁ ଚେତନାର ସ୍ୱତଃସ୍ଫୂର୍ତ୍ତ ପ୍ରକାଶ, କବିତା ତା'ରି ବାଣୀ ରୂପ । ଶବ୍ଦ ମଧ୍ୟରେ ଯେଉଁ ମହାବାକ୍ ଥାଏ ପ୍ରଚ୍ଛନ୍ନ ତାକୁ ନବ ସୃଷ୍ଟି ଦ୍ୟୋତନାରେ କବି କରିଥାନ୍ତି ନିଯୋଗ । ସର୍ବୋଚ୍ଚ ସୌନ୍ଦର୍ଯ୍ୟ ଅଗ୍ନିର ସ୍ଥିର ଆଲୋକରେ ଜୀବନକୁ ଯିଏ ଉଦ୍‌ଭାସିତ କରିବାକୁ ଚାହାଁନ୍ତି ସିଏ କବି । ତାଙ୍କ ଜ୍ଞାନ ଓ କଳାବିଦ୍ୟାର ଦେବୀ କେବଳ Goddess of Poetry ନୁହଁନ୍ତି ବରଂ ସୌନ୍ଦର୍ଯ୍ୟ ସୃଷ୍ଟିର ଏକ ଗୁପ୍ତ ମହାଜାଗତିକ ସ୍ୱତଃସ୍ଫୂର୍ତ୍ତି, ମାନସିକ ଶକ୍ତିଙ୍କ ଏକ ପରିପୂର୍ଣ୍ଣତା, ଯାହାଙ୍କ ଶବ୍ଦମାନ ଏକଏକ ପୃଥିବୀ! ସିଏ ଅଭୀପ୍ସା କରନ୍ତି କବିତାପରି ବଂଚିବାକୁ ଏବଂ ବଂଚିବାପରି ଲେଖିଥାନ୍ତି କବିତା ।



Source: Author, Digitized by PPRACHIN, SOA

ଜୀବନ ସାତ ପଦ୍ମର ଦ୍ୱୀପ, ସେଠାରେ ପହଂଚିବା ପାଇଁ କବିତା ସବୁଠାରୁ ସରଳ ଓ ସଂକ୍ଷେପ ମାର୍ଗ । ଶ୍ରୀ ଅରବିନ୍ଦ ଲେଖିଛନ୍ତି, କବିତା Miniature of bliss, / Speaking sweetly, secking meetly ! / Every word deserves a kiss. କବିତା ନିଷିଦ୍ଧ ଫଳର ସ୍ୱାଦ । ତାକୁ ଆଦାମ ଖାଇଛି ଏବଂ ଲାଗିଲା କେମିତି, ଶହ ଶହ ବର୍ଷ ଧରି ଆଦାମର ସେହି ଅନୁଭୂତିକୁ ଆମ ସମାଲୋଚକ କହି ଚାଲିଛନ୍ତି ! ସେମାନେ ଖାଇ ନାହାନ୍ତି କି ତା' ସ୍ୱାଦ ଜାଣି ନାହାଁନ୍ତି ! ଆଦାମ ଯାହା କହିଛି ତାହା ସେମାନଙ୍କ ପାଇଁ ଯଥେଷ୍ଟ ଓ ଯଥାର୍ଥ ହୋଇ ରହିଛି । ମାତ୍ର ଶେଷ ପ୍ରବନ୍ଧ 'ପ୍ରକାଶ୍ୟତାର ବେଦୀ ଉପରେ କବିତା ଦେବୀଟଏ', ଏହାର ବ୍ୟତୀକ୍ରମ ଏହି ପ୍ରବନ୍ଧର ଭୂମିଟି ସାଂପ୍ରତିକ ଓ ଆଧୁନିକ । କବିତାର ରୂପତତ୍ତ୍ୱ ଓ ଆତ୍ମତତ୍ତ୍ୱ ।

'ବାକ୍‌ତତ୍ତ୍ୱ' ରଚନା ପ୍ରସ୍ତୁତି ଏକ ଦୀର୍ଘ ଅଧ୍ୟୟନ ଓ ଅଧ୍ୟବସାୟର ପରିଣାମ । 'ବାକ୍‌ତତ୍ତ୍ୱ' ଆଧାରିତ ଏହା ବୋଧେ ପ୍ରଥମ ଓଡ଼ିଆ ଗ୍ରନ୍ଥ । ଯାହା ଅଛି ତାହା ବ୍ୟାକରଣ । ଋଷିଙ୍କ ଦିବ୍ୟଦୃଷ୍ଟିରୁ ସଂଗୃହୀତ ସାହିତ୍ୟର ଅପ୍ରକଟ ବୀଜମୁଦ୍ରା ଓ ସେହି ଶୂନ୍ୟଭୃଣର ଅଙ୍କୁରୋଦ୍‌ଗମ୍ କ୍ରିୟାର ଆତ୍ମପ୍ରକାଶ ଏହା । ତେଣୁ ପୂର୍ବରୁ କୁହାଯାଇଛି ଏହା ଦର୍ଶନ ଓ ଅଧ୍ୟାତ୍ମିକ । ସାରସ୍ୱତ ଅଭିବ୍ୟକ୍ତିର ଆତ୍ମତତ୍ତ୍ୱ ଦିଗରୁ ସାହିତ୍ୟ । ସୃଷ୍ଟିର ଆଦିଗୁରୁ ମାତା, ସାବିଦ୍ୟା ଯା ମୁକ୍ତୟେ, ନୀରବ ସ୍ଫୁରଣରେ ଜ୍ଞାନଶକ୍ତିରୁ ଇଚ୍ଛାଶକ୍ତିଙ୍କ ଘଟିଛି ଉନ୍ମେଷ କ୍ରିୟା । ମହାମାୟା ମୁଣ୍ଡମାଳା, ମହାକାଳୀଙ୍କ ଗଳାସ୍ଥ ମୁଣ୍ଡସଂଖ୍ୟା ପଚାଶ, ଅକ୍ଷର ସଂଖ୍ୟା ଅଣଚାଶ ଏବଂ ଓଁ ମିଶିହୁଏ ପଚାଶ; ଙ୍କ ପ୍ରକଟ କ୍ରିୟା ! ଶବ୍‌ଦ ବ୍ରହ୍ମମୟୀ ସ୍ୱରୂପ ଧାରଣ କରି ବାକ୍ୟର ବନ୍ଧନୀରେ ଚିତ୍ର-ବିଶ୍ୱ ତାଙ୍କରି ସ୍ୱରୂପର ଆଭାସନ (Reflection) କରିଛନ୍ତି । ପ୍ରଣେତା କେହିନୁହେଁ ଓ କିଛି ନୁହେଁ, ସବୁ 'ପ୍ରକାଶ' ଓ ତାହାଙ୍କ 'ବିମର୍ଶ', 'ବିଶ୍ୱରୂପାଃ' !

ଏଇ କେତେ ବର୍ଷ ହେଲା ଉଚ୍ଚାଙ୍ଗ ସାହିତ୍ୟ ଅଧୟନ, ଅନୁଶୀଳନ ଓ ଆଚରଣ ପ୍ରତି ଆଗ୍ରହ ବୃଦ୍ଧି କରାଇଥିବା ପ୍ରସିଦ୍ଧ ସ୍ରଷ୍ଟା ନବକିଶୋର ରାଜଙ୍କ ପ୍ରତି ମୋର ବିନମ୍ର ପ୍ରଣାମ । ଏହି ଗ୍ରନ୍ଥ ରଚନା ପାଇଁ ସେ ମୋର ଅନ୍ୟତମ ପ୍ରେରଣା ଦାତା; ପ୍ରକାଶ କରୁଛି କୃତଜ୍ଞତା ।

ଏଇ ବହି ପାଇଁ ମୁଁ ଯାହାଙ୍କ ପାଖରେ ସର୍ବାଧିକ ଋଣୀ, ସିଏ ରାଧାନାଥ ଯୁଗୀୟ ସାହିତ୍ୟର ବିଶିଷ୍ଟ ଗବେଷକ ଡ. ଫଣୀନ୍ଦ୍ର ଭୂଷଣ ନନ୍ଦ । 'ବାକ୍‌ତତ୍ତ୍ୱ' ଓ 'ସାହିତ୍ୟର ଆଦିତତ୍ତ୍ୱ' ଆରମ୍ଭ ପ୍ରବନ୍ଧ ଦୁଇଟି ଗତ ଦୁଇ ତିନିବର୍ଷ ତଳେ ପ୍ରକାଶିତ କରିଥିଲେ ମାସିକ 'ସାଗରିକା' । ଏହାର ସଂପାଦିକା ଶ୍ରୀମତୀ ସୈରିନ୍ଧ୍ରୀ ସାହୁ ମୋ ଏହି ଗ୍ରନ୍ଥ ପ୍ରକାଶନର ଅନ୍ୟତମ ପ୍ରେରଣା । ମୋ ଅଧିକାଂଶ ସୃଷ୍ଟିର ପ୍ରଥମ ପ୍ରକାଶିକା । ତାଙ୍କ ପାଇଁ ମୋର ଅଜସ୍ର କୃତଜ୍ଞତା ।

ଏଇଭଳି ଏକ ଗମ୍ଭୀର ଓ ଅସାଧାରଣ ଗ୍ରନ୍ଥର ପ୍ରକାଶନ ଭାର ଆଗ୍ରହରେ ଗ୍ରହଣ କରିଥିବା ହେତୁ କବି ଭିକାରୀ ଧଳଙ୍କୁ ମୋ' ଧନ୍ୟବାଦ ଅଜସ୍ର ।





Source: Author, Digitized by PPRACHIN, SOA

# ସାହିତ୍ୟର ଆଦିତତ୍ତ୍ୱ

।।ଏକ।।

'ଦେବସ୍ୟ ପଶ୍ୟ କାବ୍ୟମ୍-ନ ମମାର ନ ଜୀର୍ଯ୍ୟତି,' ଅର୍ଥାତ୍ ଏହି ଜଗତ ଦେବତାର କାବ୍ୟ- ତାଙ୍କ ପରମ ଚେତନାର ପ୍ରକାଶ !

ଅଥର୍ବବେଦର ଏହି ପଂକ୍ତିଟି ଭିତରେ ରହିଛି ଗୋଟିଏ ବ୍ୟଂଜନା, ଯାହା ସୂଚିତ କରିଛି 'କାବ୍ୟ' ('ସାହିତ୍ୟ' ଶବ୍ଦ ବେଦ ସୃଷ୍ଟି ବହୁ ଶତାବ୍ଦୀ ପରେ ହୋଇଅଛି ) କ'ଣ ? ବାଣୀରୂପେ ଚେତନାର ପ୍ରଥମ ରୂପାୟନ ! ଗୋଟିଏ ଦିବ୍ୟ ଦର୍ଶନର ଅନୁଭବକୁ ବାଣୀରୂପ ଦେବାକୁ ବେଦରେ କୁହାଯାଇଛି 'ବାକ୍' ।

'ଋଗବେଦରେ ଗୋଟିଏ ମିଥୁନର କଥା ରହିଛି- 'ବ୍ରହ୍ମ' ଓ 'ବାକ୍' । 'ଯାବଦ୍ ବ୍ରହ୍ମ ବିଷ୍ଠିତଂ ତାବତୀ ବାକ୍' (୧୦/୧୬୪/୮୬) । ସେହି ପରମ ଚେତନା ବ୍ରହ୍ମ । ଯେଉଁ ଅନୁଭବ ବା ଦର୍ଶନ କଥା କହୁଛୁ ଆମେ ତାହା ତାଙ୍କରି । 'ବାକ୍' ସେହି ଚେତନାର ସ୍ୱତଃସ୍ଫୂର୍ତ୍ତ ପ୍ରକାଶ । ତାଙ୍କର ବାଣୀ ରୂପ ହେଉଛି 'କାବ୍ୟ' (ସାହିତ୍ୟ) । "ବେଦରହସ୍ୟ"ରେ ଶ୍ରୀ ଅରବିନ୍ଦ ଗୋଟିଏ ପଂକ୍ତିରେ କରିଛନ୍ତି ସୂଚିତ– 'ବ୍ରହ୍ମନ୍‌ପତି ଅପ୍ରକେତରୁ ବାକ୍ ଦ୍ୱାରା ବ୍ୟକ୍ତକୁ ପ୍ରକାଶ କରନ୍ତି ।'

ଅପ୍ରକେତ କ'ଣ ? ପ୍ରକାଶ ଜଗତ ଉର୍ଦ୍ଧ୍ୱରେ ଓ ନିମ୍ନରେ ଅଛି ଦୁଇଟି ସମୁଦ୍ର । ନିମ୍ନ ଅପ୍ରକେତ 'ହୃଦ୍ୟ' ଓ ଋତ ସମୁଦ୍ର (Subconscient) ଏବଂ ଉର୍ଦ୍ଧ୍ୱର ସମୁଦ୍ର ସତ୍ ସମୁଦ୍ର (Super conscient) । ଯାହା 'ବ୍ୟକ୍ତ' ତାହାକୁ 'ବାକ୍' (ସାହିତ୍ୟ) ଦ୍ୱାରା କରନ୍ତି ପ୍ରକାଶ । ଯାହା ଅବ୍ୟକ୍ତ ତାହା ସାଧନା ଦ୍ୱାରା ହୋଇଥାଏ ଅନୁଭବ୍ୟ ! "Hymans to mystic Fire" ପୁସ୍ତକ ଉପୋଦ୍‌ଘାତରେ ଶ୍ରୀଅରବିନ୍ଦ ସୂଚିତ କରିଛନ୍ତି, 'ମନ୍ତ୍ର' (ସାହିତ୍ୟର ଆଦିମ ଶବ୍ଦ ଓ ପଂକ୍ତି) ଚେତନାର ଗୁପ୍ତ ଓ ଉର୍ଦ୍ଧ୍ୱ ଲୋକରୁ ପ୍ରେରିତ ହୋଇ ଆସିଛି ଏବଂ ତହିଁରେ ନିହିତ ଗହନ ବିଜ୍ଞାନ ବୋଲି ଋଷିମାନେ କରନ୍ତି ବିଶ୍ୱାସ । ସ୍ୱୟଂ ଦ୍ରଷ୍ଟା ବା ଧ୍ୟାନୀ କେବଳ ବୈଦିକ ଶବ୍ଦ ସମୂହର ଯାଥାର୍ଥ ଅର୍ଥ ହୁଅନ୍ତି ଅବଗତ ଏବଂ ଅନ୍ୟମାନେ ସେହି ଗୁପ୍ତ ଜ୍ଞାନରୁ ଥିଲେ ବଂଚିତ । ବାମଦେବ ୪ର୍ଥ ମଣ୍ଡଳ (୪/୩/୧୩) ଋଗ୍‌ବେଦରେ ନିଜକୁ ବେଦାଭ୍ୟାସୀ 'ବିପ୍ର' ଭାବେ ବର୍ଣ୍ଣନା କରିବା ସହିତ ତାଙ୍କ ଚିନ୍ତା ଓ ବାଣୀ



Source: Author, Digitized by PPRACHIN, SOA

ମଧ୍ୟରେ ଅନ୍ୟମାନଙ୍କ ପାଇଁ ଦିଗ୍‌ଦର୍ଶନ ରୂପେ ଗୁପ୍ତ ବଚନ (ନିଣ୍ୟା ବଚାଂସି) କରିଛନ୍ତି ପ୍ରକାଶ ! ବାଣୀ ଦ୍ରଷ୍ଟାଙ୍କ ପ୍ରଜ୍ଞା ପ୍ରସୂତ । କେବଳ ସତ୍‌ଦର୍ଶୀଙ୍କ ନିକଟରେ ସିଏ ନିଜ ଅର୍ଥକୁ କରନ୍ତି ପ୍ରକଟ (କାବ୍ୟାନିକବୟେ ନିବଚନା) ।

ବାଣୀ ପରମା, ନିର୍ଦ୍ଦେଶ ଓ ବଚନର ଶୀର୍ଷ ସ୍ଥାନୀୟା ବୋଲି ଦଶମ ମଣ୍ଡଳରେ ବର୍ଣ୍ଣିତ । ଏହା ସତ୍ୟ ଦ୍ରଷ୍ଟା ଋଷିଙ୍କ ମଧ୍ୟରେ ଅନୁପ୍ରବିଷ୍ଟା ଏବଂ ଋଷିମାନଙ୍କ ବଚନକୁ ଅନୁସରଣ କରି ମାନବ ପ୍ରାପ୍ତ ହୁଏ ବାକ୍‌କୁ । ବାକ୍‌ର ଗହନ ଅର୍ଥ (ତତ୍ତ୍ୱ)କୁ ସମସ୍ତେ ପ୍ରାପ୍ତ ହୋଇ ନଥାନ୍ତି । ସୁବସନା ବାକ୍‌ବଧୂ ସେହି ସିଦ୍ଧ ସୌନ୍ଦର୍ଯ୍ୟ ସାଧକ ସମ୍ମୁଖରେ ବିବସନା ହୋଇ ସ୍ୱସୌନ୍ଦର୍ଯ୍ୟକୁ ବାଢ଼ିଦିଏ ଓ ବାଢ଼ିଦେଇଥାଏ ଅର୍ଥ ସମ୍ପଦକୁ, ଯେଉଁମାନେ ଗହନ ଗୁହାୟିତ ତାକୁ ପ୍ରାପ୍ତ ହୋଇଥାନ୍ତି !

||ଦୁଇ||

ସଭ୍ୟତାର ପ୍ରାକ୍ କାଳ, ଯେଉଁ ସାରସ୍ୱତ ସର୍ଜ୍ଜନା କଳା ଋଷି ଲାଭ କରିଥିଲେ ତାହାର ସ୍ୱରୂପ ଭକ୍ତି ରସ ଧାରାରେ ଥିଲା ସିକ୍ତ । ଭାରତୀୟ ସାହିତ୍ୟ ତା ଜନ୍ମ କାଳରୁ ଆଧ୍ୟାତ୍ମିକ । ଭକ୍ତି ଓ ଜ୍ଞାନର ଅଖଣ୍ଡ ଧାରା ଗୁରୁ-ଶିଷ୍ୟ ପରମ୍ପରା ଦେଇ ହୋଇଛି ପ୍ରବାହିତ । ଲିପିକଳା ଅପେକ୍ଷା ସାହିତ୍ୟ ସୃଷ୍ଟିକଳା ସର୍ବପ୍ରଥମେ ହୋଇଛି ପରିପକ୍ୱ ।

ସାହିତ୍ୟ କ'ଣ ? କ'ଣ ଏହି ସାହିତ୍ୟ ? ଯାହା ଥାଏ ନିଜ ସହିତ ! ଯାହା ଥାଏ ଜୀବ ସହିତ ! ପୁନଶ୍ଚ-ଯହିଁରେ ସାଧିତ ହୋଇଥାଏ ସାମୂହିକ ହିତ !

ଶବ୍‌ଦାର୍ଥୌ ସହିତୌ, ଶବ୍‌ଦ ଓ ଅର୍ଥ ସହିତ ଯେଉଁ ଅଭିବ୍ୟକ୍ତ ସାରସ୍ୱତ ଶିଳ୍ପ ! ଶବ୍‌ଦ ଓ ଅର୍ଥ ସହିତ ପରିବ୍ୟାପ୍ତ ଅସୀମ ଭାବର ଦୃଶ୍ୟ, ଯାହା ପ୍ରାଣକୁ ସଘନ ରସରେ କରି ପକାଏ ଦ୍ରବିତ ! ଭସାଇ ନିଏଚେତନାର ନୌକାକୁ ଦିଗରୁ ଦିଗନ୍ତକୁ । 'ସହିତ' ଥାଏ ଯେଉଁ ଆନନ୍ଦର ଅନ୍ତଃସଲିଳା ସ୍ରୋତ, ସାହିତ୍ୟ !

ଦେହ ରଥ । ରଥ ସହିତ ଥା'ନ୍ତି ରଥ-ସାରଥି । ସାରଥି ଶବ୍‌ଦଟି ସମ୍ମୁଖକୁ ଆସିଲେ ଉଙ୍କିମାରେ ମହାଭାରତ ଯୁଦ୍ଧ ରଥର ସାରଥି ଶ୍ରୀକୃଷ୍ଣଙ୍କ ମୂର୍ତ୍ତି । ଦେହ ସହିତ ଥିବା ଦେହୀ, ଆତ୍ମା ରୂପରେ ବିରାଜିତ ସର୍ବବ୍ୟାପକ ଚିତ୍‌ଶକ୍ତି, ସେ ହିଁ ଅଟନ୍ତି ! ସାହିତ୍ୟ ଶବ୍‌ଦ-ଚିତ୍ର ସଂସାର ରୂପରେ ବିରାଜିତ ସର୍ବ ବ୍ୟାପକ ଚିତ୍‌ଶକ୍ତି, ସେ ହିଁ ଅଟନ୍ତି ! ସାହିତ୍ୟ ଶବ୍‌ଦ-ଚିତ୍ର, ସଂସାର ଚିତ୍ର କେବଳ ନୁହେଁ, ଶବ୍‌ଦ ଓ ସଂସାର ଉର୍ଦ୍ଧ୍ୱରେ ବିଦ୍ୟମାନ ନିଃଶବ୍‌ଦର ଆତ୍ମତତ୍ତ୍ୱ ମଧ !

ପର୍ବତରୁ ଉତ୍ପନ୍ନ ସମସ୍ତ ଗିରିଝରି ଗୋଟିଏ ଦିଗକୁ ହୋଇଥାନ୍ତି ଧାବମାନ । ସମସ୍ତ ଜୀବ ଜନ୍ମକାଳରୁ ଅବସ୍ଥା ପରେ ଅବସ୍ଥା ଅତିକ୍ରମ କରି ଗୋଟିଏ ଦିଗକୁ ଚାଲିଛନ୍ତି ଧାଇଁ ! ସଜ୍ଞାତ ବା ଅଜ୍ଞାତ, ମୃତ୍ୟୁର ନୀଳସମୁଦ୍ରକୁ ଜୀବନର ଗତି ! ନୀଳ ସମୁଦ୍ର ହିଁ ତା'



Source: Author, Digitized by PPRACHIN, SOA

ଲକ୍ଷ୍ୟସ୍ଥଳ ! ବାସ୍ତୁବାଦୀ ଦୃଷ୍ଟିରେ ତାହା ମୃତ୍ୟୁ, ଗୋଟିଏ ଭୟାନକ ଶେଷ ଯନ୍ତ୍ରଣାର କଳ୍ପନା, ଆଧ୍ୟାତ୍ମିକ ଦିଗରୁ ସେ 'ଶ୍ରୀକୃଷ୍ଣ' ଅଟନ୍ତି । ଯସ୍ୟ ଛାୟାଽମୃତମ୍ ତସ୍ୟଃ ମୃତ୍ୟୁ ! ନୀଳପଦ୍ମର ସୁବାସିତ ଶଯ୍ୟା ବା ଅନନ୍ତ ନାଗର ଶେଯ, ମିଥିଚି ତାହା ! ଜୀବ ଶିବ । ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେଽର୍ଜୁନ ତିଷ୍ଠତି । ଭ୍ରାମୟନ ଭୂତାନି ଯନ୍ତ୍ରାରୂଢ଼ାନି ମାୟମା ।

ସବୁ ଦେହର ହୃଦ୍‌ଦେଶରେ ଦେହୀ ଈଶ୍ୱର କରୁଛନ୍ତି ବିରାଜମାନ । ଶିବ ଶବ ହୁଅନ୍ତି ଯେତେବେଳେ ସିଏ ମାୟା ଯଂତ୍ରର ଯାନ ଆରୋହଣ କରି ଗୋଟିଏ ଦେହରୁ ଅନ୍ୟ ଗୋଟିଏ ଦେହକୁ ହୁଅନ୍ତି ଘଟାନ୍ତର । ଏହି ଘଟାନ୍ତର ଲୀଳାର ନାମ ସଂସାର । ପଶ୍ୟ ମେ ପାର୍ଥ ରୂପାଣି ଶତଶୋଽଥ ସହସ୍ରଶଃ, ଶତ ସହସ୍ର ରୂପ ମୋର, ହେ ପାର୍ଥ, କର ଦର୍ଶନ । ସର୍ବାଶ୍ଚର୍ଯ୍ୟମୟମ୍ । ଅତ୍ୟନ୍ତ ଆଶ୍ଚର୍ଯ୍ୟମୟ ସମସ୍ତ ! ଇମଂ ପରମଂ ଗୁହ୍ୟମ୍ । ଯିଏ ଯେଉଁ କର୍ମ କରୁଛି, ସମସ୍ତ କର୍ମର ଆଭିମୁଖ୍ୟ ଏକ, ତାଙ୍କରି ସ୍ତବ ! ସମସ୍ତ ସୃଷ୍ଟି, ସୃଷ୍ଟିର ସକଳ ବସ୍ତୁଙ୍କ ଲକ୍ଷ୍ୟ ଏକ, ତାଙ୍କରି ମହିମାର ଆଲୋକକୁ କରିବା ବ୍ୟାପକ ! ସୃଷ୍ଟି ସ୍ରଷ୍ଟାଙ୍କ ଅପରିମିତ କୃପାର ଗୁଣମୁଗ୍ଧ ! ତେଣୁ ସକଳ ବସ୍ତୁ ସ୍ପଂଦନର ଅନ୍ତରାଳରେ ସତ୍ୟର ସ୍ତବ ପ୍ରଚ୍ଛନ୍ନ ।

ଋଷି ଉପଲବ୍ଧ କରିଛନ୍ତି, ଯସ୍ମେ ମେ ହିମବନ୍ତୋ ମହିତ୍ୱା ଯସ୍ୟ ସମୁଦ୍ରଂ ରସୟା ସହାହୁଃ ।

ଯସ୍ମେମାଃ ପ୍ରଦଶୀ ଯସ୍ୟ ବାହୁ କସ୍ମୈ ଦେବାୟ ହବିଷା ବିଧେମା (ଋଗ. ୧୦/୧୨୧/୪) । ଅର୍ଥାତ୍ ଯାହାଙ୍କ ମହିମା ଗାନ କରୁଛନ୍ତି ଏହି ହିମାଚ୍ଛାଦିତ ପର୍ବତ, ଅନନ୍ତ ସୁନୀଳ ସମୁଦ୍ର, ସୁବିସ୍ତୃତ ଶ୍ୟାମଳ ଧରିତ୍ରୀ ଏବଂ ସମସ୍ତ ଦିଗ, ସେହି ଭଗବାନ 'କ' ଆଦି ଅନେକ ନାମରେ ନାମିତ । 'କ' ଷୋଡଶାକ୍ଷରୀ 'ଶ୍ରୀବିଦ୍ୟା'ର ଆରମ୍ଭ ଧ୍ୱନି ଏବଂ ଏହା 'ଲୋପାମୁଦ୍ରା' ଶ୍ରେଣୀୟ ମଂତ୍ର,(Aprenticed to a Himalayan Master / Sri M. Page 200, Megenta publisher, Karnatak, 2010) । ଯେଉଁ ବର୍ଣ୍ଣ ବା ଅକ୍ଷରଟିଏ ହୁଏ ଉଚ୍ଚାରିତ, ତାହା ଅମୃତ ଚେତନାର ଧ୍ୱନିଟିଏ ଖାଲି ନୁହେଁ, ତାହା ଅକ୍ଷର ବ୍ରହ୍ମ । ଏକାଧିକ ଅକ୍ଷର ବ୍ରହ୍ମଙ୍କ ମଳିତ ନାଦବ୍ରହ୍ମ ଅଟନ୍ତି ଶବ୍ଦ ବ୍ରହ୍ମ ।

'ମନୁସ୍ମୃତି' ବର୍ଣ୍ଣନା କରିଛନ୍ତି, ସର୍ବେଷାଂ ତୁ ସ ନାମାନି କର୍ମାଣି ଚ ପୃଥକ୍ ପୃଥକ୍ । ସୃଷ୍ଟିର ପ୍ରତ୍ୟେକ ପଦାର୍ଥକୁ ଭଗବାନ ଗୋଟିଏ ଗୋଟିଏ ନାମ ଦେଲେ, ଯେମିତିଇଏ ପର୍ବତ ଇଏ ନଦୀ, ଇଏ ମନୁଷ୍ୟ, ଇଏ ସୂର୍ଯ୍ୟ, ଇଏ ଅଗ୍ନି, ଏହା ଆକାଶ ଓ ଏହା ଧରିତ୍ରୀ ପ୍ରଭୃତି ! ଗୋଟିଏ ଗୋଟିଏ ପରିଚୟ କଲେ ସୃଷ୍ଟି । ପରିଚୟ ତଳେ ପ୍ରଚ୍ଛନ୍ନ ରହିଲା ସ୍ରଷ୍ଟାଙ୍କ ଠାରୁ ସୃଷ୍ଟ ସୃଷ୍ଟି । ସୃଷ୍ଟିକୁ ସାହିତ୍ୟ ବା ଗଦ୍ୟ, ପଦ୍ୟ, ନାଟକ ଓ କାବ୍ୟଭାବେ



Source: Author, Digitized by PPRACHIN, SOA

ଗଲୁ ଚିହ୍ନି ! ସୃଷ୍ଟିଟି ଯାହାଙ୍କ ଅଂଶ ବିଶେଷ ତାହାଙ୍କ ସହିତ ଆମେ ଅପରିଚିତ । ଯେଉଁ ସ୍ରଷ୍ଟା ଧାରଣ କରିଛନ୍ତି ସୃଷ୍ଟି ରୂପ, ସିଏ ନ ଦ୍ୱୈତ, ଅଦ୍ୱୈତ ! 'ଏକୋସତ୍', ଚିନ୍ମୟ, ସୁନ୍ଦର ଓ ଶିବ । ତାହା ହିଁ ଅଟେ 'ସାହିତ୍ୟ' ! ସହିତ ଥିବା ସେହି ଅବିନାଶୀ ଅଂଶ ।

ଶ୍ରୀମଦ୍ ଭାଗବତ ମହାପୁରାଣରେ ବର୍ଣ୍ଣିତ, ବଦନ୍ତି ତତ୍ତତ୍ତ୍ୱବିଦସ୍ତତ୍ତ୍ୱଂ ଯଜ୍ଜ୍ଞାନମ୍ ଦ୍ୱୟମ୍ । ବ୍ରହ୍ମେତି ପରମାତ୍ମେତି ଭଗବାନିତି ଶତଦ୍ୟତେ । ଅର୍ଥାତ୍- ଯେଉଁ ଅଦ୍ୱିତୀୟ ଜ୍ଞାନକୁ ତତ୍ତ୍ୱଜ୍ଞାନୀ 'ପୁରୁଷତତ୍ତ୍ୱ' କହନ୍ତି, ତାହାକୁ ଉପନିଷଦୀୟ ପଣ୍ଡିତ କହନ୍ତି 'ବ୍ରହ୍ମ' । ମହର୍ଷିଗଣ ତାହାଙ୍କୁ 'ପରମାତ୍ମା' ଓ 'ଭଗବାନ' ବୋଲି କରିଛନ୍ତି ନାମିତ । ମାନବ ଯାହା କରିଥାଏ ତାହା 'ତପସ୍ୟା' ! ପ୍ରଲୋଭନ ପ୍ରରୋଚିତ ମାନବ ସଂସାର ସଂପଦକୁ ନିଜ ପ୍ରାପ୍ୟ ଠାରୁ ବହୁଗୁଣ ଲୁଟି ଥାଏ, ନିଜ ଇନ୍ଦ୍ରିୟ ସୁଖ ପାଇଁ ଠୁଳ କରିଥାଏ, ତାହା ତା ନିଜ କର୍ମ । ମନ୍ଦ କର୍ମ ! ଯେଣୁ ତାହା ସଂସାର ହିତ ପ୍ରତିକୂଳ । କିନ୍ତୁ ତାହା ମଧ୍ୟ ତପସ୍ୟା ! ମହାକାଳଙ୍କ ସଂହାର ମୂର୍ତ୍ତି ମଧ୍ୟ ସକଳ ସୌନ୍ଦର୍ଯ୍ୟର ଅଧିପତି ଲକ୍ଷ୍ମୀପତିଙ୍କ ଅଲଗା ଗୋଟିଏ ରୂପ ! ଧ୍ୱଂସର ମୂର୍ତ୍ତି ସେହି ଶିବସୁନ୍ଦରଙ୍କ ଆବଶ୍ୟକ ବେଳେ ଗୋଟିଏ ସ୍ୱରୂପ, ରୁଦ୍ର ! ଶ୍ରୀଚଣ୍ଡୀରେ ବର୍ଣ୍ଣିତ, ଯାଶ୍ରୀଃ ସ୍ୱୟଂ ସୁକୃତିନାଂ ଲକ୍ଷ୍ମୀ, ସୁକର୍ମ ଆଚରଣ ଯୁକ୍ତଙ୍କ ଗୃହରେ ଯେଉଁ ଜନନୀ ଶ୍ରୀ, ସିଏ ଲକ୍ଷ୍ମୀ ଅଟନ୍ତି । ପାପାତ୍ମନାଂ କୃତଧିୟାମ୍, ପାପୀମାନଙ୍କ ଠାରେ ଦାରିଦ୍ର୍ୟ ରୂପିଣୀ ମା' ! ସିଏ ଅଲକ୍ଷ୍ମୀ । ପୁଣ୍ୟାତ୍ମା ପୁରୁଷ ହୃଦୟରେ ବୁଦ୍ଧି ରୂପରେ ସିଏ ବାସ କରନ୍ତି ! ସତ୍ ପୁରୁଷ ଠାରେ ସିଏ ଶ୍ରଦ୍ଧା ଏବଂ କୁଳୀନ ନର ନାରୀଙ୍କ ହୃଦୟରେ ସିଏ ଲଜ୍ଜା । ଗୋଟିଏ ସତ୍, ଚିତ୍ ଓ ଆନନ୍ଦଙ୍କ ବହୁବିଧ ରୂପ । ପୂର୍ବରୁ କୁହାଯାଇଛି, ସର୍ବେଷାଂ ତୁ ସ ନାମାନି କର୍ମାଣି, ମୂଳତତ୍ତ୍ୱଟି ।

ଯାହା ତୁମେ ରଚନା କରୁଛ, କର; ତାହା କବିତା, ଗଳ୍ପ, ନାଟକ, ଉପନ୍ୟାସ ବା ହେଉ ପ୍ରବନ୍ଧ, 'ଇଦଂ ହି ପୁଂସସ୍ତପସଃ', ତାହା ଆତ୍ମପୁରୁଷଙ୍କ ତପସ୍ୟା । ତାହା, 'ଅବିଚ୍ୟୁତୋଽର୍ଥଃ କବିଭିର୍ନିରୂପିତୋ', ଅବିଚ୍ୟୁତ ଅର୍ଥ, ଅଭିନ୍ନ ଲକ୍ଷ୍ୟ, କବିଙ୍କ ନିରୂପିତ ବାକ୍ୟ, 'ଗୁଣାନୁବର୍ଣ୍ଣନମ୍', ତାହାଙ୍କ ! ସେହି ପରମ ସତ୍ୟ, ପରମ ଅର୍ଥ ଓ ପରମଧର୍ମଙ୍କ ସମସ୍ତ ଗୁଣ ବର୍ଣ୍ଣନ ।

ଜଣେ କବି ସ୍ତନ ବର୍ଣ୍ଣନା କରୁଛନ୍ତି, 'କନକ କଳସ', 'କୁଚାଦି ପୀନମ୍', ସାହିତ୍ୟ ରସିକ ଭାବୁକ ଏହି ରୂପଶ୍ରୀ ବର୍ଣ୍ଣନାରେ ହୋଇଯାଏ ମୁଗ୍ଧ, ହୋଇଥାଏ ଉଦ୍ଦୀପିତ । ସିଏ ଅଜ୍ଞ । ସଦ୍‌ଜ୍ଞାନର ଅଣୁଏ ରଶ୍ମି ତାଙ୍କ ଚେତନାକୁ କରି ନଥାଏ ଦୀପ୍ତ ! ବୋକାକୁ ବୋକା ବନାଇବାରେ ଯେମିତି କିଛି ଲୋକ ଅନୁଭବ କରନ୍ତି ପୁଲକ, ଠିକ୍ ସେମିତି ମହାମାୟାଙ୍କ ଲୀଳାଚକ୍ର ତାହାଙ୍କୁ ଭସାଇ ନିଏ ଜନ୍ମ ଯନ୍ତ୍ରଣା ଦ୍ୱାରକୁ, ବାରମ୍ବାର ଜନ୍ମ



Source: Author, Digitized by PPRACHIN, SOA

ମୃତ୍ୟୁର ଦ୍ୱାର ଉନ୍ମୁକ୍ତ ଓ ବଂଦ କରି ତାହା ସହିତ ହୁଅନ୍ତି କ୍ରୀଡ଼ାରତ ! ଯିଏ ସୁସ୍ଥ ସାହିତ୍ୟ ପଣ୍ଡିତ, ସିଏ ସେହି ରୂପଶ୍ରୀରେ ରୂପମୟଙ୍କ 'ମନାମହେ' ଅର୍ଥାତ୍ 'ଉଚ୍ଚାରୟାମଃ' ଉଚ୍ଚାରିତ ଶବ୍ଦରୁ ଶବ୍ଦବ୍ରହ୍ମଙ୍କୁ କରିଥାଏ ଦର୍ଶନ । ପ୍ରାପ୍ତ ରସ, 'ବୈସଃ' ! ସାହିତ୍ୟ ଶୁଷ୍କ ଶବ୍ଦ ବସାଣ ନୁହେଁ, 'ବିଷୟଃ ପରମେଶ୍ୱରୀ' ! ପୁନଶ୍ଚ ତାହା 'ପ୍ରେମସର୍ବସ୍ୱସ୍ୱଭାବା' (ନାରଦ-ପଞ୍ଚରାତ୍ର), 'ପ୍ରେମାର୍ଥଂଭାବିତମ୍', 'ଲୀଳାୟା ବିଗ୍ରହମ୍' ! ଭାରତୀୟ ଉଚ୍ଚାଙ୍ଗ ସାହିତ୍ୟ ଗଭୀର ତତ୍ତ୍ୱ ଯୁକ୍ତ ଏବଂ ସାହିତ୍ୟର ପାଠକ ପଣ୍ଡିତ । ସାଧାରଣ ପଣ୍ଡିତଙ୍କ ପାଇଁ, ସ୍ତନଂ ପ୍ରଯଚ୍ଛତି ଯସ୍ତେ ସ୍ତନଃ ଶଶୟୋ ଯୋ ମୟୋଭୁର୍ଯ୍ୟୋ ରତ୍ନଧା ବସୁବିଦ୍ ଯଃ ସୁଦତ୍ରଃ ! ଅର୍ଥାତ୍ ତୁମ ସ୍ତନ ଏହି ଶିଶୁଟି ପାଇଁ ହୋଇଅଛି ନିର୍ମିତ । ଇଏ ରତ୍ନପ୍ରଦ, ସଂପଦପ୍ରଦ ଓ ଅଟେ କଲ୍ୟାଣ ପ୍ରଦାୟକ ।

ଭ୍ରୁଣଟିଏ ଭୂମିଷ୍ଠ ହେବା ପୂର୍ବରୁ କୃପାସାଗର କରିଛନ୍ତି ତା ଅନ୍ନଚିନ୍ତା । ସଂସାରକୁ ଆଦୌ ଚିହ୍ନି ନଥିବା ତାଙ୍କର ଅବିଚ୍ଛନ୍ନ ଭଗ୍ନାଂଶ (ମମୈବାଂଶୋ...) ଯେତେବେଳେ ଦେହର ପୋଷାକ ଧାରଣ କରି ହେବେ ଅବତୀର୍ଣ୍ଣ, କ'ଣ ସିଏ କରିବେ ଭୋଜନ ? ତାଙ୍କ ଶିଶୁ ପାକସ୍ଥଳୀ କେଉଁ ଖାଦ୍ୟକୁ କରାଇ ପାରିବ ହଜମ ? କେଉଁ ଖାଦ୍ୟ ତାଙ୍କ ଶରୀର ରକ୍ତ ପ୍ରବାହକୁ କରିବ ସ୍ୱାଭାବିକ ଏବଂ ଇନ୍ଦ୍ରିୟମାନଙ୍କୁ କରାଇବ ସଚେତନ ? କେଉଁ ଖାଦ୍ୟ ଶିଶୁ ଶରୀରକୁ ବୃଦ୍ଧି ପ୍ରାପ୍ତ ହେବାକୁ କୋଷଗୁଡ଼ିକରେ ଦେବ ବଳ ? ସମସ୍ତ ଚିନ୍ତା କରି ଜନନୀ ସ୍ତନ ରୂପକ ଯନ୍ତ୍ରଟିଏ କରିଛନ୍ତି ଖଚିତ । ଯେଉଁ ଯଂତ୍ରର କାର୍ଯ୍ୟ ହେଲା ଜନନୀ ଶୋଣିତକୁ ଦୁଗ୍ଧରେ କରିବ ପରିଣତ, ଯେମିତି ଦୁଗ୍ଧରୁ ଘୃତ ! ଘୃତକୁ ଆଉ କରି ହୁଏନାହିଁ ରୂପାନ୍ତରିତ । ସୃଷ୍ଟିର ମୌଳିକ ଗୋଟିଏ ଉତ୍ପତ୍ତିସ୍ଥଳ ତାହା ! ତାହା ଅମୃତର ଜନ୍ମସ୍ଥାନ । ଯେତେବେଳେ ମହାମାୟା ମନୁଷ୍ୟ ବୁଦ୍ଧିକୁ ବିକାରଯୁକ୍ତ କରିବେ ସେତେବେଳେ ମଣିଷ ଆଖିର ନୀଳ ହ୍ରଦରେ ଝସ (କାମ) ଖେଳିବ !

ଝସ ଖେଳିବା ସମୟ ମଧ୍ୟ ସ୍ଥିରୀକୃତ । ଯେତେବେଳେ 'ବଂଶବର୍ଦ୍ଧନ' ଭଗବାନ ଶ୍ରୀ ବିଷ୍ଣୁଙ୍କ ସହସ୍ରନାମରୁ ଏକ 'ବଂଶବର୍ଦ୍ଧନ' 'ସଂକଳ୍ପ' କରିବେ, ମହାମାୟା ମନୁଷ୍ୟ ବୁଦ୍ଧିରେ ସୃଷ୍ଟି କରିବେ ବିକୃତି, ଜଳରେ ଉଠିବ ତରଙ୍ଗ, କାମ ଶକ୍ତି ହେବ ତୃଷିତ, ସମୁଦ୍ର ମନ୍ଥନ ମିଥ୍‌ଟିକୁ ଅର୍ଥାନ୍ୱିତ କରିବାକୁ ହେବ ପ୍ରଚେଷ୍ଟିତ । କିନ୍ତୁ ମୂଳବସ୍ତୁ ସେହି ପରମଙ୍କ ଲୀଳା ରହସ୍ୟ ! ନିଜର ଆନନ୍ଦ ପାଇଁ ସିଏ ସୃଷ୍ଟି କରନ୍ତି ଆନନ୍ଦ ! ସେହି ଆନନ୍ଦରୁ ଆମ ସମସ୍ତଙ୍କର ଜନ୍ମ ଏବଂ ଦିନେ ତାହାଙ୍କ ସେହି ଆନନ୍ଦ ସମୁଦ୍ରରେ ଆମେ ସମସ୍ତେ ହୋଇଯିବା ବିଲୀନ । ଆମର ଶେଷ ଓ ଶ୍ରେଷ୍ଠ ଖେଦ ମୃତ୍ୟୁ ବି ତାହାଙ୍କ ଆନନ୍ଦରୁ ଜନ୍ମ !

ପୁରୁଣା କଣ୍ଢେଇଟିକୁ ଭାଙ୍ଗି ଦେବ ତା ଭିତରୁ କାଢ଼ି ନେବ ନିଜର ଅରୂପ । ପୁଣି ଗଢ଼ିବ ଗୋଟିଏ ନୂତନ କଣ୍ଢେଇ, ଦେବ ରୂପ ଓ ନାମ । ତା ଭିତରେ ପୁଣି ଖଂଜିବ ନିଜର



Source: Author, Digitized by PPRACHIN, SOA

ଅରୂପ । ଯେମିତି ଖେଳନା ଭିତରେ ବେଟାରିର ଶକ୍ତି ସୃଷ୍ଟିକରେ କ୍ରିୟାଶକ୍ତି ! ଚାଲେ ମଟର, ଗୁଳି ଫୁଟେ, ନର୍ତ୍ତକୀ ନାଚେ ଏବଂ ଭଲ୍ଲୁକ ବାଦ୍ୟ ବାଦନ ରଚେ । ଦେହର ବସ୍ତ୍ର ପରିଧାନ କରୁଥିବା ହେତୁ ଅରୂପ ତ ହୁଅନ୍ତି ଆନନ୍ଦିତ ଏବଂ ଦେହ ବି ତ ! ଅରୂପ ଥିବା ହେତୁ ଦେହ ଶିବ, ଈଶ୍ୱରଙ୍କ ସୃଷ୍ଟିର ଶ୍ରେଷ୍ଠତମ ଆର୍ଟ । ଅରୂପ ନଥିଲେ ଦେହଟି ଯେତେ ପାର୍ଥିବ ଦାମୀ ଅଳଙ୍କାରରେ ଭୂଷିତ ହୋଇଥିଲେ ମଧ୍ୟ ତାହା ଶବ ! ଶବକୁ ଅଳ୍ପ ସମୟ ମଧ୍ୟରେ ମହାକାଳ ପରିବାପରି ପଚାଇ କରିଦିଏ ଦୁର୍ଗନ୍ଧପ୍ରଦ ।

ସେହି ଅରୂପ ରୂପକୁ ଯିଏ କରନ୍ତି ଜୀବନ୍ତ ଓ ଲୀଳାୟିତ, ଥାଆନ୍ତି ରୂପ ସହିତ, ଅଟନ୍ତି ସାହିତ୍ୟ । ସାହିତ୍ୟ ବହୁତ ରଚନା କରିଗଲେ ହୁଏ ନାହିଁ, ସାହିତ୍ୟ ଉପଲବ୍ଧରୁ ହିଁ ଆସେ । ଧ୍ୟାନ ହିଁ ଏକ ମାତ୍ର ପଥ, ଯେଉଁ ପଥ ଦେଇ ଆସିଥାଏ ଅନୁଭବ! ସାହିତ୍ୟ ଗୋଟିଏ ଦିବ୍ୟ ଭୋଗ, ସାହିତ୍ୟ ସ୍ୱର୍ଗୀୟ ଅମୃତ ଭୋଗ, ଏହାକୁ ଭୋଗ କରିଥାଏ ମାନବ ଚେତନା । ଭୋଗ ଶବ୍‌ଦର ଭାବ ପରମବ୍ରହ୍ମଙ୍କୁ ସମର୍ପିତ ଅମୃତ ନୈବେଦ୍ୟ ! ଦିବ୍ୟ ପ୍ରସାଦ !

ଯେଉଁ ଚେତନା ଫଳକରେ ପରସ୍ତ ପରସ୍ତ ନାମ, ଧ୍ୟାନ କିମ୍ବା ଭକ୍ତିର ପାରଦ ବୋଳା ଯାଇ କରାଯାଇଥାଏ ସ୍ୱଚ୍ଛ ପ୍ରତିଫଳକ, ଆଧାର ପାତ୍ରଟି ଥିବ ପ୍ରସ୍ତୁତ, ତହିଁରେ, 'ସହିତ' ଥିବା ରଥି ବା ସାରଥି ହୋଇଥାନ୍ତି ପ୍ରତିବିମ୍ବିତ । ପ୍ରସ୍ତୁତ ଆଧାର ପାତ୍ର ହିଁ ସତ୍ୟଙ୍କୁ କରି ପାରିଥାଏ ଅଭିବ୍ୟକ୍ତ । କହିଛନ୍ତି ଶାସ୍ତ୍ର, ଭକ୍ତାନାଂ ସର୍ବେଷାଂ ପ୍ରତିରୂପ ଧ୍ରୁକ୍ । ଶ୍ରୀ ଚୈତନ୍ୟଙ୍କ ଭାଷାରେ ତାହା 'ବିଦ୍ୟାବଧୂ ଜୀବନମ୍' । 'ଆନଂଦାମ୍ବୁଧିବର୍ଦ୍ଧନମ୍' ଏବଂ 'ପୂର୍ଣ୍ଣାମୃତାସ୍ୱାଦନମ୍' ! ଜୀବର ଆତ୍ମ ଓ ପରମତ୍ୱ ଶବ୍‌ଦ ସ୍ଥାପତ୍ୟ ଅଟେ ସାହିତ୍ୟ । ଶବ୍‌ଦ ବ୍ରହ୍ମଙ୍କୁ ଏପରି ପଂକ୍ତିରେ ବସାଇ କଳାକର୍ମ କରାଯିବା ଆବଶ୍ୟକ ଯେଉଁଥିରେ ସୌନ୍ଦର୍ଯ୍ୟ ରୂପେ ଈଶ୍ୱରତ୍ୱ ହେବ ପ୍ରତିବିମ୍ବିତ । ସ୍ରଷ୍ଟା ମନୁଷ୍ୟ ଜନ୍ମର ପୁଣ୍ୟ ହେବେ ପ୍ରାପ୍ତ । ପୃଥିବୀ ଉପରେ ପଶୁଟିଏ ହୋଇ ବଂଚି ଲେଉଟି ଯିବ, ଏହା ଯେପରି ନ ଘଟିବ !

॥ ତିନି ॥

ଯେତେବେଳେ ହୃଦୟର ସିଂହାସନକୁ ଦଖଲ କରେ ଭକ୍ତି, ଜୀବନର ସାମ୍ରାଜ୍ୟକୁ ଶାସନ କରେ ଭକ୍ତି ରସର ଗଙ୍ଗୋତ୍ରୀ, ବଂଚିବାର ଧରିତ୍ରୀଟି ହୋଇଯାଏ ସାର୍ଥକ ଓ ପବିତ୍ର । ସ୍ୱଷ୍ଟ ଅବବୋଧ ହୋଇଯାଏ ଜୀବନ ଆଧ୍ୟାତ୍ମିକ ! ଦେହର ଦେବାଳୟରେ ଜୀବ ଈଶ୍ୱର । ଜୀବ ଅମୃତ । ଦେହ ମୃତ । ଦେହ ମାଟିର ଘଟ ।

ଅମୃତର ଉପାସନାକୁ ବିଦ୍ୟା ବୋଲି ଆର୍ଯ୍ୟ ଋଷି କରାଇଛନ୍ତି ପରିଚିତ । ଜଡ଼ର ଉପାସନାକୁ  ଅବିଦ୍ୟା ବୋଲି କରିଛନ୍ତି ଚିହ୍ନିତ । ସଂସାରରେ ବଂଚି ରହିବାକୁ ହେଲେ



Source: Author, Digitized by PPRACHIN, SOA

ଦୁଇଟି ଯାକର ଉପାସନା ଅପରିହାର୍ଯ୍ୟ । ବିଦ୍ୟା ଜ୍ଞାନତତ୍ତ୍ୱ ଏବଂ ଅବିଦ୍ୟା କର୍ମତତ୍ତ୍ୱ । ଅବିଦ୍ୟାଂ ମୃତ୍ୟୁଂ ତୀର୍ତ୍ୱା ବିଦ୍ୟୟାମୃତଶ୍ନୁତେ, ଅବିଦ୍ୟା(କର୍ମାନୁଷ୍ଠାନ) ତତ୍ତ୍ୱ ଦ୍ୱାରା ତରି ହୋଇଯାଏ ମୃତ୍ୟୁନଦୀ ଏବଂ ବିଦ୍ୟାନୁଷ୍ଠାନ ବା ଜ୍ଞାନତତ୍ତ୍ୱ ଦ୍ୱାରା ମାନବ ଭୋଗ କରିଥାଏ ଅମୃତ ।

ଯାହାଙ୍କ ମନ ଓ ହୃଦୟର ସୌନ୍ଦର ଗାଙ୍ଗେୟ ଉପତ୍ୟକାରେ ପ୍ରବାହିତ ହେଉଥାଏ ଭକ୍ତିରସର ସିନ୍ଧୁ, ଗଙ୍ଗା, ସରସ୍ୱତୀ ଓ ନର୍ମଦା ପ୍ରଭୃତି ନଦୀ, ତାହାଙ୍କୁ ସ୍ପର୍ଶ କରେ ନାହିଁ କୌଣସି ତତ୍ତ୍ୱର ସଲିଳ । ପଦ୍ମପତ୍ରପରି ସିଏ ଥାଆନ୍ତି ସର୍ବଦା ନିର୍ଲିପ୍ତ ଓ ସବୁଜ । ଭକ୍ତ ଜାଣେ, ସିଏ ସର୍ବବ୍ୟାପ୍ତ, ସିଏ ଆଲୋକର ଆଲୋକ, ପରିବ୍ୟାପ୍ତ ଜୀବ ଓ ଜଡ଼ ସେ ହିଁ ! କେବଳ ତାହାଙ୍କୁ ଉପଲବ୍ଧି କରିବା ଥାଏ ଦରକାର । ଋଷି କହନ୍ତି, ସିଏ ବାଣୀଙ୍କ ଦ୍ୱାରା ଅଭିବ୍ୟକ୍ତ ହୋଇ ନ ଥାଆନ୍ତି ବରଂ ବାଣୀ ତାହାଙ୍କ ଦ୍ୱାରା ହୋଇଥାଏ ଅଭିବ୍ୟକ୍ତ; 'ଯଦ୍ଵାଚନଭ୍ୟୁଦିତଂ ଯେନ ବାଗଭ୍ୟୁଦ୍ୟତେ । ତଦେବ ବ୍ରହ୍ମତଂ ବିଦ୍ଧି ନେଦଂ ଯଦିଦମୁପାସତେ'। ତେଣୁ ଋଗବେଦଙ୍କ ଠାରୁ ମିଳେ ଉପଦେଶ, 'ସତ୍ୟମିଦ୍ଵା ଉ ତଂ ବୟମିଂଦ୍ରଂ ସ୍ତବାମ ନାନୃତମ୍' । (ଋଗ୍.୮/୫୧/୧୨) । ଅର୍ଥାତ୍-ଆମେ ସେହି ନିତ୍ୟ ସ୍ୱରୂପ ପରମାତ୍ମାଙ୍କୁ ସ୍ତୁତି କରିବା, ଅସତ୍ୟ ପଦାର୍ଥମାନଙ୍କର ନୁହେଁ ! ପୁନଶ୍ଚ ସେହି ଋଗବେଦରୁ ହିଁ ଆର୍ଯ୍ୟପୁତ୍ର ପ୍ରଶ୍ନ କରିଛନ୍ତି, 'କସ୍ୟନୂନଂ କତମସ୍ୟାମୃତାନାଂ ମନାମହେ ଚାରୁ ଦେବସ୍ୟ ନାମ୍' (ଋଗ୍ ୧/୨୪/୧୬) । ଅର୍ଥାତ୍-ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ ଓ ସୁନ୍ଦର କେଉଁ ଜଣକ ନାମ ଉଚ୍ଚାରଣ କରିବି ? ନ ତସ୍ୟ ପ୍ରତମା ଅସ୍ତି ଯସ୍ୟ ନାମ ମହଦ୍ ଯଶଃ । ଅର୍ଥାତ୍ ଯାହାଙ୍କ ମହାନ୍ ଯଶ ଓ ନାମ ଅଟେ ପ୍ରସିଦ୍ଧ, ତାହାଙ୍କ ସମାନ ଅନ୍ୟ କେହି ନୁହଁନ୍ତି । ସେହି ଦେବ କିଏ, ଯାହାଙ୍କ ନାମ ମୁଁ କରିବି ଉଚ୍ଚାରଣ, କରିବି ସ୍ମରଣ ?

ସେ କିଏ, ସେହି ନାମ କ'ଣ, ସେହି ପରମ ପଦକୁ ପରିଚିତ କରାଇ ଦେଇଛନ୍ତି ମହାନ୍ ଗ୍ରନ୍ଥ ଶ୍ରୀଶୁକ୍ଳ ଯଜୁର୍ବେଦ, ତଦ୍ବିପ୍ରାସୋ ବିପନ୍ୟବୋ ଜାଗୃବାଂସଃ ସମିନ୍ଧତେ ବିଷ୍ଣୋର୍ଯତ ପରମଂ ପଦମ୍ । ଅର୍ଥତ୍-ସେହି ଜାଗରଣଶୀଳ ସଦ୍‌ବିପ୍ର ଭଗବାନ ବିଷ୍ଣୁଙ୍କ କୀର୍ତ୍ତନ କରି ତାହାଙ୍କ ପରମ ପଦକୁ ପ୍ରାପ୍ତ ହୋଇଥାନ୍ତି । କିନ୍ତୁ ଋଗ୍‌ବେଦ (୧/୨୪/୨) ଙ୍କ ଠାରୁ ଶ୍ରବଣ କରିବାକୁ ମିଳେ, ଅଗ୍ନେର୍ବୟଂ ପ୍ରଥମସ୍ୟାମୃତାନାଂ ମନାମହେ ଚାରୁ ଦେବସ୍ୟ ନାମ । ଅର୍ଥାତ୍- ଆମେ ଅମରତ୍ୱ ପ୍ରାପ୍ତ ଦେବତାଙ୍କ ମଧ୍ୟରେ ସୁନ୍ଦର ଏବଂ ସର୍ବପ୍ରଥମ ଅଗ୍ନି ରୂପକ ପରମାତ୍ମାଙ୍କ ନାମ କରିବା ଉଚ୍ଚାରଣ ।

ଏକୋ ସତ୍ ବିପ୍ରାଃ ବହୁଧା ବଦନ୍ତି । ସେହି ଦେବ ଏକ ଏବଂ ତାହା ସତ୍ୟ, ତାହାଙ୍କୁ ବିପ୍ରଗଣ ଭିନ୍ନ ଭିନ୍ନ ନାମରେ ଆରାଧିତ କରିଥାନ୍ତି । ବୈଦିକ ସାହିତ୍ୟ ସଂସାରର ଶ୍ରେଷ୍ଠ ଆଧ୍ୟାତ୍ମିକ ସାହିତ୍ୟ ଏବଂ ଏହାର ସମସ୍ତ ପଂକ୍ତି ଏକଏକ ଜୀବନ୍ତ ପ୍ରାର୍ଥନାର ମୂର୍ତ୍ତି



Source: Author, Digitized by PPRACHIN, SOA

ରୂପ । ଋଷି ଚେତନାରେ ଶବ୍‌ଦ ବ୍ରହ୍ମ । ଯାହା ଉଚ୍ଚାରିତ ହୁଏ ତାହା ବାକ୍ୟ ସ୍ଫୋଟ ଏବଂ ଯାହା ମନ ଭିତରେ ହୁଏ ଉଚ୍ଚାରିତ (ନିଃଶବ୍‌ଦ) ତାହା ଅନ୍ତର୍ସ୍ଫୋଟ ଭାବେ ପରିଚିତ । ପ୍ରାଣୀଙ୍କ ଅନ୍ତର ଭିତରେ ଶବ୍‌ଦ ବ୍ରହ୍ମ ଥା'ନ୍ତି ପରିବ୍ୟାପ୍ତ ! କୁହାଯାଇଛି, 'ଚୈତନ୍ୟଂ ସର୍ବ ଭୂତାନାଂ ଶବ୍‌ଦବ୍ରହ୍ମେତି ମେ ମତିଃ । ବାର୍ତ୍ତିକରେ ଉଲ୍ଲିଖିତ, ଶବ୍‌ଦ ବ୍ରହ୍ମେତି ଯଦ୍ ବେଦଶାସ୍ତ୍ରଂ ବେଦାଖ୍ୟମୁଚ୍ୟତେ'; ଅର୍ଥାତ୍-ଯେଉଁ ବେଦାଦି ଶାସ୍ତ୍ର ଅଛନ୍ତି ସେମାନେ ଶବ୍‌ଦ ବ୍ରହ୍ମ । ପୁଣି ତଂତ୍ର କହନ୍ତି, ଶବ୍‌ଦ ତାଙ୍କର ଶରୀର ବା ରୂପ (Form)।

ୟୁରୋପୀୟ ସଂସ୍କୃତିର ଶ୍ରେଷ୍ଠ ସାରସ୍ୱତ ଓ ଅଧ୍ୟାତ୍ମିକ ଗ୍ରନ୍ଥ ବାଇବେଲ କରିଛନ୍ତି ବ୍ୟକ୍ତ, In the begining was the Word, and the word was with God, and the Word was God.

- The Gospel According to John 1:1

ପୁନଶ୍ଚ-And the Word was made flesh and dwelt among us....

- The Gospel According to John 1:14

ଧ୍ୱନିରୁ ସୃଷ୍ଟିର ଜନ୍ମ ! ପ୍ରାୟ ସମସ୍ତ ଧର୍ମ ଓ ସଂସ୍କୃତିର ସମାନ ବୟାନ ! ଧ୍ୱନି ବା ଶବ୍‌ଦ ସ୍ରଷ୍ଟା ନିଜେ ଶବ୍‌ଦ ! ଶବ୍‌ଦରୁ ଶବ୍‌ଦର ଜନ୍ମ । ମୂଳ ଶବ୍‌ଦକୁ କୁହୁଯାଏ ବୀଜ ବା ପ୍ରଣବ ! ବେଦାଦି ବୀଜଂ ଶ୍ରୀବୀଜଂ ଶକ୍ତିବୀଜଂ ମନୋଭବମ୍ । ଯାହା ପ୍ରଣବ, ତାହା ଶ୍ରୀବୀଜ ବା ଶକ୍ତିବୀଜ । ତାହା ସ୍ୱତଃ ସ୍ପଂଦନରୁ ହୋଇଥାଏ ଉତ୍ପନ୍ନ । ଶ୍ରୀମଦ୍ ଭାଗବତ ବର୍ଣ୍ଣନା କରିଛନ୍ତି, ତତ୍ତ୍ୱବିଦସ୍ତତ୍ତ୍ୱଂ ଯଜଜ୍ଞାନମଦ୍ୱୟମ୍ । ବ୍ରହ୍ମେତି ପରମାତ୍ମେତି ଭଗବାନିତି ଶତଦ୍ୟତେ । (୧/୨/୧୧) ।

ଯେଉଁ ଅଦ୍ୱିତୀୟ ଜ୍ଞାନକୁ ତତ୍ତ୍ୱଜ୍ଞାନୀ ପୁରୁଷତତ୍ତ୍ୱ କହନ୍ତି, ତାହାକୁ ଉପନିଷଦ ଓ ବ୍ରହ୍ମଜ୍ଞାନୀ କହନ୍ତି ବ୍ରହ୍ମ, ପରମାତ୍ମା ବା ଭଗବାନ ବୋଲି ଯାହାଙ୍କୁ କହିଛନ୍ତି ଋଷି ଓ ଭକ୍ତ, ତାହାଙ୍କ ନାମାଦିର ବର୍ଣ୍ଣନା ପାଇଁ ଯେଉଁ ମାଧୁର୍ଯ୍ୟମୟୀ ପ୍ରକ୍ରିୟା ରହିଛି, ତାହାକୁ କୁହାଯାଏ 'ଛନ୍ଦ' । ଛନ୍ଦ ହିଁ ଲୟ-ବଦ୍ଧ ବା ତାଳ ବଦ୍ଧ ଧ୍ୱନିକୁ କରିଥାଏ ବ୍ୟବସ୍ଥିତ । ପ୍ରତ୍ୟେକ ଛନ୍ଦର ନିଜନିଜ ଦେବତା ଅଛନ୍ତି । ତାହାଙ୍କ କାର୍ଯ୍ୟ ଅଭିବ୍ୟକ୍ତି ଦ୍ୱାରା ଉପଲବ୍ଧି କରାଇବା ଆନନ୍ଦମୟ ବ୍ରହ୍ମଙ୍କୁ ! ଯାହାଙ୍କୁ 'ରସୋ ବୈ ସଃ' ବୋଲି ଦ୍ରଷ୍ଟା କରିଛନ୍ତି ଉଚ୍ଚାରିତ । ଯିଏ ଆନଂଦ ଘନ ରସ ! ସେହି ରସକୁ ଭୋଗ କରିବାକୁ ପାଠକଙ୍କୁ ଭକ୍ତଟିଏ ହେବାକୁ ପଡ଼ିବ !

"ସହିତୌ' ଶବ୍‌ଦରୁ 'ସାହିତ୍ୟ' ଶବ୍‌ଦଟି ସୃଷ୍ଟି । ଯାହାଥାଏ ଦେହ ସହିତ, ଯାହାଥାଏ ଜୀବ ସହିତ, ଯାହାଥାଏ ମନ ଓ ପ୍ରାଣ ସହିତ, ତାହା ସାହିତ୍ୟ ! ସାହିତ୍ୟ ଶବ୍‌ଦ ବସାଣ ଖାଲି ନୁହେଁ, ସାହିତ୍ୟ ପ୍ରାଣୀର ଆତ୍ମା । ସାହିତ୍ୟ ସ୍ୱୟଂ ପରମାତ୍ମା । ଆତ୍ମା,



Source: Author, Digitized by PPRACHIN, SOA

ପରମାତ୍ମା ଓ ସଂସାର ଗୋଟିଏ ତ୍ରିଭୁଜ ! ଜୀବ, ପରମ ଓ ସୃଷ୍ଟି ଗୋଟିଏ ବୃତ୍ତସ୍ଥ ବିନ୍ଦୁ ତିନୋଟି । ସେହି ବିନ୍ଦୁ ତିନୋଟିର ବ୍ୟାଖ୍ୟା ଭାରତୀୟ ସାହିତ୍ୟ ଓ ସଂସ୍କୃତି ବହୁ ସହସ୍ର ବର୍ଷତଳୁ କରି ଆସିଛନ୍ତି ।

ସ୍ୱାର୍ଥ ହାସଲ ହେଲେ ହୁଏ ପ୍ରାଣୀ ପାର୍ଥିବ ଆନନ୍ଦିତ । ପାର୍ଥିବ ଆନନ୍ଦ କ୍ଷଣିକ । ଶାଶ୍ୱତ ଆନନ୍ଦରୁ ସୃଷ୍ଟିର ଜନ୍ମ, ଶାଶ୍ୱତ ଆନନ୍ଦ ହେତୁ ଜୀବିତ ଥାଏ ସୃଷ୍ଟି ଏବଂ ଶାଶ୍ୱତ ଆନନ୍ଦ ପାଇଁ କରିଥାଏ ନିଜର ବିଲୟ । ବିଲୟ ବା ମୃତ୍ୟୁରେ ଯାହାର ଆନନ୍ଦ, ତାହା ଅମୃତ ବ୍ୟତୀତ ନ ହୋଇ ପାରେ ଅନ୍ୟ କିଛି ! ସାହିତ୍ୟ ସେହି ଅମୃତ, ସେହି ଅମୃତ ଭାରତୀୟ ସାହିତ୍ୟ ବିତରିତ କରି ଆସିଛି । ଭାରତୀୟ ସାହିତ୍ୟିକ କେବଳ ଶବ୍ଦ ଶିଳ୍ପୀ ନୁହନ୍ତି, ଭାରତୀୟ ସାହିତ୍ୟିକ ସାହିତ୍ୟରେ ମଣିଷର ଆତ୍ମାକୁ ଗଢ଼ିଥାନ୍ତି । ବସ୍ତୁବାଦୀ ଜୀବନ ମାଟିହାଣ୍ଡି, ତାହା ସେମାନେ ଗଢ଼ି ନାହାନ୍ତି !

ଦେହର ଦର୍ପଣରେ ଜୀବ ଦେଖି ଥାଏ ପରମାତ୍ମାଙ୍କ ମୁହଁ । ଜୀବ ଜନ୍ମର ଉଦ୍ଦେଶ୍ୟ, ସଂସାର ଚକ୍ରରେ ଦେହ ଜନ୍ମର ଆଭିମୁଖ୍ୟ, ଦେହର ଦର୍ପଣରେ ଦେହ ସହିତ ଥିବା ଚୈତ୍ୟପୁରୁଷ ପରମ ପୁରୁଷଙ୍କୁ କରିବା ଦର୍ଶନ ! ନୀଳଜ୍ୟୋତି ଜ୍ୟୋତିର୍ମୟ ନୀଳିମାରେ ହେବ ବିଲୀନ ! ଯେତେବେଳେ ପର୍ଯ୍ୟନ୍ତ ପରମ ସତ୍ୟଟିକୁ ଆବିଷ୍କାର କରି ନ ପାରିଛି ପ୍ରାଣୀ ଭବ ବନ୍ଧନରୁ ବା ଜନ୍ମ ଚକ୍ରରୁ ନାହିଁ ତାହାର ନିସ୍ତାର ! ଆତ୍ମା ସହିତ ଦେହଟିଏ ଜନ୍ମ ନେଉଥିବ, ଲୀଳା ରଚନା କରୁଥିବ, ପାହାଚ ପରେ ପାହାଚ ଆରୋହଣ କରୁଥିବ ତା ଚେତନାର ପାଦ । ଚାଲିଥିବ ସାହିତ୍ୟ ସର୍ଜ୍ଜନା ! ସୃଷ୍ଟିର ସତ୍ୟକୁ ବିଶ୍ଳେଷଣ କରୁଥିବେ ସ୍ରଷ୍ଟା ! ବୌଦ୍ଧିକ ବିକାଶର ପୁଲକ ତଲ୍ଲୀନ କରି ରଖୁଥିବ ଏବଂ ପାର୍ଥିବ ସମ୍ପଦର ଅଧିକୃତ ସୁଖ ଆନନ୍ଦ ପ୍ରଦାନ କରି ଚାଲିଥିବ, ଯାହା ନୁହେଁ (ସାହିତ୍ୟ) ଦେହ ସହିତ ଜୀବନର ଜନ୍ମ ଉଦ୍ଦେଶ୍ୟ !

ଶ୍ରୀମଦ୍ ଭାଗବତ (୧୧/୨୯/୨୨) କରିଛନ୍ତି ବର୍ଣ୍ଣିତ, ଏଷା ବୁଦ୍ଧିମତାଂ ବୁଦ୍ଧିର୍ମନୀଷାଚ ମନୀଷିଣାମ୍ / ଯତ୍ ସତ୍ୟମନ୍ଥି ତୁନେହ ମତ୍ର୍ୟେନାପ୍ନୋତି ମାଽମୃତମ । ଅର୍ଥାତ୍ ଏହି ମିଥ୍ୟା ଓ ମୃତ୍ୟୁଶୀଳ ମାନବ ଶରୀରରେ ଏହି ଜନ୍ମ ଠାରୁ ଏବଂ ଏହିଁ ଜନ୍ମରେ ମତେ ସତ୍ୟ ଓ ଅବିନାଶୀ ତତ୍ତ୍ୱ ପ୍ରାପ୍ତି ହେବା ବୁଦ୍ଧିମାନର ହିଁ ବୁଦ୍ଧି ଚାତୁର୍ଯ୍ୟ, ତଥା ବିବେକୀ ପୁରୁଷର ବିବେକ ଅଟେ ଏହା !

ଜଗତର ମୂଳ କାରଣ 'ଶବ୍‌ଦ', ଭଗବାନଙ୍କ ନାମ ! ଜଗତ ପଞ୍ଚଭୌତିକ ଏବଂ ପ୍ରକୃତି ତ୍ରିଗୁଣାତ୍ମକ । ପ୍ରକୃତପରି ଶବ୍‌ଦ ନୁହେଁ ଜଡ଼, ଶବ୍‌ଦ ଚିନ୍ମୟ ଓ ଚେତନା ଜଗତ ଜଡ଼ । ଶବ୍‌ଦ ଉଚ୍ଚାରିତ ହେଲେ ହୁଏ ତ୍ରିଗୁଣାତ୍ମକ । ସତ୍ତ୍ୱ, ରଜ ଓ ତମଃ ଗୁଣ ଅନୁଯାୟୀ ଶବ୍‌ଦ ବିସ୍ତାର କରିଥାଏ ତାହା ପ୍ରଭାବ । କିନ୍ତୁ ଯିଏ ଭଗବାନଙ୍କ ଯେ କୌଣସି ନାମରୁ



Source: Author, Digitized by PPRACHIN, SOA

ଗୋଟିଏ କରିଥାଏ ସ୍ମରଣ, ସିଏ ହୋଇଥାଏ 'ସଲୋକ୍ୟ ମୁକ୍ତିମାପ୍ନୋତି' । ଭବଲୋକ ଜନ୍ମ ଯନ୍ତ୍ରଣାରୁ ଲଭିଥାଏ ମୁକ୍ତି ।

ସାହିତ୍ୟ ଜଣେ ଦୋକାନୀର ଡାଲାରେ ବାଇଗଣ ବା ଫୁଲକୋବି ସଜାଇବା ପରି ଶୁଷ୍କ ମୂଲ୍ୟହୀନ ଶବ୍ଦ ସଜାଇବା ନୁହେଁ, ସାହିତ୍ୟ ମଣିଷର ଅମୃତ ତୃଷା । ସାହିତ୍ୟ ପ୍ରାଣୀର ଆତ୍ମା, ଶରୀର ସହିତ ଥିବା ପରମାତ୍ମା, ଗୋଟିଏ ଅନ୍ତଃ ସଲିଳା ଶାଶ୍ୱତ ଫୁଲ୍‌ଗୁ ପ୍ରବାହର ପ୍ରକଟ ହେବାର ଇଚ୍ଛା !

||ଚାରି||

'ଦି ଥିଓରୀ ଅଫ୍ ଲିଟିରେଚର୍'ରେ କୁହାଯାଇଛି, Writing is making an attempt to say something in a beautiful and pleasing manner. ଏହା ସାହିତ୍ୟର ଆଙ୍ଗିକ ଗଢ଼ଣ । ସେହିପରି କୁହାଯାଇଛି, ତାହା ସାହିତ୍ୟ, ଯାହା ଅନ୍ୟ ଶବ୍ଦ ଓ ଭାବରେ 'practising the art of letters', ଅକ୍ଷର ଶିଳ୍ପ ବା ଶବ୍ଦ ଶିଳ୍ପର ବିରାଟ ଓ ବ୍ୟାପକ ପୃଥିବୀର ନାମ ସାହିତ୍ୟ, ଏହା ନିଶ୍ଚିତ ! ସେହି ଦିଗ୍‌ବଳୟକୁ ନିଜ ପ୍ରବନ୍ଧରେ ଦେଖାଇବାକୁ ଉଦ୍ୟମ କରିଛନ୍ତି ପ୍ରଫେସର୍ ବି.ଆର୍. ମଲ୍ଲିକ୍ Literature, as Matthew Arnold defined it in his essays on criticism, it the record of "best that is know and thought in the world." (Literature, Vol-I, Page-1) S.Chand & Co 1965). ପୁନଶ୍ଚ ଜି.ଏମ୍.ହପ୍‌କିନ୍ସଙ୍କ କବିତା ଆଲୋଚନାର ନିଷ୍କର୍ଷରେ କରିଛନ୍ତି ପ୍ରତିପାଦିତ, Literature thus may be an instrument of self-discovery, or a mode of self-fulfilment. ଭାରତୀୟ ନାଂଦନିକ ଦୃଷ୍ଟିରୁ ପାଖାପାଖି ସାହିତ୍ୟର ଏହି ସଂଜ୍ଞା ! ଓସ୍କାର ଓ୍ୟାଲ୍‌ଡ୍ ମଧ୍ୟ ନିର୍ଣ୍ଣୟ କରିଛନ୍ତି, The meaning of any beautiful created thing is as much in the soul of him who looks, at it as it was in his soul who wrought it. ସ୍ରଷ୍ଟା କିଏ ? ଯିଏ 'ବେଦବିତ୍ କବି' ବୋଲି ବ୍ୟାସ କହିଛନ୍ତି 'ବିଷ୍ଣୁ ସହସ୍ର' ନାମରେ ଉଲ୍ଲେଖ । 'ବେଦ' ଆତ୍ମଜ୍ଞାନ, Self-discovery ! ଯାହା 'ସତ୍‌କୃତଃ' ଏବଂ ତାହାର ସ୍ରଷ୍ଟା 'ସତ୍‌କର୍ତ୍ତା' । ରୁଚିଶୀଳ ଭାଷାରେ ଅଭିବ୍ୟକ୍ତ ଏବଂ ଭାଷା ହିଁ ସାହିତ୍ୟର ବାହକ ! ଯେମିତି ଅରୂପ ରୂପଟିଏ ଲାଭ ନକଲେ ତାହା ବୈଶିଷ୍ଟ ନିରର୍ଥକ ! ଶୂନ୍ୟ ଯେତେ ଅର୍ଥବୋଧକ ହେଲେ ବି ଅନଭିବ୍ୟକ୍ତ ସ୍ଥିତି ପ୍ରାଣରେ ସଂଚାର କରି ନଥାଏ ରସଭାବ !

ସାହିତ୍ୟ ରସର ଭବ, ଯେଉଁ ରସ (ଆତ୍ମରସ) ନିଜେ ଚିନ୍ମୟ, ସତ୍ୟ ଓ ଆନନ୍ଦଙ୍କ ସ୍ୱରୂପର ପ୍ରକାଶ । ପାଶ୍ଚାତ୍ୟ ଧର୍ମିକ ସାହିତ୍ୟ ଠାରୁ ମଧ୍ୟ ଶ୍ରବଣ କରିବାକୁ ମିଳିଛି, The



Source: Author, Digitized by PPRACHIN, SOA

kingdom of heaven is within you. ସେହି ସ୍ୱର୍ଗ ସାମ୍ରାଜ୍ୟ ପ୍ରତୀକଟିର ଭାବ ଖୁବ୍ ବ୍ୟାପକ । ତାହା ମାନବାତ୍ମା ହୋଇପାରେ, ତାହା ମାନବର ଭାଷା ହୋଇପାରେ, ତାହା ରସ ହୋଇପାରେ ଏବଂ ହୋଇପାରେ ମଧ୍ୟ ସଜଡ଼ା ଶବ୍ଦ ବ୍ରହ୍ମ ।

ସାହିତ୍ୟର ଆଦ୍ୟବର୍ଣ୍ଣ 'ସ', ବତିଂଶତମ ବ୍ୟଞ୍ଜନ ବର୍ଣ୍ଣ ଜିହ୍ୱାର ଅଗ୍ର ଓ ଛାମୁଦାନ୍ତ ସାହାଯ୍ୟରେ ହୁଏ ଉଚ୍ଚାରିତ । ଭାଷାରେ ଏହାକୁ ଉଚ୍ଚାରଣ କଲା ବେଳେ ଜିଭ ତାଳୁ ଓ ମୂର୍ଦ୍ଧା ଦିଗକୁ କରେ ଗତି । 'ସ' 'ସହିତ' କୁ ବୁଝାଏ, ଯେମିତି 'ସସ୍ତ୍ରୀକ', 'ସସଙ୍ଗ' ଓ 'ସଶସ୍ତ୍ର' ପ୍ରଭୃତି । ପୁନଶ୍ଚ ଅନ୍ୟପକ୍ଷରେ 'ସ' ଗୋଟାଏ ଏକାକ୍ଷର ଶବ୍ଦ । ଏହାର ରହିଛି ଅନେକ ଅର୍ଥ । ବିଷ୍ଣୁ, ଶିବ, ଚନ୍ଦ୍ର, ବାୟୁ, ଜୀବାତ୍ମା, ଶୁକ୍ରାଚାର୍ଯ୍ୟ, ଚିନ୍ତା, ସର୍ପ ଓ ଦୀପ୍ତ ପ୍ରଭୃତି ଅର୍ଥରେ 'ସ' ଶବ୍ଦଟି ସାହିତ୍ୟରେ ବ୍ୟବହୃତ ହୋଇଅଛି । ଆଦ୍ୟରେ 'ସ' ଅନୁପ୍ରାସ, 'ସୁଭଦ୍ରା ପରିଣୟ' କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପୁସ୍ତକ, 'ସ' ଶବ୍ଦ ବ୍ୟବହାରର ଗୋଟିଏ ଭଲ ଦୃଷ୍ଟାନ୍ତ !

'ସ' ରେ ଆକାର ଯୁକ୍ତହୋଇ ହୁଏ 'ସା'; 'ସା' ଭାରତୀୟ ସଂଗୀତ ସପ୍ତସ୍ୱର (ଷଡ଼ଜ)ର ପ୍ରଥମ ସ୍ୱର, ମୟୂର ସ୍ୱନ । ଭରତ ନାଟ୍ୟଶାସ୍ତ୍ରରେ ଲେଖିଛନ୍ତି, କ୍ରମଯୁକ୍ତାଃ ସ୍ୱରାଃ ସପ୍ତ ମୂର୍ଚ୍ଛନା ପରିକୀର୍ତ୍ତିତା । ସାହିତ୍ୟ କଳାର ଶୈଶବ ସଂଗୀତ (ଗାୟନ)ରୁ, ବୈଦିକ ସ୍ତବରୁ ଘଟିଅଛି କ୍ରମବିକାଶ । 'ସା' ଏକାକ୍ଷର ଶବ୍ଦର ମଧ୍ୟ ରହିଛି ଗୁଡ଼ିଏ ଅଭିଧାନିକ ଅର୍ଥ । ସେଗୁଡ଼ିକ ହେଲା-ଶାନ୍ତି, ଶୋଭା, ପାର୍ବତ୍ୟ ଓ ଗୌରୀ ପ୍ରଭୃତି । 'ହିତ୍ୟ', ଯାହା ହିତକର ! 'ହିତ' ଅର୍ଥ ସାଧାରଣତଃ ମଙ୍ଗଳ, ଯାହା ଶୁଭଙ୍କର, ସାମୂହିକ ହିତକର । ନୁହେଁ ବ୍ୟକ୍ତିଗତ ଅହଂକାର । ଅହଂ ଅବକ୍ଷୟ ଆଡ଼କୁ କଢ଼ାଇ ନିଏ ବାଟ ! ସାହିତ୍ୟ ଏବେ ସେହି ଅବକ୍ଷୟର ଫଟୋ । ଲେଖକ ନିଜ Private world କୁ Public World ର ପଟ୍ଟଚିତ୍ରରେ ବଦଳାଇ ପାଠକ/ ପାଠିକାକୁ ଦେଖାଉ ଅଛନ୍ତି ବିସ୍ମୟ ଓ ବିଶ୍ୱାସ । ଜୁନ୍ ସଂଧ୍ୟାର ଲେମ୍ବୁ ଗଛର ବାସ୍ନା ପାଠକଙ୍କୁ କ୍ରେଜି କରୁ ନାହିଁ । ରାସ୍ତାକଡ଼ରେ ଝୁଲୁଥିବା ରେଡ଼ିମେଡ୍ ଶସ୍ତାଜିନ୍ ପ୍ୟାଣ୍ଟ୍‌ପରି ଦିଶୁଛି ସାହିତ୍ୟ ! କୁଆଡ଼େ ଗଲା ସାହିତ୍ୟର ସେହି ମୂଳ ଲକ୍ଷ୍ୟ ? ଅମୃତମୟ ଭାବ ଓ ଭାବନାର ପବିତ୍ର ନିର୍ମୋକ !!





Source: Author, Digitized by PPRACHIN, SOA

# ବାକ୍‌ତତ୍ତ୍ୱ

'ଶବ୍‌ଦ ସାଧନା' ଓ 'ଶବ୍‌ଦ ଶକ୍ତି' ଅଟେ କୁଣ୍ଡଳିନୀର ବିଷୟ । ଶବ୍‌ଦ 'ବାକ୍' ବିଶେଷ । 'ବାକ୍' ପରାଶକ୍ତି କୁଣ୍ଡଳିନୀର ଏକ ମହତ୍ତ୍ୱପୂର୍ଣ୍ଣ ରୂପ । 'ବାକ୍'କୁ କୁହାଯାଇଛି 'ପରମତତ୍ତ୍ୱ' । ତାହା ମହାଶକ୍ତିଙ୍କ 'ତ୍ରିପୁରା' ଅନ୍ତର୍ଗତ ଆସୁଥିବା ଜ୍ଞାନର ଶ୍ରେଷ୍ଠ ଅଂଶ । 'ପ୍ରାଣ' ଓ 'ମନ' ସହିତ ସଂଲଗ୍ନ ହୋଇ 'ବାକ୍' ଯାବତୀୟ ସୃଷ୍ଟିର କାରଣ । ସ୍ଥୁଳ ଦୃଷ୍ଟିରୁ 'ଶବଦ୍' ବାହାରର ବସ୍ତୁ । କିନ୍ତୁ ତାହାର ଗ୍ରହଣକର୍ତ୍ତା ଇନ୍ଦ୍ରିୟ 'ବାକ୍' ଭିତରେ ଥାଏ ଅବସ୍ଥିତ । 'ଶବଦ୍' ଓ ତାହାର ଗ୍ରହଣ କର୍ତ୍ତା 'ବାକ୍'ର ଆଶ୍ରୟ ନେଇ ଭାରତୀୟ ସଂସ୍କୃତି ଓ ସାଧନାର ମୂଳ ଭିତ୍ତି ମନ୍ତ୍ର, ଜପ, ନାଡୀ ବିଜ୍ଞାନ, ପ୍ରାଣ ଓ ଦେବତତ୍ତ୍ୱ, ନକ୍ଷତ୍ର, ସୂର୍ଯ୍ୟ, ଚନ୍ଦ୍ର ଏବଂ ଯୋଗବିଜ୍ଞାନ ଆଦିର ଅନେକ ବିଶାଳ ଓ ଗମ୍ଭୀର ସାହିତ୍ୟ, ଯାହା ଆମ ସମ୍ମୁଖରେ ରହିଅଛି, ~~ତାହାର ଅନେକ ବିଶାଳ ଓ ଗମ୍ଭୀର ସାହିତ୍ୟ, ଯାହା ଆମ ସମ୍ମୁଖରେ~~ ରହିଅଛି, ତାହାର ଉଚ୍ଚ ସାଧନା ପରଂପରା ସେତିକି ପ୍ରାଚୀନ, ଯେତିକି ବର୍ଷ ବୟସ୍କ ମାନବ ସଭ୍ୟତା ଓ ତାହାର ଇତିହାସ ! ସେହି ପରମ୍ପରା ଓ ବିକାଶର ସ୍ରୋତ, ଯେଉଁଦିନ ଠାରୁ ଆମେ ଆଧୁନିକ ଦୃଷ୍ଟି ପ୍ରାପ୍ତ, ସେହି ଦିନଠାରୁ ତାହା ସ୍ତମ୍ଭୀତ । ଆଜି ଆମେ ଯାହାକୁ କଳା-ସଂସ୍କୃତି କହୁଛୁ ବାସ୍ତବରେ ନୁହେଁ ତାହା ଭାରତୀୟ କଳା-ସଂସ୍କୃତି ।

'ଶବ୍‌ଦ ସାଧନା' ସିଦ୍ଧାନ୍ତର ମୂଳସ୍ରୋତ 'ବେଦ' । ବେଦ ଅନୁଯାୟୀ 'ଶବ୍‌ଦ' ସମସ୍ତ ଶକ୍ତିର କେନ୍ଦ୍ର, ମୂଳସ୍ରୋତ । କୌଣସି ବସ୍ତୁ ସତ୍ତା ତା' ରୂପ ଉପରେ କରେ ନିର୍ଭର । 'ରୂପ' ଦୈବୀ-ମାନସୀ ଧାରଣା, ମାନବ ଜାତି ରୂପରେ ଅଟେ ପ୍ରତ୍ୟକ୍ଷୀକରଣ । ଅର୍ଥାତ୍ 'ରୂପ' ଶବ୍‌ଦର ରହିଛି ଦୁଇଟି ବିଗ୍ରହ । ଯାହା କିଛି ଜ୍ଞାତ, ତାହା ଅଭିବ୍ୟକ୍ତ, ଯାହା କିଛି ଅସ୍ତିତ୍ୱ, ତାହା ଇନ୍ଦ୍ରିୟ ଗତନୁହେଁ ବା ଅସତ୍ୟ । ଯେତେବେଳ ପର୍ଯ୍ୟନ୍ତ ଦୈବୀଧାରଣା କୌଣସି ଦେବ-ଚିତ୍ରରେ ଆବିର୍ଭୂତ ହୋଇନାହିଁ, ସେତେବେଳ ପର୍ଯ୍ୟନ୍ତ ବସ୍ତୁ ପ୍ରତ୍ୟେକ୍ଷ ରୂପରେ ମନୁଷ୍ୟ ସାମ୍ନାରେ ଉପସ୍ଥିତ ହୋଇପାରି ନଥାଏ । ସମସ୍ତ ଜଡ଼-ଚେତନ ବସ୍ତୁ ମାନସୀ ଧାରଣା ! ଅତଃ ମାନସିକ କ୍ରିୟାଦ୍ୱାରା ସେ ସମସ୍ତ ପ୍ରତ୍ୟକ୍ଷ ହୁଏ । ସେହିପରି ଶବ୍‌ଦର ରୂପ ଅନେକ ।



Source: Author, Digitized by PPRACHIN, SOA

ଦୁଇଟି ବସ୍ତୁର ଆଘାତରୁ ଉତ୍ପନ୍ନ ଶବ୍‌ଦକୁ କହନ୍ତି ଧ୍ୱନ୍ୟାତ୍ମକ ଶବ୍‌ଦ । ଶବ୍‌ଦ ଉଚ୍ଚାରଣ ହେବା ପୂର୍ବରୁ ଶରୀର ଭିତରେ ବିଶେଷ ସ୍ଥାନରେ ଘାତ ପ୍ରତିଘାତ ହୁଏ ଏବଂ ତାହା ପରେ ଶବ୍‌ଦ ବାହାରେ । ଏହି ପ୍ରକାର ଆହାତ ଶବ୍‌ଦ ଧ୍ୱନି କ୍ଷଣିକ ଓ ବିଭିନ୍ନ ପ୍ରକାର । ନିଜ ଶକ୍ତି ସୀମାରୁ ଏହା ବାହାରକୁ ଯାଇ ପାରିନଥାଏ । ଏହାର ଠିକ୍ ବିପରୀତ, ବିନା କୌଣସି ଆଘାତରୁ ଉତ୍ପନ୍ନ ହୁଏ ଯେଉଁ ଶବ୍‌ଦ, ତାହା ବ୍ରହ୍ମରୂପ, ତାହାକୁ କୁହାଯାଏ 'ବ୍ରହ୍ମଶବ୍‌ଦ' । ବ୍ରହ୍ମଶବ୍‌ଦ ସଂପୂର୍ଣ୍ଣ ବିଶ୍ୱ-ବ୍ରହ୍ମାଣ୍ଡ ପରିବ୍ୟାପ୍ତ । ଧ୍ୱନ୍ୟାତ୍ମକ ଶବ୍‌ଦ ସଂଘାତ୍ମକ । ଅସଂଘାତ୍ମକ ଶବ୍‌ଦ ଯୋଗ ଭାଷାରେ ଅନାହତ ଶବ୍‌ଦ ।

'ଧ୍ୱନ୍ୟାତ୍ମକ' ପରେ 'ବର୍ଣ୍ଣନାତ୍ମକ' ଶବ୍‌ଦ । ଶବ୍‌ଦ, ପଦ ଓ ବାକ୍ୟ ଭେଦରେ ବର୍ଣ୍ଣନାତ୍ମକ ଶବ୍‌ଦ ତିନି ପ୍ରକାର । ଯେପରି ମାନବର ସ୍ଥୁଳ ଓ ସୂକ୍ଷ୍ମ ଦେହ, ସେହିପରି ଶବ୍‌ଦର ଦୁଇ ରୂପ, ସ୍ଥୁଳ ସୂକ୍ଷ୍ମ । ପ୍ରତ୍ୟେକ ଦୁଇଦୁଇ ରୂପ ଓ ଅବସ୍ଥା ଯୁକ୍ତ । ସେଗୁଡ଼ିକୁ - ପରା, ପଶ୍ୟନ୍ତି, ମଧ୍ୟମା ଓ ବୈଖରୀ ବୋଲି କହିଥାନ୍ତି । 'ମଧ୍ୟମା' ଓ 'ବୈଖରୀ' ଶବ୍‌ଦର 'ସ୍ଥୁଳ' ଓ 'ସ୍ଥୁଳତମ' ରୂପ । ସେହିପରି 'ପଶ୍ୟନ୍ତି' ଓ 'ପରା' ଶବ୍‌ଦର 'ସୂକ୍ଷ୍ମ' ଓ 'ସୂକ୍ଷ୍ମତମ' ରୂପ । ଶବ୍‌ଦର ଆଦି ରୂପ 'ପରା' ଏବଂ 'ପରା'ର ନିଆରା ରୂପ ପର୍ଯ୍ୟାୟ 'କୁଣ୍ଡଳିନୀ ଶକ୍ତି' । ଏଣୁ କୁଣ୍ଡଳିନୀକୁ 'ପରାଶକ୍ତି' କହନ୍ତି । 'ପରା' ରୂପରେ କୁଣ୍ଡଳିନୀ ଅଟେ ଶବ୍‌ଦର ଅକ୍ଷୟ ଭଣ୍ଡାର । ନିଜର ପ୍ରାରମ୍ଭିକ ରୂପ ଓ ଅବସ୍ଥାରେ ତହିଁରେ ବିଦ୍ୟମାନ ଥାଆନ୍ତି ଶବ୍‌ଦ ।

'ପରା'ର ଶକ୍ତି କୁଣ୍ଡଳିନୀ ଶକ୍ତି । କୁଣ୍ଡଳିନୀକୁ ଯେପରି 'ପରା' କୁହାଯାଇଛି, ସେହିପରି ତାହାର ଅନ୍ୟନାମ 'ମହାବିନ୍ଦୁ' । ଦେହ ଭିତରେ ସର୍ବଦା ମହାବିନ୍ଦୁର ବିସ୍ଫୋଟ ଘଟୁଅଛି । କୁଣ୍ଡଳିନୀ ସ୍ଥୁଳ ବା ମୂଳାଧାର ଚକ୍ରରେ ଘଟୁଅଛି ଏହି ବିସ୍ଫୋଟ । ସେହି ବିସ୍ଫୋଟରୁ ଉତ୍ପନ୍ନ ଶକ୍ତି 'ପରା' ବା କୁଣ୍ଡଳିନୀ । ବିସ୍ଫୋଟରୁ ଯେଉଁ ପ୍ରଥମ ଧ୍ୱନି ଜାତ ହୁଏ, ତାହା ଗତିଶୀଳ ହୋଇ 'ସ୍ପନ୍ଦ' ରୂପ କରେ ଗ୍ରହଣ । ସେହି 'ସ୍ପନ୍ଦ'ର ନାମ 'ପଶ୍ୟନ୍ତି' । 'ପଶ୍ୟନ୍ତି' ଅଟେ 'ସ୍ପଂଦ' । ଦେହ ଭିତରେ ବିସ୍ଫୋଟ ସହିତ 'ସ୍ପଂଦନ' ହୋଇ ଚାଲିଥାଏ । ଯେଉଁ ସ୍ଥାନରେ ତାହା ହେଉଥାଏ, ତାହା ମୂଳାଧାର ଠାରୁ ମଣିପୁର ଚକ୍ର ମଧ୍ୟରେ । ଏହି ଚକ୍ରରେ ମନ ସହିତ ସ୍ପଂଦର ସମ୍ବନ୍ଧ ସ୍ଥାପିତ ହେଉଥାଏ । ମନ ଓ ସ୍ପଂଦ ସଂଯୋଗରେ ଦେହ ଭିତରେ ବିଚାର ବା ଭାବନାମାନଙ୍କ ଘଟୁଛି ଆବିର୍ଭାବ । ଶବ୍‌ଦର 'ପରା' ଓ 'ପଶ୍ୟନ୍ତି' ଏହି ଦୁଇ ଅବସ୍ଥା 'ଶବ୍‌ଦବହ୍ମ' ଅବସ୍ଥା । ତାହା ଉକ୍ତ ଦୁଇ ଚକ୍ରରୁ ହୋଇଥାଏ ଉତ୍ପନ୍ନ ।

ସ୍ପଂଦ ଆଗକୁ 'ମଧ୍ୟମା'ରେ ହେଉଛି ପରିବର୍ତ୍ତିତ । 'ମଧ୍ୟମା'କୁ ସୃଷ୍ଟିର ଆରମ୍ଭ ସ୍ଥଳ ବୋଲି ଚିହ୍ନିତ କରିଛନ୍ତି ଉଚ୍ଚକୋଟିର ଯୋଗୀବୃନ୍ଦ । ଉତ୍ପତ୍ତିର ପ୍ରଥମାବସ୍ଥାରେ



Source: Author, Digitized by PPRACHIN, SOA

'ମଧ୍ୟମା'ର କିଛି ବାହ୍ୟ ଅର୍ଥ ନଥାଏ । ବାସ୍ତବରେ ମଧ୍ୟମା ଶବ୍‌ଦ ଅଟେ ମାନସିକ ଗତି, ଯାହା କୌଣସି ବସ୍ତୁର ଧାରଣା ସୃଷ୍ଟି କରୁଛି । ମଧ୍ୟମା ଅର୍ଥ ସ୍ଥୁଳ ବାହ୍ୟ ବସ୍ତୁର ମାନସିକ ବିମ୍ବ । ଏହିପରି ମଧ୍ୟମା ଶବ୍‌ଦ ଓ ତାହାର ଅର୍ଥ କ୍ରମଶଃ ଜ୍ଞାନ ଓ ଜ୍ଞେୟ, ବା ଗ୍ରାହକ ଓ ଗ୍ରାହ୍ୟ । ଯେଉଁ ପର୍ଯ୍ୟନ୍ତ ସୂକ୍ଷ୍ମ ଦେହ ଯାଏଁ ଏହାର ସମ୍ବନ୍ଧ । ଅର୍ଥାତ୍ 'ମଧ୍ୟମା ଶବ୍‌ଦ' ସୂକ୍ଷ୍ମଶରୀରରୁ ଏବଂ 'ମଧ୍ୟମା ଅର୍ଥ' ସ୍ଥୁଳ ଶରୀରରେ ସମ୍ବନ୍ଧିତ । ମଧ୍ୟମା ରୂପର ଅର୍ଦ୍ଧେକ ଅଂଶ ପରା-ପଶ୍ୟନ୍ତି ଗର୍ଭରେ ରହିଥାଏ, ଯାହା ସେମାନଙ୍କ ପରି ଅବ୍ୟକ୍ତ ଓ ସୂକ୍ଷ୍ମ । କିନ୍ତୁ ପୂର୍ଣ୍ଣ ଗତିଶୀଳ ଅଟେ । ଏହି ଅର୍ଥ ରୂପରେ 'ମଧ୍ୟମା' ଶବ୍‌ଦ ନାମିତ । ମଧ୍ୟମାର ଶେଷ ଅର୍ଥ ରୂପ ସହିତ ହୃଦୟ ଓ କଣ୍ଠ ମଧ୍ୟ ସ୍ଥାନ ଠାରେ ପ୍ରାଣ ସହିତ ହୋଇଯାଏ ସଂଯୋଗ ଏବଂ ସଂଯୋଗ ହେବା ମାତ୍ରେ ତାହା ଯେଉଁ ରୂପରେ ହୋଇଥାଏ ପରିବର୍ତ୍ତିତ, ତାହାକୁ କୁହାଯାଏ ବୈଖରୀ । ସ୍ଥୁଳ ବୈଖରୀ ଶବ୍‌ଦ । କିନ୍ତୁ ତାହା ଗର୍ଭରେ ପରା, ପଶ୍ୟନ୍ତି ଓ ମଧ୍ୟମା ଏହି ତ୍ରୟ ବୀଜରୂପରେ ବିଦ୍ୟମାନ । ତେଣୁ ବାକ୍ ଚତୁର୍ବିଧ । ବୈଖରୀ ଏପରି ଗୋଟିଏ ସୂତ୍ର ଯେ ଯାହା ମାଧ୍ୟମରେ ସାଧକ ବୃନ୍ଦ ମଧ୍ୟମା ଓ ପଶ୍ୟନ୍ତିକୁ ସ୍ପର୍ଶ କରି 'ପରା' ଅବସ୍ଥାରେ ପହଂଚି ଯାଆନ୍ତି । 'ପରା' ଶବ୍‌ଦ 'ପରମାତ୍ମା' ତତ୍ତ୍ୱ । 'ମଧ୍ୟମା'ର ଅର୍ଦ୍ଧେକ ଅଂଶ ମନସ୍ତତ୍ତ୍ୱ ରୂପରେ ପ୍ରକଟିତ ହେବା ବେଳେ ଶେଷ ଅର୍ଦ୍ଧାଂଶ 'ବୈଖରୀ' ଶବ୍ଦ ଆକାରରେ ହୋଇଥାଏ ବ୍ୟକ୍ତ । ମୌଳିକ ରୂପରେ ତିନି ଶବ୍‌ଦ ତିନି ତତ୍ତ୍ୱ । ବୈଖରୀ ସେହି ତିନିତତ୍ତ୍ୱର ସ୍ଥୁଳ ଅଭିବ୍ୟକ୍ତି । ବେଦରେ ଏହି ତିନି ତତ୍ତ୍ୱ 'ତ୍ରୟୀବିଦ୍ୟା' ନାମରେ ସମ୍ବୋଧିତ । ପରା, ପଶ୍ୟନ୍ତି ଓ ମଧ୍ୟମାର ଅର୍ଦ୍ଧେକ ମିଶି ଅଦ୍ୱୈଇଶବ୍‌ଦ 'ବିଦ୍ୟା' । ଅଦ୍ୱୈଇ ତତ୍ତ୍ୱର ସମନ୍ୱୟ ରୂପ 'ଓଁ' ର ଅଭିବ୍ୟକ୍ତି ଘଟିଛି । ଅଧା ମଧ୍ୟମା ଓଁର ଅର୍ଦ୍ଧମାତ୍ରା, ଯାହା 'ଓମ୍' ସହିତ ଅଭିବ୍ୟକ୍ତ । ତାହା 'ସୂକ୍ଷ୍ମାବାକ୍' ବୋଲି ମଧ୍ୟ କଥିତ ।

ବର୍ଣ୍ଣମାଳା ଦୃଷ୍ଟିରୁ ବର୍ଣ୍ଣମାତୃକା ଆଦ୍ୟ 'ଅ' ଶିବତତ୍ତ୍ୱ । ଅନ୍ତିମ 'ହ' ଶକ୍ତିତତ୍ତ୍ୱ । ଦୁହିଁଙ୍କ ମିଶ୍ରିତ ରୂପର ସଂଜ୍ଞା 'ହାର୍ଦକଳା' ବା 'କାମକଳା' । ସମସ୍ତ ବର୍ଣ୍ଣର ଲୟ 'ମ' ଅକ୍ଷରରେ ହୁଏ । 'ଅ' ଓ 'ହ' ସହିତ 'ମ' ଯୋଗ କଲେହୁଏ 'ଅହମ୍' କାମ କଳାର ଅନ୍ୟନାମ । ଏହା ମଧ୍ୟ ଆତ୍ମଶକ୍ତି କୁଣ୍ଡଳିନୀର ଆତ୍ମରୂପ । କୁଣ୍ଡଳିନୀ 'ପରା'ଶକ୍ତି । 'ପରା' ଆତ୍ମାର ତୁରୀୟ ଅବସ୍ଥା ।

ମୂଳାଧାର ତ୍ରିକୋଣ ଚକ୍ର । ତ୍ରିକୋଣ ବାସ୍ତବରେ ସୃଷ୍ଟି ଉତ୍ପତ୍ତିସ୍ଥଳ 'ଯୋନି'ର ପ୍ରତୀକ । ତ୍ରିକୋଣାତ୍ମକ ମହାଶକ୍ତିପୀଠ 'ମାତୃରୂପା' ବା ଅଟେ 'ମାତୃଅଙ୍କ' । ତ୍ରିକୋଣ ମଧ୍ୟରେ କୁଣ୍ଡଳିନୀ ରୂପରେ ବିଦ୍ୟମାନ 'ପରାଶକ୍ତି', ଯେଉଁଠୁ ସ୍ପଂଦନ ଉଠି ଶବ୍‌ଦକୁ କରିଥାଏ ଜନ୍ମ । ମାତୃ ଅଙ୍କରୁ ଜନ୍ମ ଲାଭ କରୁଥିବା ହେତୁ କୁହାଯାଏ 'ମାତୃଭାଷା' ।



Source: Author, Digitized by PPRACHIN, SOA

ଯୌଗିକ ଦୃଷ୍ଟିରେ ଭାଷା ଗୋଟିଏ, ଧ୍ୱନି ଅନେକ । ଯେଉଁ ଧ୍ୱନି ଉଚ୍ଚାରିତ ହେଲେ ମଧ୍ୟ, ତାହା ଗୋଟିଏ ପ୍ରତୀକ । ସେହି ଧ୍ୱନିର ଉତ୍ପତ୍ତି ସ୍ଥାନ ଗୋଟିଏ ଏବଂ ତାହା 'ମାତୃଅଙ୍କ' ।

ଜାଗ୍ରତ ଅବସ୍ଥାରେ ଆମେ ଯେଉଁ ଶବ୍‌ଦ ଓ ଧ୍ୱନିମାନ ଶ୍ରବଣକରୁ ଏବଂ ପ୍ରକାଶ କରୁ ତାହା ବୈଖରୀ । ସେହିପରି ଶୟନ କାଳରେ ସ୍ୱପ୍ନାବସ୍ଥାରେ ଯେଉଁ ଶବ୍‌ଦ ଓ ଧ୍ୱନି କହିଥାଉ ଏବଂ ଶ୍ରବଣ କରିଥାଉ ତାହା ମଧ୍ୟମା । ସୁଷୁପ୍ତି ଅବସ୍ଥାରେ ମଧ୍ୟ ମାନବ ଦେଖିଥାଏ ସ୍ୱପ୍ନ ଏବଂ ଶବ୍‌ଦ ଓ ଧ୍ୱନି କରିଥାଏ ଶ୍ରବଣ । କିନ୍ତୁ ମାନବ ମସ୍ତିଷ୍କର ଶକ୍ତି ସୀମିତି ହେତୁ ଜାଗ୍ରତପରେ ତାହାପ୍ରକାଶ କରି ହୋଇନଥାଏ । ଜାଗ୍ରତ ବେଳକୁ ତାହା ସ୍ମୃତିପଟରୁ ଲିଭିଯାଏ । ସୁଷୁପ୍ତିରେ ଶ୍ରବଣ କରୁଥିବା ଶବ୍‌ଦ ଓ ଧ୍ୱନି ଅଟନ୍ତି ପଶ୍ୟନ୍ତି ।

ବାକ୍‌ତତ୍ତ୍ୱର ମୂଳଭୂମି ଋଗ୍‌ବେଦ । ଏହା ପ୍ରଥମ ଭାଗର ୧୬୪ ତମ ସୂକ୍ତର ୪୫ତମ ମନ୍ତ୍ର । ସେହି ପଂକ୍ତି ଯୋଡ଼ିକ-

ଚତ୍ୱାରି ବାକ୍ ପରିମିତା ପଦାନି ତାନି
ବିଦୁର୍ବ୍ରାହ୍ମଣା ଯେ ମନୀଷିଣଃ ।
ଗୁହା ତ୍ରିଣୀ ନିହିତା ନେଙ୍ଗୟନ୍ତୀ
ତୁରୀୟଂ ବାଚୋ ମନୁଷ୍ୟା ବଦନ୍ତି ।

ଏହାର ମୋଟ ଭାବ, ବାକ୍ ଚାରି ପ୍ରକାର । ବିଦ୍ୱାନ ସେମାନଙ୍କୁ ଜାଣନ୍ତି । ତାହାର ତିନିପଦ ଅଗୋଚର ବା ଅଜ୍ଞାତ ଏବଂ ଶେଷ, ଚତୁର୍ଥଟିକୁ ମନୁଷ୍ୟ କହିଥାନ୍ତି । ଋଷି ଦୀର୍ଘତମାଃ ସେହି ସୂକ୍ତରେ ପ୍ରଶ୍ନ କରିଛନ୍ତି, 'ପୃଚ୍ଛାମି ତ୍ୱା', ତୁମକୁ ପ୍ରଶ୍ନ କରୁଛି, ବାଣୀର ପରମ ସ୍ଥାନ କିଏ ? 'ବ୍ରହ୍ମାୟଂ ବାଚ' । ତାହା ପୂର୍ବ ରୁ କହିଛନ୍ତି ଗାୟତ୍ରୀ ଛନ୍ଦରେ ଯିଏ ଋଚାମାନ ରଚନା କରିଛନ୍ତି, ସେଇ ତ୍ରିଷ୍ଟୁପଛଂଦରେ 'ବାୟୁର୍ବାକ୍ୟ' କରିଛନ୍ତି ସର୍ଜନା, 'ତ୍ରୈଷ୍ଟୁଭେନ ବାକମ୍ ।'

'ବାୟୁର୍ବାକ୍ୟ' ଅର୍ଥାତ୍ ଧ୍ୱନିରୁ ଶବ୍‌ଦ୍, ବାଗ୍‌ଧ୍ୱନିଜାତ । 'ବାକେୟବାକଂଦ୍ୱିପଦା ଚତୁଷ୍ପଦାଽକ୍ଷରେଣ ମିମତେ ସପ୍ତ ବାଣୀଃ ।' (୧/୧୬୪/୨୪) । ଦୁଇପଦ ଓ ଚାରିପଦ ଯୁକ୍ତ ବାଣୀର ବାକ୍ କଲେ ରଚନା, ଅକ୍ଷର ଦ୍ୱାରା ତିଆରି କଲେ ସପ୍ତଛନ୍ଦ । 'ମନ୍ତ୍ରରେ ଅକ୍ଷର ପରିମାଣକୁ ଛନ୍ଦ କୁହାଯାଏ । ଅକ୍ଷର ସଂଖ୍ୟାର ନିୟାମକକୁ ଛନ୍ଦ କହନ୍ତି ।' (ଋକ୍‌ବେଦ ସୌରଭ, ପୃ ୧୧ପୃ, / ପ୍ରିୟବ୍ରତ ଦାସ) । ଟି.ଭି. କାପାଳି ଶାସ୍ତ୍ରୀ ଉଲ୍ଲେଖ କରିଛନ୍ତି ତାନ୍ତ୍ରିକ ତତ୍ତ୍ୱ – "that the Word or sound-creation precedes the creation of objects-Word-sound, SABDA, first and ARTHA, the meaning or object next, 'ଅର୍ଥ ସୃଷ୍ଟି ପୂର୍ବମ୍ ଶବ୍‌ଦ ସୃଷ୍ଟି ।' This SABDA takes the place of the Vak of the Vedic Scriptures. (Lights on the Ancients. Page.34)



Source: Author, Digitized by PPRACHIN, SOA

ଶବ୍ଦ ଜଗତ ରଚନା ମିଥୁନାତ୍ମକ । ଶିବ ଆଧାର ଓ ଶକ୍ତି ଆଧେୟ । ଶିବ ଆସନ ଓ ଶକ୍ତି ଆସୀନା । 'ସ୍ୱର'ର ଆଶ୍ରୟ ବ୍ୟତୀତ 'ବର୍ଣ୍ଣ' ହୁଏ ନାହିଁ ପ୍ରକଟିତ । ସ୍ୱର ଓ ବର୍ଣ୍ଣର ମିଥୁନାତ୍ମକ ସଂଯୋଗରୁ ଶବ୍ଦ ସୃଷ୍ଟି । ଉପର ଓଠ ପୁରୁଷବାଚକ ଏବଂ ତଳ ଓଠ ସ୍ତ୍ରୀ ବାଚକ । ଦୁହିଁଙ୍କ ମିଳନରୁ ଶବ୍ଦ ହୁଏ ସୃଷ୍ଟି । ଯୋଗ-ତନ୍ତ୍ର ବିଜ୍ଞାନ କହୁଛି ମାନବ ଦେହରେ ଷଡ଼ଚକ୍ର ରହିଅଛି । ତହିଁରେ ରହିଛି ପଚାଶ ପାଖୁଡ଼ା । ପ୍ରତ୍ୟେକ ପାଖୁଡ଼ା ସଂସ୍କୃତର ଏକଏକ ଅକ୍ଷର । ଯାହା ସୂକ୍ଷ୍ମ ଏବଂ ଦେହସ୍ଥ କଣ୍ଠ, ତାଲୁଆଦି ସ୍ଥାନମାନଙ୍କ ଆଘାତରେ କରେ ବୈଖରୀ ରୂପ ଧାରଣ । ସେହି ସୂକ୍ଷ୍ମ ଅକ୍ଷରଙ୍କୁ କୁହାଯାଏ ମାତୃକା । ମାତୃକା ପରାଶକ୍ତି ବା ପରାବାକ୍, ସେମାନଙ୍କ ରୂପ ପଚାଶ ଏବଂ ବର୍ଣ୍ଣମାତୃକା 'ବୀଜରୂପା' । ସ୍ୱାମୀ ମୁକ୍ତାନନ୍ଦ ପରମହଂସ ତାଙ୍କ ରଚିତ 'Play of Consciousness' ଗ୍ରନ୍ଥରେ 'ସାଧନା' ଅଧ୍ୟାୟରେ ପ୍ରସଂଗ କ୍ରମେ ଉଲ୍ଲେଖ କରିଛନ୍ତି 'The syllables of the sanskrit alphabet from A to Ksha are charged with Kundalini Chiti:

ଅକାରାଦିକ୍ଷକାରାନ୍ତା ମାତୃକାବର୍ଣ୍ଣରୂପିଣୀ ।
ଯଯା ସର୍ବମିଦଂ ବ୍ୟାପ୍ତଂ ତ୍ରୈଲୋକ୍ୟଂ ସଚରାଚରମ୍ ।

ଏହାର ବ୍ୟାଖ୍ୟାରେ ଉଚ୍ଚାରଣ କରିଛନ୍ତି Kundalini, by whom all those three worlds of movable and immovable things are pervaoted, it of form of the letters of the alphabet from A to Ksha. ସେହି ମହାଶକ୍ତି କୁଣ୍ଡଳିନୀ ଯାହାଙ୍କ ଦ୍ୱାରା ସଂସାରର ସମସ୍ତ ସ୍ଥିର ଓ ଚଳନ ବସ୍ତୁରେ ଘଟିଛି ଅନୁପ୍ରବେଶ, 'ଅ'ଠାରୁ 'କ୍ଷ ପର୍ଯ୍ୟନ୍ତ ବର୍ଣ୍ଣମାଳା ତାହାଙ୍କ ଆଙ୍ଗିକ । ପୁଣି କୁହାଯାଇଛି, ଶବ୍ଦ, ବ୍ରହ୍ମମୟ ଦେବୀ 'ଏକାନେକାକ୍ଷାରା କୃତିଃ । ଶକ୍ତି କୁଣ୍ଡଳିନୀ ନାମ ବିସତନ୍ତୁନିଭା ଶୁଭା ।'

ଏକ ବା ଏକାଧିକ ବର୍ଣ୍ଣଏକତ୍ର ହୋଇ ପ୍ରକାଶ କଲେ ଭାବ ତାହାକୁ କୁହାଯାଏ ଶବ୍ଦ । ଶବ୍ଦ ବ୍ରହ୍ମମୟୀ କୃତି ଶକ୍ତିଙ୍କ ନାମ ମଧ୍ୟ କୁଣ୍ଡଳିନୀ । ଶବ୍ଦଟିଏ ତିଆରି ହେଲେ ତା ଭିତରେ ଅର୍ଥଟିଏ ଛପିଥାଏ । 'ଶବ୍ଦ' ଜଡ଼ତତ୍ତ୍ୱ, ଦୃଶ୍ୟହୁଏ, ତାହା ଯୋଗର 'ଶିବତତ୍ତ୍ୱ' 'ଅର୍ଥ' ଅଦୃଶ୍ୟ, ଶବ୍ଦର ଚେତନ ତତ୍ତ୍ୱ, 'ଶକ୍ତି' । 'ଫିଜିକାଲ୍ ଆଟମ୍'ରୁ 'ଶବ୍ଦ' ତିଆରି ହେଲେ 'ଅର୍ଥ' ଏଷ୍ଟ୍ରାଲ ଆଟମ୍ ।

ଶବ୍ଦ ଅର୍ଥ ତତ୍ତ୍ୱଯୁକ୍ତ ଏବଂ ଧ୍ୱନିତତ୍ତ୍ୱ ମଧ୍ୟ ସଂଯୁକ୍ତ । 'ରତି' 'କାମ'ର ନିଜ ଶକ୍ତି । ଠିକ୍ ସେମିତି ଶବ୍ଦର ନିଜ ଶକ୍ତି 'ଧ୍ୱନି' ବା 'ନାଦ' । ତେଣୁ 'ନାଦ ବ୍ରହ୍ମ' ମଧ୍ୟ 'ଶବ୍ଦ ବ୍ରହ୍ମ', 'Sabdabrahman, Brahman in the from of sound' ବୋଲି କରାଯାଇଛି ଉଲ୍ଲେଖ ।



Source: Author, Digitized by PPRACHIN, SOA

'The Vak of the Veda and the throb of the Tantra' ପ୍ରବନ୍ଧରେ ଶ୍ରୀ ଅରବିନ୍ଦ ଆଶ୍ରମ ସାଧକ ଟି.ଭି. କାପାଲିଶାସ୍ତ୍ରୀ କରିଛନ୍ତି ଉଲ୍ଲେଖ, Vak, no doubt, is Voice, word of speech. ବାକ୍ ଭାବନାର ବାହକ । ପୁନଶ୍ଚ ବାକଂ ଅର୍ଥୋ ନୁଧାବତି । ବାକ୍‌ର ଅନୁଧାବନ କରୁଥାଏ ଅର୍ଥ ।

'ନାଦଯୋଗ' ଅଧ୍ୟାୟରେ Robert E. Svoboda ଉଲ୍ଲେଖ କରିଚନ୍ତି, Anything that has sound has sakti and all sakti has associated with it. The Absolute Itself is silent; It has no qualities whatsoever which is why there is no Bija Mantra for Lord Shiva (AGHORA II: Kundalini, Page 189) । ତାହା ଯେ କୌଣସି ଧ୍ୱନି ବା ନାଦ ହେଉନା କାହିଁକି, ତହିଁରେ ରହିଛି ଶକ୍ତି ଏବଂ ଶକ୍ତିଙ୍କ ମିଳିତ ରୂପ ଧ୍ୱନି । ସ୍ୱୟଂ ସଂଭୂତ ଶିବ ନିଃଶବ୍ଦ, ନିସ୍ତରଂଗ ନିରବତା ବା 'ଚିଦାକାଶ' ଈଶ୍ୱର, 'The Blue Pearl' 'ମୂଳାଧାର'ର ଶକ୍ତି । 'ନୀଳବିନ୍ଦୁ' ଈଶ୍ୱରୀ 'ଚିତ୍' । ଶକ୍ତିଙ୍କ ନାଦ 'ଶବ୍‌ଦ' ଓ ଶବ୍‌ଦରୁ 'ନାଦ'ର ଉତ୍ପତ୍ତି ମଧ୍ୟ । ସଠିକ ଉଚ୍ଚାରଣ ଉପରେ ମଧ୍ୟ ଗୁରୁତ୍ୱ ଦିଆ ଯାଇଛି । 'Pronunciation' ସଂଦର୍ଭରେ Svoboda ଉଲ୍ଲେଖ କରିଛନ୍ତି, 'Sanskrit is called a mantric language because each of its words can be used as a mantra. This is way sanskrit is not to be taught to just everyone. It should be taught only to those who can pronounce it properly, because if the name is incorrect the form will also be wrong and then every thing will be in a mess. ଅର୍ଥାତ୍, ସଠିକ୍ ଭାବେ ଉଚ୍ଚାରିତ ହେବା ଉଚିତ୍ ଶବ୍‌ଦ । ସଂସ୍କୃତ ଶବ୍‌ଦ ମନ୍ତ୍ର । ଅଲଗା ଅଲଗା ଭାବେ ଗୋଟିଏ ମନ୍ତ୍ର ହେଲେ ଉଚ୍ଚାରିତ ମିଳିଥାଏ ବିପରୀତ ଅର୍ଥ ବା ଅଭୀଷ୍ଟ ହୋଇ ନଥାଏ ଉପସ୍ଥିତ । ଭାବ ହୋଇଥାଏ ପରିବର୍ତ୍ତିତ । ସାହିତ୍ୟଶାସ୍ତ୍ରରେ ଏହାକୁ କୁହାଯାଇଛି 'ଶ୍ଲେଷ' । ବାକ୍ 'a product of mind' ନୁହେଁ, ଏହା ଏକ ସ୍ୱାଧୀନ ସୃଜନଶୀଳ ପ୍ରବଣତା (faculty) । ଏକ ସେନ୍ସ (Sense), ଯାହା ମନ ଦ୍ୱାରା ହୋଇ ଥାଏ କାର୍ଯ୍ୟ ନିର୍ବାହୀତ । 'Four levels of speech' ପ୍ରବନ୍ଧରେ Svoboda କରିଛନ୍ତି ଉଲ୍ଲେଖ...Speech is simply the verbal expression of kundalini. This is why the lotuses of the chakras have Bija Mantras for petals and why mantras are so important for awakening Kundalini. ଓମ୍‌ର ବ୍ୟାଖ୍ୟା କରି ସିଏ ଦର୍ଶାଇଛନ୍ତି, 'The three and a half coils of the kundalini represent the three and a half letter of the word Om: a, u.m and ANUSVARA (nasalization)at the end.' ଅନୁସ୍ୱାର ରୂପରେ ରହିଛି ମଧ୍ୟ ଗୋଟିଏ ବିନ୍ଦୁ । (Orthographic dot), ଅନୁସ୍ୱାର ଓ ବିନ୍ଦୁ ଅଲଗା ଅଲଗା ରହି ପାରନ୍ତି ନାହିଁ । ଗଣିତରେ ବିନ୍ଦୁର ଅସ୍ତିତ୍ୱ ଅଛି, ସ୍ଥିତି ନାହିଁ ।



Source: Author, Digitized by PPRACHIN, SOA

ଅନୁସ୍ୱାର ବୈଖରୀ ଓ ମଧ୍ୟମା ଦ୍ୱାରା ଉଚ୍ଚାରିତ କିନ୍ତୁ ବିନ୍ଦୁ ପଶ୍ୟନ୍ତି ଓ ପରାର ଉଚ୍ଚାରଣ ତତ୍ତ୍ୱ । Bindu is used when the kundalini moves from the Vishuddha Chakra in to the Ajna Chakra, When Shunya bigins. That is the very nature of bindu: emptiness, which is the source of all sound, the field from which sound arises.

ବୈଖରୀ ଶବ୍ଦ ଜନସାଧାରଣଙ୍କ ଦ୍ୱାରା ହୋଇଥାଏ ଉଚ୍ଚାରିତ । ବୈଖରୀକୁ ଷଡ଼ରସ କରିଥାଏ ନିୟନ୍ତ୍ରିତ । ତେଣୁ କେତେବେଳେ ତାହା ମଧୁ ହୋଇ ମନ କିଣିନିଏ ତ କେତେବେଳେ ଛି' କରାଇ ଦିଏ । ପୁଣି କେତେବେଳେ କ୍ରୋଧର ବହ୍ନି ଜାଳି ଦେଇଥାଏ ।

ଖୁବ୍ ନିକଟରେ ପରୀକ୍ଷଣ ହୋଇଛି ଧ୍ୱନିରୁ ସୃଷ୍ଟିତତ୍ତ୍ୱ 'ବିଗ୍‌ବାଙ୍ଗ୍' । ଏହା ଅତି ପ୍ରାଚୀନ ଭାରତୀୟ ବାକ୍‌ତତ୍ତ୍ୱ । The Vak of the Veda ଆଲୋଚନାରେ କାପାଳିଶାସ୍ତ୍ରୀ କରିଛନ୍ତି ଉଲ୍ଲେଖ- It is the first SABDA called NADA rhythmic sound that was the first creation, the primordial throb, ADYA SPANDA, that proceeds to effect the formation of universe and create the objects of the World. It is the ancient Vedic theory of Creation, Vak, the Voice...'

ଆଉ ଟିକିଏ ଆଗକୁ ଯାଇ ସିଏ ଦର୍ଶାଇଛନ୍ତି ବୈଦିକ ଶବ୍‌ଦାଂଶ ବିକାଶ କ୍ରମଃରେ 'ବୀଜ-ନାଦ' 'ବୀଜ-ଅକ୍ଷର' ରୂପରେ ହୋଇଛି ପ୍ରତିଷ୍ଠିତ । ବସ୍ତୁନୀତିରେ ପରେ ତାହା ଅର୍ଥ ଦାବି ଯୋଗ୍ୟ ହୋଇଅଛି । ଆଙ୍ଗିକରୁ ବସ୍ତୁଭାବ ପ୍ରକଟିତ ହୋଇଛି । କିନ୍ତୁ ଭାରତୀୟ ସାହିତ୍ୟ ନୁହେଁ ବସ୍ତୁ ତାନ୍ତ୍ରିକ ସୃଷ୍ଟି । ଏହାର ଉଦ୍‌ଭବ ଅନ୍ତର୍ମୁଖୀ ଓ ଅନ୍ତର୍ଜଗତ ଚେତନାରୁ ହୋଇଅଛି । ଏହାର ପ୍ରତ୍ୟେକ ଅକ୍ଷର ଚିନ୍ମୟ, 'ଅକ୍ଷରବ୍ରହ୍ମ' । ସେହିଭଳି ଶବ୍ଦ 'ବ୍ରହ୍ମ' ଏବଂ ଅର୍ଥ 'ମାୟା' । ମନଃଶକ୍ତି ଓ ପ୍ରାଣଶକ୍ତି ଏକତ୍ର ଏଠାରେ ମିଳିତ ହୋଇନାହାନ୍ତି ବରଂ ବାକ୍ ଶକ୍ତି (ଇଲୋକ୍ଟ୍ରାନ୍) ମନଶକ୍ତି (ପ୍ରୋଟୋନ୍) ସହିତ ମିଳିତ ହୋଇ ରଚନା କରିଛି ପ୍ରାଣଶକ୍ତି (ନ୍ୟୁଟ୍ରାନ୍) । ଭାରତୀୟ ବାକ୍‌ତତ୍ତ୍ୱ ପରମ ରହସ୍ୟମୟ । ଧ୍ୟାନତତ୍ତ୍ୱ ଭିତରୁ ତାହାର ଉଦ୍‌ଭବ ଓ ବିକାଶ କ୍ରମ । ଶବ୍ଦ ସଂଜୀବୀତ ନ ହେଲେ ସାହିତ୍ୟ ହୁଏ ନାହିଁ ପ୍ରାଣସ୍ପର୍ଶୀ । ମନଶରୀର ସ୍ପର୍ଶ କରି ଧ୍ୱନିଟିଏ ନ ଆସିଲେ ତାହା ସ୍ପର୍ଶ କରି ନଥାଏ କାହାରି ମନକୁ । ଶୁଷ୍କ ଶବ୍ଦ ବସାଣ ମୃଣ୍ମୟ ମୂର୍ତ୍ତି ଯେମିତି । କିନ୍ତୁ ଭାରତୀୟ କଳା ଜୀବନ୍ତ । ଜୀବନ୍ତ କଳା ସୃଷ୍ଟି ସାଧନା ଶିକ୍ଷା କରିବା ସମକାଳ ଶବ୍ଦ-ଶିଳ୍ପୀଙ୍କ ନିହାତି ଆବଶ୍ୟକ । ତା ନ ହେଲେ ସେମାନଙ୍କ କବିତା କେମିତି ହେବ ମନ୍ତ୍ର ? ଶବ୍ଦ ଉଚ୍ଚତର ଶକ୍ତି ଦିଗକୁ ମାନବାତ୍ମାକୁ ଟାଣିବ, ସଚେତନ କରିବ, ଯେତେବେଳେ Word of truth ହେବ



Source: Author, Digitized by PPRACHIN, SOA

ତପସ୍ୟା । ମାନବ ଜାତି ଆତ୍ମାର ଆବଶ୍ୟକ ଏବେ 'ନିତ୍ୟବାକ୍‌' । ଚଳଚଞ୍ଚଳ ଓ କୋଳାହଳମୟ ଜୀବନ ବିତ୍ତୀୟ ସମୃଦ୍ଧ କିନ୍ତୁ ନୁହେଁ ସୁଖ-ସମୃଦ୍ଧ । ନୁହେଁ ତୃପ୍ତ ଓ ଶାନ୍ତି ଛାୟାଶ୍ରିତ । ତା ପାଇଁ ଆବଶ୍ୟକ କିଛି ମୌଳିକ ଆଲୋକ (Radical Light), କିଛି Seed - Sounds, ଯାହା 'ସର୍ବବୀଜ-ଉତ୍ପାଦକ' ହୋଇଥିବ । ତା ନୀରସ ଓ ନିଃସଙ୍ଗତା ଦୂର ପାଇଁ ଅନ୍ତରାତ୍ମାର ପ୍ରିୟ ସଖ୍ୟ ପ୍ରାପ୍ତ ଶକ୍ତି ସେହି ଶବ୍ଦ ଓ ତାହା ବସାଣରେ ଥିବ ! ଜଣେ ଲେଖୁଚି, କ'ଣ ଲେଖୁଚି ? ଶବ୍ଦ ? କ'ଣ ଏହି ଶବ୍ଦ ? ସ୍ରଷ୍ଟା ସଚେତନ ଅଛନ୍ତିକି ? ଏକବିଂଶ ଶତକ ବୈଜ୍ଞାନିକ ଓ ଦାର୍ଶନିକଙ୍କ ନଜରରେ Age of awareness, ବାକ୍‌ତତ୍ତ୍ୱ ଏକ ମୌଳିକତତ୍ତ୍ୱ, ଜୀବନ ଓ ସମାଜ ଜୀବନର ଅଂଶ, ତାହା ପ୍ରତି ସଚେତନ ହେବା ବେଳ ଏବେ ନୁହେଁ କି !!





Source: Author, Digitized by PPRACHIN, SOA

# ଭାରତୀୟ ଅକ୍ଷର ତତ୍ତ୍ୱ

**ଯଦକ୍ଷରଂ ବେଦବିଦୋ ବଦନ୍ତି...**

ଭାରତୀୟ ଆଦି ସାହିତ୍ୟର ନାମ ବେଦ । ବେଦ ବିଦ୍ ଧାତୁରୁ ନିଷ୍ପନ୍ନ ଶବ୍ଦ । ବିଦ୍ ଅର୍ଥ ଜାଣିବା ଅକ୍ଷରକୁ, ଶବ୍‌ଦକୁ ଏବଂ ପଦକୁ ! ଯାହା ଖାଲି ପଦ ନୁହେଁ, 'ତତ୍‌ପଦ' ! ନ+କ୍ଷର= ଅକ୍ଷର, କ୍ଷୟ ନାହିଁ ଯାହାର, ଯିଏ ଅବିନାଶୀ । ଶକ୍ତିଙ୍କ ନଥାଏ କ୍ଷୟ ଏବଂ ଶକ୍ତି ଅବିନାଶୀ । ମୂଳାଧାରରେ ସ୍ଥିତ ବ୍ରହ୍ମମୟୀ ବିଭୁ କୁଣ୍ଡଳିନୀ ଶକ୍ତି ହିଁ ବର୍ଣ୍ଣମାଳିକା ସୃଷ୍ଟି କରିଥାନ୍ତି । 'ଗୁଢ଼ାର୍ଥ ଦୀପିକା'ରେ ଉଲ୍ଲେଖ ରହିଛି, ଶକ୍ତିର୍ନାମ ମୂଳ କାରଣସ୍ୟ ଶବ୍ଦ ସ୍ୟୋନ୍ମୁଖୀକରଣ ବସ୍ତେତି; ଶକ୍ତି ମୂଳ କାରଣଭୂତ ଶବ୍‌ଦର ଉନ୍ମୁଖ ହେବା ଅବସ୍ଥାର ନାମାନ୍ତର । ଏହି ଶକ୍ତିରୁ ଧ୍ୱନିର ଉଦୟ ହୋଇଥାଏ । ଧ୍ୱନିରୁ ନାଦ, ନାଦରୁ ନିରୋଧିକା, ତହିଁରୁ ଅର୍ଦ୍ଧଚନ୍ଦ୍ର, ଅର୍ଦ୍ଧଚନ୍ଦ୍ରରୁ ବିନ୍ଦୁ ଏବଂ ବିନ୍ଦୁରୁ ପରା, ପଶ୍ୟନ୍ତୀ, ମଧ୍ୟମା ଓ ବୈଖରୀ ରୂପ ଚତୁର୍ବିଧ ଶବ୍‌ଦର ହୋଇଥାଏ ଜନ୍ମ ।

ଅକ୍ଷର ତିନି ପ୍ରକାର । ପ୍ରଥମ-ସୌମ୍ୟ (ଚନ୍ଦ୍ରମା ସମ୍ବନ୍ଧୀୟ), ସ୍ୱରବର୍ଣ୍ଣ, ଏହାର ସଂଖ୍ୟା ଷୋହଳ । ଦ୍ୱିତୀୟ -ସୌର (ସୂର୍ଯ୍ୟ ସମ୍ବନ୍ଧୀୟ), ସ୍ପର୍ଶ ବ୍ୟଂଜନ ବର୍ଣ୍ଣ, କ ଠାରୁ ମ କାର ପର୍ଯ୍ୟନ୍ତ ପଚିଶ ବର୍ଣ୍ଣ । ଶେଷ ପ୍ରକାର ଅଗ୍ନେୟ (ଅଗ୍ନି ସମ୍ବନ୍ଧୀୟ), ବ୍ୟାପକ ବର୍ଣ୍ଣ ଏମାନଙ୍କ ସଂଖ୍ୟା ଦଶ । କେତୋଟି ଅକ୍ଷର ଏକାଠି ହୋଇ ଗୋଟିଏ ଶବ୍ଦ କରନ୍ତି ଗଠନ । ଅକ୍ଷରମାନଙ୍କ ମିଳନରୁ ହୋଇଥାଏ ଶବ୍‌ଦର ଜନ୍ମ । ଅକ୍ଷରମାନଙ୍କରେ ମାତ୍ରାଯୁକ୍ତ ହୋଇ ଶବ୍‌ଦଟିଏ ଗଠିତ ହେଲେ ତାହାକୁ କୁହାଯାଏ ବନା, ମାତ୍ରା ରହିତ ଶବ୍ଦ ଅବନା ।

ସାହିତ୍ୟ ସର୍ଜ୍ଜନା ପାଇଁ ଆବଶ୍ୟକ ହୁଏ ବାକ୍ୟ । ବାକ୍ୟର ସ୍ୱରୂପ, ଅନ୍ୱିତୈକାର୍ଥବାଧେତୁ ବାକ୍ୟଂ ପଦ ସମୁଚ୍ଚାୟ; ଆକାଂକ୍ଷା, ଯୋଗ୍ୟତା ଓ ଆସତ୍ତି ଦ୍ୱାରା ପରସ୍ପର ଅନ୍ୱିତ ପଦମାନଙ୍କ ଯେଉଁଠି ଅର୍ଥ ବୋଧହୁଏ, ସେହି ପଦ ସମୁଦାୟକୁ କହନ୍ତି ବାକ୍ୟ ।

କ) 'ଆସତ୍ତି' ଅର୍ଥ, 'ବୁଦ୍ଧ୍ୟବିଚ୍ଛେଦ୍ୟ ସନ୍ନିଧିରିତ ଯାବତ୍', ଅର୍ଥାତ୍ ବୁଦ୍ଧିର ଅବିଚ୍ଛେଦ୍ୟ ।

(ଖ) 'ଯୋଗ୍ୟତା' ଅର୍ଥ, 'ପଦାର୍ଥନାଂ ପରସ୍ପର ସମ୍ବନ୍ଧେ ବାଧାଭାବଃ; ଅର୍ଥାତ୍- ପଦାର୍ଥମାନଙ୍କର ପରସ୍ପର ସମ୍ବନ୍ଧରେ ବାଧା ନ ହେବା । ସେହିପରି-



Source: Author, Digitized by PPRACHIN, SOA

(ଗ) 'ଆକାଂକ୍ଷା' ଅର୍ଥ, 'ପ୍ରତୀତି ପର୍ଯ୍ୟବସାନ ବିରହସଃ', ଅର୍ଥାତ୍-ପଦାର୍ଥ ପ୍ରତୀତିର ସମାପ୍ତିର ଅଭାବ ।'

ଅତଏବ ବାକ୍ୟ ତାହାକୁ କୁହାଯାଏ, ଏକ ପଦ ସମୂହର ସମ୍ବନ୍ଧରୁ ଯେଉଁଠି ଗୋଟିଏ ଅର୍ଥବୋଧ ହୁଏ, ଯେମିତି ମାତା ସସ୍ନେହରେ ପୁତ୍ର ମୁଖକୁ ଦେଖୁଅଛି !

ବାକ୍ୟର ମୁଖ୍ୟ ଉପାଦାନ ପଦ । ପାଣିନିଙ୍କ ଅନୁଯାୟୀ ପଦର ସ୍ୱରୂପ- 'ସୁବନ୍ତ ତିଙ୍ନ୍ତଶ୍ଚ ଶବ୍ଦଃ ପଦମ୍' । ସୁବନ୍ତ ଓ ତିଙ୍ନ୍ତକୁ ପଦ କହନ୍ତି । ଯେପରି ରାମଃ, କୃଷ୍ଣଃ, ଭବତି ପ୍ରଭୃତି । ସୁବନ୍ତ ଓ ତିଙ୍ନ୍ତ ପ୍ରତ୍ୟୟାନ୍ତ ଶବ୍ଦକୁ କହନ୍ତି ପଦ । ଶବ୍ଦରେ ପ୍ରତ୍ୟୟ ଯୁକ୍ତ ହେଲେ ହୋଇଥାଏ ପଦ । 'ପରମାର୍ଥ ପୟୋଧି'ରେ ବର୍ଣ୍ଣିତ, କଣ୍ଠରୁ ଯେଉଁ ସ୍ୱାଭାବିକଧ୍ୱନି ଉତ୍ପନ୍ନ ହୁଏ ତାହାର ବିବିଧ ରୂପାନ୍ତରର ନାମ 'ଶବ୍ଦ' ଏବଂ ଯେଉଁ ଶବ୍ଦଦ୍ୱାରା ମନୋଭାବ ପ୍ରକାଶ କରାଯାଏ ତାହାକୁ ଭାଷା କୁହାଯାଏ । (୧ମ ଖଣ୍ଡ ୯୪ ପୃଷ୍ଠା, ରାଧା ମୋହନ ରାଜେନ୍ଦ୍ର ଦେବ, ସଂପାଦନା: ମହୀ ମୋହନ ତ୍ରିପାଠୀ ଓ ଅସିତ ମହାନ୍ତି ) ।

କଠୋପନିଷଦରେ ଗୋଟିଏ ରହସ୍ୟମୟ (Mystical) ବର୍ଣ୍ଣନା ରହିଛି-

ସର୍ବବେଦା ଯତ୍ପଦ ମାମନନ୍ତି ତପାଂସି ସର୍ବାଣି ଚ ଯଦ୍ଵଦନ୍ତି ।

ଯଦିଚ୍ଛନ୍ତୋ ବ୍ରହ୍ମଚର୍ଯ୍ୟ ଚରନ୍ତି ତତ୍ତେ ପଦଂ ସଂଗ୍ରହେଣ ବବ୍ରୀ ଭ୍ୟୋମିତ୍ୟେ ତତ୍ ।

ଅର୍ଥାତ୍-ସମସ୍ତ ବେଦ ଯେଉଁ ପଦ (ଶବଦ)ର କରନ୍ତି ବର୍ଣ୍ଣନା, ସମସ୍ତ ତପକୁ ଯାହାଙ୍କ ପ୍ରାପ୍ତିର କହନ୍ତି ସାଧନ, ତଥା ଯାହାର ଇଚ୍ଛା କରି ବ୍ରହ୍ମଚାରୀ ବ୍ରହ୍ମଚର୍ଯ୍ୟର କରନ୍ତି ପାଳନ, ସେହି ପଦ (ଶବ୍ଦ)କୁ ମୁଁ ତୁମକୁ ସଂକ୍ଷେପରେ ଦେଉଛି ବତାଇ; 'ଓମ୍' ଏହି ସେହି ପଦ (ଶବ୍ଦ) ।

ଓଡ଼ିଆ ବ୍ୟାକରଣରେ ପଦ ସାଧାରଣତଃ ପାଞ୍ଚ ପ୍ରକାର । ବିଶେଷ୍ୟ, ବିଶେଷଣ, ସର୍ବନାମ, କ୍ରିୟା ଓ ସମ୍ବନ୍ଧପଦ । ଏଗୁଡ଼ିକ ମଧ୍ୟ ବହୁ ଭାଗରେ ବିଭକ୍ତ । ତେବେ ଶବ୍ଦ ବିଭକ୍ତି ଓ ପ୍ରତ୍ୟୟ ଯୁକ୍ତ ହୋଇ ବାକ୍ୟରେ ଖଂଜାଗଲେ ତାହାକୁ କୁହାଯାଏ ପଦ । କିନ୍ତୁ ଓମ୍ ଏପରି ଏକ ବିଶେଷ୍ୟ ପଦ ତାହା ସୃଷ୍ଟିର ମୂଳ ମୌଳିକ ଗୋଟିଏ ନାଦ । ଆଦି ଧ୍ୱନିର ସିଂବଲ୍ ଓମ୍‌କୁ ଋଷି କରାଇଛନ୍ତି ସର୍ବବୋଧ୍ୟ ଓଁ କରି ଅଙ୍କନ । ଯୋଗଦର୍ଶନ ସେହି ସିଂବଲ୍‌କୁ ଦର୍ଶାଇଛନ୍ତି, 'ତସ୍ୟ ବାଚକଃ ପ୍ରଣବଃ । ତଜ୍ଜପସ୍ତଦର୍ଥ ଭାବନମ୍ ।' ତାହାଙ୍କ ନାମ ଅଟେ ପ୍ରଣବ । ଏହି ଓଁ ଜପ କରି ତାହାର ଅର୍ଥ ପରମାତ୍ମା ବୋଲି ଚିନ୍ତା କରିବା ଆବଶ୍ୟକ ।

ଶ୍ରୀମଦ୍ ଗୀତାରେ ଉଲ୍ଲେଖ ଅଛି, 'ଓଁ ତତ୍ ସଦିତି' । ପ୍ରାଣୀ ଶରୀରରେ ଥିବା ଆତ୍ମାଙ୍କ ନାମ ଓଁ ଏବଂ ଜୀବନର ଲକ୍ଷ୍ୟ ଯେଉଁ ପରମାତ୍ମା, ତାହାଙ୍କ ନାମ ଓଁ, ତତ୍ ଏବଂ



Source: Author, Digitized by PPRACHIN, SOA

ସତ୍ । ସଚ୍ଚିଦାନନ୍ଦ ଘନ ବ୍ରହ୍ମଙ୍କ ନାମ ଏହି ଶବ୍ଦ ତିନୋଟି । ଓଁ ଆତ୍ମାଙ୍କ ନାମ ଏବଂ ପରମାତ୍ମାଙ୍କ ପଦ, କହନ୍ତି କଠୋପନିଷଦ-

ଏତଦ୍ଧ୍ୱେବାକ୍ଷରଂ ବ୍ରହ୍ମ ତେଦ୍ଧ୍ୱେବାକ୍ଷରଂ ପରମ୍ ।
ଏତଦ୍ଧ୍ୱେବାକ୍ଷରଂ ଜ୍ଞାତ୍ୱା ଯୋ ଯଦିଚ୍ଛତି ତସ୍ୟ ତତ୍ ॥

ଅର୍ଥାତ୍-ଏହି ଦୁଇ ଅକ୍ଷର (ଓମ୍) ଅଟେ ବ୍ରହ୍ମ । ଏହି ଅକ୍ଷର ଦ୍ୱୟ ଅଟେ ପରମ । ଏହି ଅକ୍ଷରଙ୍କୁ ଜ୍ଞାତ ହୋଇ ଯିଏ ଯାହା ଇଚ୍ଛାକରେ ତାହାକୁ ତାହା ହୋଇଥାଏ ପ୍ରାପ୍ତି । ଶ୍ୱେତାଶ୍ୱେତ ବର୍ଣ୍ଣନା କରିନ୍ତି, କ୍ଷରଂ ପ୍ରଧାନ ମୃତାକ୍ଷରଂ ହାଃ କ୍ଷରାତ୍ମାନା ବୀକ୍ଷତେ ଦେବ ଏକଃ । ଅର୍ଥାତ୍-ପ୍ରଧାନ ପ୍ରକୃତି ନାମକ୍ଷର ଏବଂ ଏହାର ଭୋକ୍ତା ଅବିନାଶୀ ଆତ୍ମାଙ୍କ ନାମ ଅକ୍ଷର । ପ୍ରକୃତି ଓ ଆତ୍ମା, ଏହି ଦୁହିଁଙ୍କୁ ଜଣେ ଦେବ (ପରମାତ୍ମା) କରନ୍ତି ଶାସନ ।

ପୁନଶ୍ଚ କୁହାଯାଇଛି, ମୟା ତତ୍‌ମିଦଂ ସର୍ବମ୍...। ବେଦ୍ୟ ପବିତ୍ର ମୋଂକାର । ଅର୍ଥାତ୍, ମୁଁ ଚାରିଆଡ଼ ପରିବ୍ୟାପ୍ତ, ସମସ୍ତ ଅଟେ ମୁଁ, ମୁଁ ପବିତ୍ର ଓଁକାର, ମତେ ଜାଣ । ଯେମିତି ମୁଦ୍ରାର ଦୁଇଟି ପାର୍ଶ୍ୱ, କ୍ଷର ଓ ଅକ୍ଷର । ଅକ୍ଷରର ଭାବ ଦୁଇଟି, 'ଅମୃତଂ ଚୈବ ମୃତ୍ୟୁଷ୍ଚ' । ପୁଣି ମୁଦ୍ରାର ସେହି ଦୁଇଟି ପାର୍ଶ୍ୱ; ତାହା ସତ୍ ଓ ଅସତ୍ । କେନୋପନିଷଦରୁ ମିଳେ ଉପଦେଶ, ଇହ ଚେଦ ବେଦୀଦଥ ସତ୍ୟମସ୍ତି ନ ଚେଦିହାବେଦୀନ୍ମହତୀ ବିନଷ୍ଟିଃ । ଅର୍ଥାତ୍-ଯଦି ଏହି ମନୁଷ୍ୟ ଶରୀରରେ ସତ୍ୟକୁ ହୁଅ ଅବଜ୍ଞାତ, ତେବେ ଖୁବ୍ ଭଲ କଥା । ଯଦି ଏହି ଶରୀରରେ ସତ୍ୟକୁ ରହିଲ ଅଜ୍ଞାତ, ତେବେ ନିଶ୍ଚିତ, ତୁମର କ୍ଷତି ବହୁତ ।

ବୃହଦାରଣ୍ୟକ ଉପନିଷଦରେ ବର୍ଣ୍ଣିତ-ଯୋ ବା ଏତଦକ୍ଷରଂ ଗାର୍ଗ୍ୟ ବିଦିତ୍ୱାସ୍ମିଂଲ୍ଲୋକେ ଜୁହୋ ତିଯଜତେ ତପସ୍ତପ୍ୟତେ ବହୁନି ବର୍ଷ ସହସ୍ରା ରାଯନ୍ତବ ଦେବସ୍ୟ ତଦ୍ ଭବତି ଯୋ ବା ଏତଦକ୍ଷରଂ ଗାର୍ଗ୍ୟ ବିଦିତ୍ୱାଃସ୍ମୋଲ୍ଲୋକାତ୍ ପ୍ରୈତି ସଃ କୃପଣୋଃଥ ଯ ଏତକ୍ଷରଂ ଗାର୍ଗି ବିଦିତ୍ୱାସ୍ମାଲୋକାତ୍ ପୈତି ସ ବାହ୍ମଣଃ । ଅର୍ଥାତ୍- ହେ ଗାର୍ଗୀ,ଯିଏ ଏହି ଅକ୍ଷରକୁ ଜାଣି ଏହି ଲୋକରୁ କରେ ଗମନ, ସିଏ ବ୍ରହ୍ମଲୋକ ହୁଏ ପ୍ରାପ୍ତ ।

ଅକ୍ଷରର ମହତ୍ତ୍ୱ ଓ ଅପୂର୍ବ ମହିମା ଉପନିଷଦ ସାହିତ୍ୟ ବର୍ଣ୍ଣନା କରିବାରେ ମୁଖରିତ । ପୂର୍ବରୁ ଉଦ୍ଧୃତ-କ୍ଷରଂ ପ୍ରଧାନମୃତାକ୍ଷରଂ ହାଃ କ୍ଷରମ୍ନା ବୀକ୍ଷତେ ଦେବ ଏକଃ ।

ଏହାର ପରବର୍ତ୍ତୀ ପଂକ୍ତି-ତସ୍ୟାଭିଧ୍ୟାନା ଜ୍ୟୋଜନାତ୍ ତତ୍ତ୍ୱ ଭାବାଦ ଭୂୟଶ୍ଚାତେ ବିଶ୍ୱମାୟା ନିବୃତ୍ତି । ଅର୍ଥାତ୍-ପ୍ରକୃତି କ୍ଷର, ପ୍ରତିଟି ଅକ୍ଷର ଅମୃତ । ଏକ ଦେବକ୍ଷର(ମାୟା) ଆତ୍ମାଉପରେ କରେ ଶାସନ । ତାହାର ଧ୍ୟାନରୁ ତହିଁରେ ଚିତ୍ତ ସଂଲଗ୍ନରୁ ଏବଂ ତନ୍ମୟ ହୋଇ ଯିବାରୁ ସଂସାର ରୂପକ ମାୟାର ଘଟେ ବିନାଶ । ଅବିନାଶୀ ଅନ୍ତର୍ଯାମୀ ଆତ୍ମପୁରୁଷଙ୍କ ମଧ୍ୟରେ ପୌରୁଷ ଶବ୍ଦ । ଶବ୍ଦଃ ପୌରୁଷଂ ନୃଷୁ । 'ଖ'ରୁ 'ଖେ', ଅର୍ଥାତ୍ ଆକାଶ



Source: Author, Digitized by PPRACHIN, SOA

'ଶବ୍ଦଃ' । ଅନନ୍ତ ଅସୀମ ନୀଳିମାମୟ ବ୍ୟାପ୍ତ ଶୂନ୍ୟତା ଆକାଶ ଶବ୍‌ଦର ରୂପ । ସେଠାରେ ବିଦ୍ୟମାନ 'ରସୋଽହମ' । ସତ୍ ଚିତ୍ ଆନନ୍ଦର ଲହରୀ, 'ରସୋ ବୈସଃ' । ....ଆତ୍ମାନଂଦମୟଃ । 'କାବ୍ୟ ମୀମାଂସା'ରେ ଯାହାକୁ କୁହାଯାଇଛି, 'ରସ ଆତ୍ମା' । ଗୀତାରେ ସେହି ରସ 'ମୁଁ' ଅର୍ଥାତ୍ ସିଏ ପୁରୁଷୋତ୍ତମ ଶ୍ରୀକୃଷ୍ଣ ସ୍ୱୟଂ ।

ଆତ୍ମା ଭିତରେ ରସର ସ୍ରୋତ ଥାଏ ପ୍ରଚ୍ଛନ୍ନ । ତାହାକୁ ପ୍ରକାଶ କରେ ଶବ୍‌ଦ ବା ବାଣୀ । ପୁନଶ୍ଚ ରସସିକ୍ତ ସେହି ବାଣୀ ଅମୃତ । ତାହା ଜୀବର ଆତ୍ମା । ଯେତେବେଳେ ତାହା ପ୍ରକୃତିର ଗୁଣମାନଙ୍କରୁ ହୁଏ ମୁକ୍ତ, ତାହାକୁ କହନ୍ତି ପରମାତ୍ମା । ମହାଭାରତ ଶାନ୍ତିପର୍ବରେ ବର୍ଣ୍ଣିତ-ଆତ୍ମା କ୍ଷେତ୍ରଜ୍ଞ ଇତ୍ୟୁକ୍ତ ସଂଯୁକ୍ତ ପ୍ରାକୃତୈର୍ଗୁଣୈଃ । ତୈରେବ ତୁ ବିନିର୍ମୁକ୍ତ ପରମାତ୍ମେତ୍ୟୁଦାହୃତଃ । ଅର୍ଥାତ୍- ପ୍ରକୃତି ଗୁଣରୁ ସୁଖ ଦୁଃଖାଦି ବିକାରମାନଙ୍କରୁ ବଦ୍ଧ ରହିବା କାରଣରୁ ଆତ୍ମାକୁ କ୍ଷେତ୍ରଜ୍ଞ ବା ଶରୀରର ଜୀବାତ୍ମା କହନ୍ତି ଏବଂ ଏହି ଗୁଣମାନଙ୍କରୁ ମୁକ୍ତ ହେବା ହେତୁ ସେହି ହୋଇଯାନ୍ତି ପରମାତ୍ମା ।

ଶ୍ରୀମଦ୍ ଭଗବତ ଗୀତାର ଅଷ୍ଟମ ଅଧ୍ୟାୟ ନାମ 'ଅକ୍ଷର ବ୍ରହ୍ମ ଯୋଗ' । ଗୀତାର ଷଷ୍ଠ ଅଧ୍ୟାୟ ଚୌରାଳିଶ ଶ୍ଳୋକ, ସାମ୍ନାକୁ ଆସେ 'ଶବ୍‌ଦ ବ୍ରହ୍ମ' ପଦ । ଯାହାର ଅର୍ଥ କୁହାଯାଇଛି, 'ବେଦ ବର୍ଣ୍ଣିତ ସକାମ କର୍ମଫଳ' । ଶଙ୍କରାଚାର୍ଯ୍ୟ, ଶ୍ରୀଧର ସ୍ୱାମୀ, ମଧୁସୂଦନାଚାର୍ଯ୍ୟ, ଶ୍ରୀରାମାନୁଜାଚାର୍ଯ୍ୟ ଓ ବାଳ ଗଙ୍ଗାଧର ତିଳକ ପ୍ରଭୃତି ଗ୍ରହଣ କରିଛନ୍ତି ଏହାର ଅର୍ଥ ବେଦରେ କୁହାଯାଇଥିବା କର୍ମଫଳ । ତିଳକ ଲେଖିଛନ୍ତି, 'ଶବ୍‌ଦବ୍ରହ୍ମ' ବୈଦିକ ଯାଗ-ଯଜ୍ଞ ଆଦି କାମ୍ୟ କର୍ମ । ସୃଷ୍ଟି ପ୍ରାରମ୍ଭର ଗୋଟିଏ ଶବ୍‌ଦ 'ଶବ୍‌ଦବ୍ରହ୍ମ' । ବ୍ରହ୍ମ ଦୁଇ ପ୍ରକାର । ଏକ ଶବ୍‌ଦବ୍ରହ୍ମ ଏବଂ ଦୁଇ- ତାହା ଉପରକୁ ଅନ୍ୟ ଏକ ନିର୍ଗୁଣ ବ୍ରହ୍ମ । ପ୍ରଥମ ବ୍ରହ୍ମ ଅକ୍ଷର ରହିତ ହେଲେ ଅବଶିଷ୍ଟ ରହେ ଯେଉଁ ବ୍ରହ୍ମ ତାହା ଅଟେ ନିର୍ଗୁଣ । ମହାଭାରତରୁ ବ୍ୟାସଙ୍କ ମତ ତିଳକ କରିଛନ୍ତି ଉଦ୍ଧୃତ: ଦ୍ୱେ ବ୍ରହ୍ମଣୋ ବେଦିତବ୍ୟେ ଶବ୍ଦବ୍ରହ୍ମ ପରଂ ଚ ଯତ୍ । ଶବ୍ଦ ବ୍ରହ୍ମଣି ନିଷ୍ଣାନ୍ତ ପରଂବ୍ରହ୍ମାଦି ଗଚ୍ଛତି । ପୁନଶ୍ଚ 'ବାଗବୈବ୍ରହ୍ମ' ସମସ୍ତ ଆର୍ଯ୍ୟ ଶାସ୍ତ୍ର ଘୋଷଣା କରିଛନ୍ତି । ଋଗ୍‌ବେଦ ବର୍ଣ୍ଣନା କରିଛନ୍ତି, ଦେବାଂ ବାଚମଜନୟନ୍ତୁ ଦେବା..., ଅର୍ଥାତ୍ ଦେବଗଣ ବାଗ୍‌ଦେବୀଙ୍କୁ କରିଥିଲେ ସୃଜନ । ସିଏ 'ବିଶ୍ୱରୂପାଃ' । କଠୋପନିଷଦ ତାଙ୍କୁ ପରିଚିତ କରାଇଛନ୍ତି, ଏତଦ୍‌ଦ୍ୟେୟ ବା କ୍ଷରବ୍ରହ୍ମନ୍..., ସେହି ଦୁଇ ଅକ୍ଷରବ୍ରହ୍ମ ।

ଏଷ ସର୍ବେଷୁ ଭୂତେଷୁ ଗୂଢ଼ାତ୍ମା ନ ପ୍ରକାଶତେ । ଦୃଶ୍ୟତେ ତୋଗ୍ରୟା ବୁଦ୍ଧୟା ସୂକ୍ଷ୍ମୟ ସୂକ୍ଷ୍ମ ରଶ୍ମିଭି । ଏହି ଲୁକ୍‌କାୟିତ ଆତ୍ମା ସମସ୍ତ ଜୀବଙ୍କ ଠାରେ ପ୍ରକାଶିତ ହୋଇ ନଥାନ୍ତି । ପରନ୍ତୁ ସେ ତତ୍ତ୍ୱ ଜ୍ଞାନୀଙ୍କ ତୀକ୍ଷ୍ଣ ଓ ସୂକ୍ଷ୍ମ ବୁଦ୍ଧିଦ୍ୱାରା ଦେଖାଯାଇଥାନ୍ତି । ପୁନଶ୍ଚ କଥିତ ଯେ, ନ ସଂଦୃଶେ ତିଷ୍ଠତି ରୂପମସ୍ୟ ନ ଚକ୍ଷୁଷା ପଶ୍ୟତି କଶ୍ଚ ନୈନମ୍ । ହୃଦା



Source: Author, Digitized by PPRACHIN, SOA

ମନୀଷା ମନସାଭିକ୍ଳୃପ୍ତୋୟ ଏତଦ୍ଵିଦୁର ମୃତାସ୍ତେ ଭବନ୍ତି (କଠୋ. ୨/୩ /୯) । ଅର୍ଥାତ୍ ତାହାଙ୍କର ରୂପ ବୋଧହୁଏ, କାରଣ-କାହା ଲୋଚନ ତାହାଙ୍କୁ ଦର୍ଶନ କରି ନଥାଏ । ସିଏ ହୃଦୟ, ମନ ଓ ବୁଦ୍ଧିଦ୍ୱାରା ଜ୍ଞାତ ହୁଅନ୍ତି ଏବଂ ଯିଏ ତାହାଙ୍କୁ ଜାଣନ୍ତି ସିଏ ଅମୃତ ହୋଇଯାନ୍ତି । ତ୍ରିଗୁଣ ପରଦା ପଛରେ ଅପ୍ରକଟ ହୋଇ ରହିଥାନ୍ତି । ଇଂଦ୍ରିୟମାନଙ୍କ ଅପରିଚିତ ସେହି ନ କ୍ଷର (ଅକ୍ଷର) ମାୟାର ପରଦାବୃତ୍ତ । ଯେମିତି ବେଶ ପରିହିତ ନୃତ୍ୟଶାଳାର ଜଣେ ନଟ ! କିଏ ତାଙ୍କୁ ଚିହ୍ନିବ କେମିତି ?

ଅକ୍ଷରଂ ବ୍ରହ୍ମ ପରମ୍‌ମ୍..., ଅଷ୍ଟାମ ଅଧ୍ୟାୟ ତୃତୀୟ ଶ୍ଳୋକ ! ଯାହାଙ୍କ ସ୍ୱଭାବ ଆଧ୍ୟାତ୍ମିକ ! ଅକ୍ଷର, ବିନାଶ ନାହିଁ ଯାହାଙ୍କର, ସିଏ ବ୍ରହ୍ମ, ସେ ପରମ ! ଏକାଦଶ ଶ୍ଳୋକ, ଉଚ୍ଚାରଣ କରିଛନ୍ତି ବ୍ୟାସଦେବ, ଯଦକ୍ଷରଂ ବେଦବିଦୋବଦନ୍ତି...ତତ୍ତେ ପଦଂ ସଂଗ୍ରୟେଣ ପ୍ରବକ୍ଷେ । ବେଦବିଦ୍ ଯେଉଁ ଅକ୍ଷରର କଥା କହନ୍ତି,ସେହି ପରମ ପଦକୁ ସଂକ୍ଷେପରେ କହିବି, ଓମିତ୍ୟେକାକ୍ଷରଂ ବ୍ରହ୍ମ ବ୍ୟାହାରନ୍ ମମ୍ ଅନୁସ୍ମରଣନ୍ । ଅର୍ଥାତ୍ ସେହି ଏକାକ୍ଷର ବହ୍ମ ଓଁ । ଏହାଙ୍କୁ ସ୍ମରଣ କରି କର ମୋ ସ୍ମରଣ । ମୁଁ ତୁମକୁ ଦେବି ପରମ ଗତି ।

ଜୀବନର ଲକ୍ଷ୍ୟ କ'ଣ ? ଜୀବାତ୍ମା କାହିଁକି ରକ୍ତ ମାଂସ ଦେହର ପୋଷାକଟି ପିନ୍ଧିଛି ? ତୃତୀୟ ଅଧ୍ୟାୟ, 'ଦି ମଦର୍', ଶ୍ରୀ ଅରବିନ୍ଦ ଉଲ୍ଲେଖ କରିଛନ୍ତି, Regard your life as given you only for the divine work and to help in the divine manifestation.ମାନବକୁ ଜୀବନ ଦିଆ ଯାଇଛି ଭଗବତ୍ କର୍ମ ସଂପାଦନ କରିବାକୁ ଏବଂ ସଂସାରରେ ଭଗବତ୍‌ଙ୍କ ପ୍ରତିଷ୍ଠା ପାଇଁ ଜୀବଟିଏ ଜନ୍ମନେଇଛି । ମାନବ ଜନ୍ମ ଓ ଜୀବନର ଆଭିମୁଖ୍ୟ ଦାର୍ଶନିକ ଓଶୋ କରିଛନ୍ତି ବ୍ୟକ୍ତ, Each man comes to this world with a specific destiny-he has something to fulfill, some message has to be delivered, some works has to be completed. You are not have accidentally-you are here meaningfully. There is a purpose behind you.

-(A sudden clash of thunder, Ch.4)

ମହାନ୍ ସନ୍ଥମାନେ ଜୀବନ ଗଣିତକୁ କଷି ବୁଝାଇ ଦେଇଛନ୍ତି, ଜୀବନର ରହସ୍ୟ କରିଛନ୍ତି ଉନ୍ମୋଚିତ । କିନ୍ତୁ ସମକାଳ ବିପଣନ ସଂସ୍କୃତିର ଏକ ଘଡ଼ି ସନ୍ଧି କ୍ଷଣ ! ଅର୍ଥ ମୁହାଁ ମାନବ । ଜୀବନ ଅର୍ଥାର୍ଜ୍ଜନ ଓ ଭୋଗ ସର୍ବସ୍ୱ । ଜୀବନର ଏହି ଆଭିମୁଖ୍ୟ ଆତ୍ମାକୁ କରିଛି ଅସୁସ୍ଥ । ମନୁଷ୍ୟର ଅସୁସ୍ଥ ଦେହକୁ ସୁସ୍ଥ କରିହେବ । ଚକ୍ଷୁ, ହୃତପିଣ୍ଡ ଓ ବୃକ୍‌କକୁ ବଦଳାଇ ଦେଇ ହେବ; କାଠଗୋଡ଼ ଓ ଫାଇଭର ହସ୍ତ ଲଗାଇ ହୋଇ ଯିବ । କିନ୍ତୁ ଅସୁସ୍ଥ ଆତ୍ମାକୁ କିଏ କେମିତ ସୁସ୍ଥ କରିବ ?



Source: Author, Digitized by PPRACHIN, SOA

ମୁଣ୍ଡକ ଉପନିଷଦରେ ବର୍ଣ୍ଣନା କରାଯାଇଛି, ଅକ୍ଷର ସୃଷ୍ଟିର ମୂଳଚେର, ସ୍ଥିତି ଓ ବିଲୟ ବୀଜ । ଯଥା ସୁଦୀପ୍ୟାତ୍ ପାବକାଦ୍ଦିସ୍ଫୁଲିଙ୍ଗାଃ ଶତ ସହସ୍ରଶଃ, ପ୍ରଭବନ୍ତେ ସ୍ୱରୂପାଃ । ତଥା କ୍ଷରାନ୍ ବିଦ୍ୟାଃ ସୌମ୍ୟଭାବାଃ ପ୍ରଜ୍ଞାୟତେ ସତ୍ରଚୈବାପି ଯାନ୍ତି । ଅର୍ଥାତ୍-ଯେପରି ଜଳୁଥିବା ଅଗ୍ନିରୁ ହଜାର ହଜାର ସ୍ଫୁଲିଙ୍ଗ ସେହି ରୂପରେ ଉତ୍ପନ୍ନ ହୁଅନ୍ତି, ସେହିପରି ଅକ୍ଷରରୁ ବହୁତ ପ୍ରକାର ରୂପହୁଏ ଉତ୍ପନ୍ନ ଓ ତହିଁରେ ଲୟ ପାଉଥାଏ ହେ, ସୌମ୍ୟ ! ସେହି ଅକ୍ଷରକୁ ଚିହ୍ନ ! ସାହିତ୍ୟର ସଂସାରରେ ଅକ୍ଷର ହିଁ ବୀଜ । ସେହି ଅକ୍ଷର ହିଁ ତ୍ରିକାଳ, ଭୂତଂଭବଦ୍ ଭବିଷ୍ୟଦିତି ସର୍ବ ମୋଂକାର ଏବ ।

## ତଦକ୍ଷରଂ ତତ୍..

ଭାରତୀୟ ସାହିତ୍ୟ ଆଧ୍ୟାତ୍ମିକ । ଆତ୍ମରସ ଦ୍ୱାରା ପୁଲକରେ ଉଚ୍ଛୁଳି ଉଠିଥିବା ଦ୍ରଷ୍ଟାଙ୍କ ଅନୁଭୂତି ଓ ସାଧନା ମାର୍ଗ ବର୍ଣ୍ଣନା ବେଦ ଏବଂ ତନ୍ତ୍ର । ଭାରତୀୟଙ୍କ ଜୀବନ ଆଧ୍ୟାତ୍ମିକ । ସେମାନଙ୍କ ସମାଜ ଧାର୍ମିକ ଓ ମଣିଷ ସହିତ ମଣିଷର ସଂପର୍କ ମଧ୍ୟ ଆଧ୍ୟାତ୍ମିକ ଓ ପବିତ୍ର । ତେଣୁ କୁହାଯାଇଛି, ମାତୃଦେବୋ ଭବ, ପିତୃଦେବୋଭବ, ଆଚାର୍ଯ୍ୟ ଦେବୋଭବ । ସମସ୍ତେ ଦେବ, ପବିତ୍ର; ଏପରି କି ସେକ୍ସ ବି ଯଜ୍ଞ ! ସଂସାର ଦେବତାର କାବ୍ୟ । ଈଶା ବାସ୍ୟ ମିଦଁ ସର୍ବଂ.... ! ଈଶା ଅର୍ଥ ଈଶ୍ୱର, ଯ ଏକୋଽବର୍ଣ୍ଣୋ ବହୁଧା, ଯିଏ ଏକ ବର୍ଣ୍ଣ ହୋଇଛନ୍ତି ବହୁ ବର୍ଣ୍ଣ । ସେହି ଏକ ବର୍ଣ୍ଣ, 'ଶୁଭ୍ରମକ୍ଷରମ୍', 'ପରମେବାକ୍ଷରଂ ପ୍ରତିପାଦ୍ୟତେ;' ସିଏ ଧବଳ ବର୍ଣ୍ଣର ଅକ୍ଷର ! ପରମ ଅକ୍ଷର, ବେଦୟତେ ଯସ୍ତୁ ସ ସର୍ବଜ୍ଞଃ ସର୍ବୋଭବତି । (୪ର୍ଥ ପ୍ରଶ୍ନ, ପ୍ରଶ୍ନୋପନିଷଦ) । ତାହାଙ୍କୁ ଜାଣି ପାରେ ଯିଏ, ସିଏ ହୋଇଯାଏ ସର୍ବଜ୍ଞ, ହୋଇ ଯାଏ ସମସ୍ତ କିଛି !

'ଶ୍ୱେତାଶ୍ୱେତ'ର 'ତଦକ୍ଷରଂ ତତ୍ ସର୍ବତୁର୍ବରେଣ୍ୟମ୍', ତତ୍ ଅକ୍ଷରମ୍, ସେହି ସର୍ବଥା ଅବିନାଶୀ (ଅକ୍ଷରବ୍ରହ୍ମ) ସୂର୍ଯ୍ୟ ଦେବତାଙ୍କ ମଧ୍ୟ ଅଟନ୍ତି ଉପାସ୍ୟ । ଅନ୍ୟ ଏକ ବର୍ଣ୍ଣନାରେ ଉଚ୍ଚାରିତ, ଅକ୍ଷରେ ପରମେ ବ୍ୟୋମମ୍, ଅବିନାଶୀ ଅକ୍ଷର ପରମ ବ୍ୟୋମ ବା ଚିଦାକାଶ ! ସୂକ୍ଷ୍ମାତି ସୂକ୍ଷ୍ମଂ କଳିଳସ୍ୟ ମଧ୍ୟେ ବିଶ୍ୱସ୍ୟ ସ୍ରଷ୍ଟାର ମନେକ ରୂପମ୍ । ଅର୍ଥାତ୍- ସୂକ୍ଷ୍ମାତି ସୂକ୍ଷ୍ମ ହୃଦୟ ଗୁଂଫା ସ୍ଥିତ ଜଗତ ସ୍ରଷ୍ଟାଙ୍କ ଅନେକ ରୂପ, 'ଗୁହ୍ୟମ୍' ତାହା, ଧର୍ମେଣ ଲଭତେ, ଆଧ୍ୟାତ୍ମିକ ହେଲେ ହୁଏ ତାହା ହାସଲ ।

ଗୋଟିଏ ବାହ୍ୟିକ ବା ବ୍ୟାକରଣିକ ସତ୍ୟ, ଏକ ବା ଏକାଧିକ ଅକ୍ଷରଙ୍କ ସମ୍ମିଳିତ ରୂପ ଶବ୍ଦ । ତନ୍ତ୍ର କହନ୍ତି, ଶବ୍ଦ ବ୍ରହ୍ମେତି ଶବ୍ଦାର୍ଥଂ ଶବ୍ଦମ୍ । ଶବ୍ଦ ବ୍ରହ୍ମ ଇତିଃ, ଅର୍ଥାତ୍ ଶବ୍ଦ ବ୍ରହ୍ମ ଅଟନ୍ତି । ଶବ୍ଦ ଅର୍ଥ ସହିତ ବିରାଜିତ ହେଲେ ହୁଏ ଶବ୍ଦ ବାଚ୍ୟ ।



Source: Author, Digitized by PPRACHIN, SOA

ଅର୍ଥ ରହିତ ଶବ୍‌ଦ ଧ୍ୱନିଟିଏ ମାତ୍ର । ନିରର୍ଥକ ଧ୍ୱନି ସାହିତ୍ୟ ପୃଷ୍ଠାରେ ଅସାମାଜିକ, ଅନାବଶ୍ୟକ । ଶବ୍‌ଦ ଅର୍ଥ ସହିତ ଅର୍ଦ୍ଧନାରୀଶ୍ୱର ରୂପ ! ଶବ୍‌ଦ ଭିତରେ ଅର୍ଥ ଶିବଙ୍କ ଭିତରେ ଯେମିତି ଶିବତ୍ୱ, ତାଙ୍କ ଶକ୍ତି ପାର୍ବତୀ । ସର୍ବତ୍ର ଶକ୍ତି ପରିବେଷ୍ଟିତ ଶିବଲିଙ୍ଗ, ଠିକ୍ ସେମିତି ଶବ୍‌ଦର ସ୍ୱରୂପ । ଅକ୍ଷରର ଚିତ୍ ଧ୍ୱନି, ଶବ୍‌ଦର ଚିତ୍ ତା ଭାବ ବା ଅର୍ଥ । ଅର୍ଥ 'ସତ୍ୟମିଦ୍ଧା', ସତ୍ୟର ରୂପ ଏବଂ ଅଭିବ୍ୟକ୍ତିରେ ତାହାର ଆନନ୍ଦ । ଏଠାରେ ଶବ୍‌ଦ ସୁନ୍ଦର, ଉପାଦାନ ଗୋଟିଏ ନୁହେଁ ଖାଲି !

ସାଧନା ମାର୍ଗ ବହୁ ପ୍ରକାର । ନିର୍ଦ୍ଦିଷ୍ଟ ଗୋଟିଏ ଗୋଷ୍ଠୀ ସେମାନଙ୍କ ଉଦ୍ଦିଷ୍ଟ ନିର୍ଦ୍ଦିଷ୍ଟ ମାର୍ଗ ସ୍ମୃତିରେ ସଂରକ୍ଷଣ ଓ ଆରକ୍ଷଣ ପାଇଁ ରଚନା କରିଥିଲେ ସାହିତ୍ୟ । ସେ ସାହିତ୍ୟ ସୁଚିନ୍ତିତ ବ୍ୟାକରଣ ଆଶ୍ରୟ ଗ୍ରହଣ କଲା ଯେତେବେଳେ ଅବଜ୍ଞାତ ହେଲା, ଦୁଷ୍ଟଃ ଶବ୍‌ଦଃ ସ୍ତରତୋ ବର୍ଣ୍ଣତୋ ବା ମିଥ୍ୟା ପ୍ରଯୁକ୍ତୋ ନ ତମର୍ଥମାହ । ସ ବାଗ୍‌ବଜ୍ରୋ ଯଜମାନଂ ହିନସ୍ତି... (ମହର୍ଷି ପତଂଜଳି) । ଅର୍ଥାତ୍ ସ୍ୱର (ଧ୍ୱନି) ବା ବର୍ଣ୍ଣର ଅଶୁଦ୍ଧିରେ ଦୂଷିତ ଶବ୍‌ଦ ସଠିକ ପ୍ରୟୋଗ ନ ହେବା କାରଣରୁ ଅଭୀଷ୍ଟ ଅର୍ଥ ବାଚକ ହୁଏ ନାହିଁ । ଏତିକି ନୁହେଁ, ସେହି ବଚନ ରୂପୀ ବଜ୍ର ଯଜମାନଙ୍କୁ କ୍ଷତି ମଧ୍ୟ ପହଂଚାଇ ଥାଏ । ତେଣୁ 'ଶିକ୍ଷା-ବଲ୍ଲୀ'ରେ କୁହା ଯାଇଛି, ଶିକ୍ଷାଂ ବ୍ୟାଖ୍ୟାସ୍ୟାମଃ । ବର୍ଣ୍ଣଃ ସ୍ୱରଃ । ମାତ୍ରା ବଲମ୍ । ସାମ ସଂତାନ । ଅର୍ଥାତ୍-ବର୍ଣ୍ଣ, ସ୍ୱର, ମାତ୍ରା, ବର୍ଣ୍ଣମାନଙ୍କର ସମବୃତ୍ତି ଉଚ୍ଚାରଣ ରୀତି ଏବଂ ସନ୍ଧି ପ୍ରକରଣ ଶିକ୍ଷା ପ୍ରଦାନ କରାଯାଇଛି ।

ବର୍ଣ୍ଣ ଉଚ୍ଚାରଣ ବା ଧ୍ୱନି ବ୍ୟକ୍ତ ପ୍ରୟାସକୁ କୁହାଯାଏ 'ପ୍ରଯତ୍ନ' । 'ପ୍ରଯତ୍ନ' ଦୁଇ ପ୍ରକାର । ଅଭ୍ୟନ୍ତର ଏବଂ ବାହ୍ୟ । ଆଭ୍ୟନ୍ତର ପାଞ୍ଚ ପ୍ରକାର ଏବଂ ବାହ୍ୟ ଏକାଦଶ ପ୍ରକାର । ସ୍ପଷ୍ଟ, ଇଷତ୍‌ସ୍ପୃଷ୍ଟ, ବିବୃତ, ଇଷଦ୍-ବିବୃତ ଏବଂ ସଂବୃତ୍ତ-ଏହା ପାଞ୍ଚ ପ୍ରକାର ଆଭ୍ୟନ୍ତର 'ପ୍ରଯତ୍ନ' । ସେହିପରି ଏକାଦଶ ବାହ୍ୟ ପ୍ରଯତ୍ନ-ବିବାର, ସଂବାର, ଶ୍ୱାସ, ନାଦ, ଘୋଷ, ଅଘୋଷ, ଅଳ୍ପପ୍ରାଣ, ମହାପ୍ରାଣ, ଉଦାତ୍ତ, ଅନୁଦାତ୍ତ ଓ ସ୍ୱରିତ । ବର୍ଣ୍ଣମାନଙ୍କରେ ବ୍ୟବହୃତ ମାତ୍ରା ତିନି ପ୍ରକାର; ହ୍ରସ୍ୱ, ଦୀର୍ଘ ଓ ପ୍ଲୁତ । ବେଦମନ୍ତ୍ରରେ ଉଚ୍ଚାରଣ ବା ସ୍ୱର ବଦଳି ଗଲେ ଭାବ, ଅର୍ଥ ଓ ଦେବ ମଧ୍ୟ ବଦଳି ଯାଇଥାଏ । ତେଣୁ କୁହାଯାଇଛି; ଅ, ଆ ଆଦି ସ୍ୱରବର୍ଣ୍ଣ ଏବଂ କ ଓ ଖ ଆଦି ବ୍ୟଂଜନ ବର୍ଣ୍ଣ ସ୍ପଷ୍ଟ ଉଚ୍ଚାରଣ କରାଯିବା ଉଚିତ । ଦନ୍ତ୍ୟ 'ସ' ସ୍ଥାନରେ ତାଲବ୍ୟ 'ଶ' କିମ୍ବା ମୂର୍ଦ୍ଧନ୍ୟ 'ଷ' ଉଚ୍ଚାରଣ କରାଯିବା ଅନୁଚିତ । ସେହିପରି ବର୍ଗ୍ୟ 'ଜ' ସ୍ଥାନରେ ଅନ୍ତସ୍ଥ 'ଯ' ଉଚ୍ଚାରଣ ଅନୁଚିତ । ବର୍ଣ୍ଣ ଉଚ୍ଚାରଣରେ ବର୍ଣ୍ଣ ବିକାର ତାହାର 'ପ୍ରକୃତିଭାବ'ର ବାଧକ । ଏହା ନ ଘଟିବାପାଇଁ ସାହିତ୍ୟ ଥିଲା ଶ୍ରୁତି ନିର୍ଭର । ଭାରତୀୟ ଅକ୍ଷର ତତ୍ତ୍ୱ ଓ ତାହାର ଧ୍ୱନିତତ୍ତ୍ୱ ଯେତିକି ଆଧ୍ୟାତ୍ମିକ ସେତିକି ବୈଜ୍ଞାନିକ ପଦ୍ଧତି ବଦ୍ଧ । ଏହାର ବହୁତରୁ ବହୁତ ତର୍ଜମା ଆବଶ୍ୟକ, ହୁଏ ଅନୁଭବ ।



Source: Author, Digitized by PPRACHIN, SOA

## ସର୍ବବର୍ଣ୍ଣାଗ୍ରୟଃ ପ୍ରକାଶଃ ପରମ ଶିବଃ (ତନ୍ତ୍ର ତତ୍ତ୍ୱ)

ତନ୍ତ୍ର ସାହିତ୍ୟରେ ଅକ୍ଷର ତତ୍ତ୍ୱର ମହତ୍ତ୍ୱ ଓ ମହିମା ଖୁବ୍ ବହୁତ । ଅର୍ଥର୍ ଆଭଲୋନ୍ ତାଙ୍କ ଗ୍ରନ୍ଥ 'ପ୍ରିନ୍‌ସୁଫୁଲ୍ସ ଅଫ୍ ତନ୍ତ୍ର'ରେ 'ସାରଦା ତିଳକ'ରୁ କରିଛନ୍ତି ଉଦ୍ଧୃତ- Sabdabrahman exists in all things as consciousness. So it is this Sabdabrahman, the substance of which is consciousness, which exists in the bodies of living beings in the form of Kundalini, and then appears as letters in prose, poetry, and so forth, being carried by air (Vayu) to the throat, palate, teeth, and other places. (page. 170) ।

ପ୍ରତ୍ୟେକ ବସ୍ତୁ ଅଟେ ଶବ୍ଦ ବ୍ରହ୍ମଙ୍କ ସାରଂଶ ଏବଂ ଯାହା ଶବ୍ଦ ବ୍ରହ୍ମ ତାହା ଚୈତନ୍ୟ । ପ୍ରତ୍ୟେକ ଜୀବନ୍ତ ଭିତରେ ତାଙ୍କର ଆକୃତିର ନାମ କୁଣ୍ଡଳିନୀ । ବାୟୁ ଦ୍ୱାରା ବହନ ହୋଇ ଅକ୍ଷର ରୂପରେ ଦନ୍ତ, କଣ୍ଠ ଓ ଓଠ ଦ୍ୱାରା ଉଚ୍ଚାରିତ ହୋଇ ସିଏ ଗଦ୍ୟ ଓ ପଦ୍ୟ ରୂପରେ ହୋଇଥାନ୍ତି ପ୍ରକାଶିତ ।

ତନ୍ତ୍ରତତ୍ତ୍ୱ ବର୍ଣ୍ଣନା କରିଛନ୍ତି- In fact, the writing which we ordinary use know as Aksara (Alphabet) is nothing but the YANTRA of the undecaying Aksara Brahman, କ୍ଷୟରହିତ ଅକ୍ଷର ବ୍ରହ୍ମଙ୍କ ଯନ୍ତ୍ର ରୂପ, ଆମ ବ୍ୟବହୃତ ଅକ୍ଷରଗୁଡ଼ିକ ! ପୁନଶ୍ଚ- That the Bindu, Matra and Rekha in the alphabet are really Brahman is clearly shown, ନିର୍ଗୁଣକୁ କରାଯାଇଛି ସଗୁଣ ବା ରୂପ, ଉପାସନା ସୁଗମ ପାଇଁ ହୋଇଛନ୍ତି ରୂପ । 'କାମଧେନୁ' ଆଦି ତନ୍ତ୍ରରେ ସାଧନା ପାଇଁ ପଥରରେ ନିର୍ମିତ କରାଯାଇଛି ମୂର୍ତ୍ତି, ନିରାକାରକୁ କରାଯାଇଛି ସାକାର । ଅକ୍ଷର ସାକାର ଦେବମୂର୍ତ୍ତି ।

ବ୍ରହ୍ମଙ୍କ ଦ୍ୱାରା ଉଚ୍ଚାରିତ ଧ୍ୱନି ବେଦ ଏବଂ ଜୀବନ ଦ୍ୱାରା ଉଚ୍ଚାରିତ ଧ୍ୱନି ଶବ୍ଦ, ବର୍ଣ୍ଣନା କରିଛନ୍ତି ତନ୍ତ୍ର । The effect of the Dhvani of Kundalini in the body of Isvara is Veda and the effect of Dhvani of Kundalini in the body of Jiva is sabda. 'ମାତୃକୋଦୟ' ତନ୍ତ୍ର କହନ୍ତି- ଈଶ୍ୱର ବେଦ ରଚନା କରିଛନ୍ତି, ମହର୍ଷିମାନେ ପୁରାଣ । 'ମାତୃକା ଦେବୀ' ଅର୍ଥ 'ଅକ୍ଷର', not created, but self-existent (Svayambhu) । ମନ୍ତ୍ର ଦେବତାଙ୍କ ନିର୍ଯ୍ୟାସ ଅକ୍ଷର । ଏଣୁ ତାହା ମାତୃକା, ତାଙ୍କର ପିତାମାତା ନଥିବାରୁ ସିଏ 'ମାତୃକା' । ପବନ ଶବ୍ଦ ସଂଚାଳିତ କରେ । ଜୀବଭିତରେ ଶବ୍ଦ ସ୍ରୋତ ସଂଚାଳିତ କରେ ବାୟୁ ମଧ୍ୟ ! ତେଣୁ ଶବ୍ଦ ଶୂନ୍ୟରେ ପ୍ରତିଷ୍ଠିତ ।



Source: Author, Digitized by PPRACHIN, SOA

'ପ୍ରପଞ୍ଚସାର' ୪ର୍ଥ ପଟଳରେ ଉଲ୍ଲେଖ ରହିଛି, ନାଦଃ ପ୍ରାଣଂ ଚ ଜୀବନଂ ଚ ଘୋଷଶ୍ଚେତ୍ୟାଦି କଥ୍ୟତେ, ଅର୍ଥାତ୍- Sound is called Nada, Prana, Jiva, Ghosa etc. ସାର୍ ଜନ୍ ଉଡ୍ରଫ୍ 'ତନ୍ତ୍ରସାର' ଅନୁବାଦରେ ବ୍ୟକ୍ତ କରିଛନ୍ତି, Brahman as Sabda, it first appears at the Muladhara. However that may be, what is known to us as Sabda (Sound) or Varna (letter) is Shakti which gives life to Jivas... । ଶବ୍ଦ ଅଟନ୍ତି ବ୍ରହ୍ମ ଏବଂ ମୂଳାଧାରରୁ ଘଟେ ତାଙ୍କ ଉଦୟ । ଶବ୍ଦ ବା ଅକ୍ଷର, ତାହା ଅଟନ୍ତି ଶକ୍ତି ଯାହା ଜୀବକୁ ଜୀବନ ପ୍ରଦାନ କରିଥାନ୍ତି । ଶବ୍ଦର ସର୍ବତ୍ର ଗୁଣ ହେଲା ଆକାଶ, ତେଣୁ ଶବ୍ଦ Sound produced from space (Akasa). The production of Sabda from Akasa is merely its out ward manifestation. It reality Sabda eternally exists as Brahman. (The Principles of Trantra, Vol-2, Page171). ତାନ୍ତ୍ରିକ କବି ଶ୍ରୀରାମ ପ୍ରସାଦଙ୍କ କବିତାର ଗୋଟିଏ ପଂକ୍ତି,:Thou hast no form, AKSARA is thy form. ବେଦ ବା ତନ୍ତ୍ରର ପଚାଶ ଅକ୍ଷର ବାଚାତୀତାଙ୍କ ଇଚ୍ଛାଶକ୍ତିରୁ ଜାତ, କାଳ ଦ୍ୱାରା ବିନର୍ମିତ, ତାଙ୍କର ଲୀଳା ବିଭୂତିର ପ୍ରତୀକାତ୍ମକ ରୂପ ! ସିଏ ଅକ୍ଷର ହୁଅନ୍ତୁ ବା ହୁଅନ୍ତୁ ଶବ୍ଦ, ତାହା ଅଟନ୍ତି ବ୍ରହ୍ମ । ତେଣୁ 'ଭୁନ୍ନାଲତନ୍ତ୍ର'ରେ ବର୍ଣ୍ଣିତ–Daughter of the mountain, know the Veda to be Brahma Himself. (Page.k 145) । ପୁନଶ୍ଚ ଆଗକୁ ବର୍ଣ୍ଣିତ – Both Turiya and Sabda Brahman are my eternal body ।

ଚେତନାର ସ୍ୱପ୍ନ ସହିତ ନିଦ୍ରା ଚାରି ପ୍ରକାର । ସୁଷୁପ୍ତି, ସ୍ୱପ୍ନ, ଜାଗ୍ରତ ଏବଂ ଚତୁର୍ଥ ଅବସ୍ଥା ତୁରୀୟ । ଜୀବର ତ୍ରୟ ଅବସ୍ଥା ସୃଷ୍ଟି, ସ୍ଥିତି ଓ ପ୍ରଳୟ ଉର୍ଦ୍ଧ୍ୱରେ ତୁରୀୟ । ମନ୍ତ୍ରରେ ଥାଏ ପୂର୍ଣ୍ଣ ଚୈତନ୍ୟ, ତୁରୀୟ ଭାବ । A word is a mere display of letters, whilst Mantra is mass of radiant energy. ସାଧାରଣ ଶବ୍ଦ ଓ ମନ୍ତ୍ର ଅନ୍ତର୍ଗତ ଶବ୍ଦ ମଧ୍ୟରେ ପାର୍ଥକ୍ୟ- The Devata who is the subject of Mantra, is Vacya Sakhti and Devata who is the Mantra itself is Vacaka (ବାଚକ)Sakti. ବ୍ରହ୍ମଙ୍କ ଦୁଇ ତତ୍ତ୍ୱ ସତ୍ ଓ ଅସତ୍ । ସତ୍ ଚୈତନ୍ୟ ଏବଂ ଅସତ୍ ଜଡ଼ । ମନ୍ତ୍ରର ଶବ୍ଦ ସତ୍, ଗଳ୍ପ କବିତାର ଶବ୍ଦ ଅସତ୍ । ଅକ୍ଷର ତତ୍ତ୍ୱ ସିଦ୍ଧତତ୍ତ୍ୱ । 'ମହାନିର୍ବାଣ ତନ୍ତ୍ର' କହନ୍ତି ଅକ୍ଷର ତତ୍ତ୍ୱ ବରେଣ୍ୟତତ୍ତ୍ୱ ଧୃତ ସଂସାରା ବନ୍ଧନାତ୍(Chpt.VIII,Verse-2) । ଦୁଇ ପ୍ରକାର ଜ୍ଞାନ ଆବିର୍ଭୂତ ହୁଏ; ଏକ ପ୍ରକାର ଔପଦେଶିକ ବା ଶବ୍ଦ ଦ୍ୱାରା ଜ୍ଞାନ ଲାଭ ଏବଂ ଦ୍ୱିତୀୟ ପ୍ରକାର ନିଃଶବ୍ଦ । ନିଃଶବ୍ଦ ଦ୍ୱାର ପ୍ରତିଭା ଲାଭ ପରେ ଘଟେ ଆତ୍ମଦର୍ଶନ ।



Source: Author, Digitized by PPRACHIN, SOA

ଏହି ଜ୍ଞାନ କେବଳ ସଦ୍‌ଗୁରୁଙ୍କ କୃପାଦ୍ୱାରା ପ୍ରାପ୍ତ ହୁଏ ମାନବ । ଅବ୍ୟକ୍ତ ସ୍ୱୟଂ ପ୍ରକାଶଙ୍କୁ ଅନ୍ତରାତ୍ମା ଦ୍ୱାରା ଦର୍ଶନ ଘଟାଏ । ଅଦେହ ଯୋଗୀ ନିଃଶବ୍ଦଦ୍ୱାରା ସଂସ୍କାରୀ ପାତ୍ରକୁ କରିଥାନ୍ତି ଜ୍ଞାନ ଦାନ ।

ଗୋଟିଏ ସୂତ୍ର ରହିଛି, ଅକାରଃ ସର୍ବବର୍ଣ୍ଣାଗ୍ରୟଃ ପ୍ରକାଶଃ ପରମଶିବଃ । ଅର୍ଥାତ୍ ଅ ଆ ପ୍ରଭୃତି ବାସ୍ତବରେ ଅକ୍ଷର ନୁହନ୍ତି, ଏହି ସମସ୍ତ ରଶ୍ମି, ସହସ୍ରାରସ୍ଥ ଧବଳ ଚନ୍ଦ୍ରବିମ୍ବ ତରଳିବାରୁ କ୍ଷରିତ ହୁଅନ୍ତି । ମୂଳାଧାରସ୍ଥ ପ୍ରଶୁପ୍ତ ଅଗ୍ନିକ୍ରିୟା କୌଶଳରୁ ଉଦ୍‌ବୁଦ୍ଧ ହୋଇ ଉର୍ଦ୍ଧ୍ୱକୁ ପ୍ରବାହିତ ହୁଅନ୍ତି ଏବଂ ଶେଷକୁ ଚନ୍ଦ୍ରବିନ୍ଦୁକୁ ସ୍ପର୍ଶକରି ଗଳି ପଡନ୍ତି । ଏଥରୁ ରଶ୍ମି ବିକୀର୍ଣ୍ଣ ହେଉଥିବାରୁ ବର୍ଣ୍ଣ ବା ରଶ୍ମି କୁହାଯାଉଛି । କିନ୍ତୁ ମୂଳାଧାର ସହିତ ଏହା ଯୋଗ ଅକ୍ଷୁର୍ଣ୍ଣ ରହୁଥିବା ହେତୁ ଏହାକୁ କହନ୍ତି ଅକ୍ଷର । ମହା ମହୋପାଧ୍ୟାୟ, ଗୋପୀନାଥ କବିରାଜ ଉଲ୍ଲେଖ କରିଛନ୍ତି, ବର୍ଣ୍ଣ ଓ କଳା ନିତ୍ୟ ସଂଯୁକ୍ତ । ବର୍ଣ୍ଣରୁ ମନ୍ତ ଓ ମନ୍ତ୍ରରୁ ପଦର ବିକାଶ ବାଚକ ଭୂମି ଉପରେ ହୁଏ । ସେହପରି ବାଚ୍ୟ ଭୂମି ଉପରେ କଳାରୁ ତତ୍ତ୍ୱ, ତତ୍ତ୍ୱରୁ ଭୁବନ ବା କାର୍ଯ୍ୟ ପଦାର୍ଥ ଉତ୍ପତ୍ତି ହୋଇଛି । ବାକ୍ ଓ ଅର୍ଥ ନିତ୍ୟ ସଂଯୁକ୍ତ କାରଣ ବର୍ଣ୍ଣକୁ କଳା କରିଛି ଅଧିକୃତ ଏବଂ କଳାକୁ ବର୍ଣ୍ଣ ମଧ୍ୟ କରିଛି ଅଧିକୃତ ।

ଆଗମ ଶାସ୍ତ୍ରର ଯାହା ବିନ୍ଦୁତତ୍ତ୍ୱ ତାହା ଚନ୍ଦ୍ରବିନ୍ଦୁ । ଚନ୍ଦ୍ରବିନ୍ଦୁ କୁଣ୍ଡଳିନୀ ଓ ଅଟେ ଚିଦାକାଶ ଏବଂ ଏହା ହିଁ ଅଟେ 'ଶବ୍‌ଦମାତୃକା' (ଅକ୍ଷର ବୀଜ) । ଏହାରି ବିକ୍ଷୋଭରୁ ନାଦ ଓ ବର୍ଣ୍ଣ ହୁଏ ଉତ୍ପନ୍ନ । ଅକାରାଦି ବର୍ଣ୍ଣମାଳା ଏହି ଶୁଦ୍ଧ ସତ୍ତ୍ୱ ରୂପ ଚନ୍ଦ୍ରବିନ୍ଦୁରୁ ଶୁକ୍ଳ ବର୍ଣ୍ଣରେ ହୋଇଥାନ୍ତି କ୍ଷରିତ । ବିକ୍ଷୁବ୍ଧ ସବିତୃ ବିନ୍ଦୁରୁ ଶୁଦ୍ଧାବସ୍ଥାରେ ବାହାରି ପ୍ରକାଶିତ ପରିବ୍ୟାପ୍ତ ନାଦମୟ ରଶ୍ମିଚକ୍ର ହିଁ ପ୍ରକୃତ ଅକାର ଆଦି ବର୍ଣ୍ଣମାଳା । ଶବ୍‌ଦବ୍ରହ୍ମ ରୂପୀ ହରିଣ୍ୟଗର୍ଭ ବା ସବିତା ଏହାର କେନ୍ଦ୍ର ସ୍ଥଳ । ବାହ୍ୟ ଭାବ, ଅଣଚାଶ ବାୟୁ କମ୍ପନ, ଅଣଚାଶ ବର୍ଣ୍ଣ ବାହାରକୁ ହୋଇଥାଏ ପ୍ରକଟ । ବ୍ୟଷ୍ଟି ଓ ସମଷ୍ଟି ଭାବରୁ ଅ ଠାରୁ କ୍ଷ ପର୍ଯ୍ୟନ୍ତ ବର୍ଣ୍ଣ ଅକ୍ଷମାଳା, ମୂଳାଧାର ଚକ୍ରରୁ ଆଜ୍ଞାଚକ୍ର ପର୍ଯ୍ୟନ୍ତ ଛଅ ଚକ୍ର ମଝିରେ ପଚାଶ ଦଳରେ ପ୍ରକାଶମାନ ହୁଅନ୍ତି । ଏହି ଅକ୍ଷରତତ୍ତ୍ୱ ବା ନାଦତତ୍ତ୍ୱ ଆୟତ ବ୍ୟତୀତ ବ୍ରହ୍ମବିଦ୍ୟା ଅଧିକାର ପ୍ରାପ୍ତହୁଏ ନାହିଁ ସାଧକ । ଅଚ୍ୟୁତ ବ୍ରହ୍ମ ବିନ୍ଦୁରେ ପହଂଚିବାକୁ ମନ୍ତ୍ରରୂପୀ ଶବ୍‌ଦ ଅଟନ୍ତି କର୍ଣ୍ଣଧାର । ଦେବତାଙ୍କ ଶରୀର ମନ୍ତ୍ରମୟ ଜ୍ୟୋତି ଦ୍ୱାରା ଗଠିତ । ଦେବତା ମନ୍ତ୍ରଶକ୍ତିଙ୍କ ଅଙ୍ଗିକ । ଗୋଟିଏ ଉଚ୍ଚତମ ଆଧ୍ୟାତ୍ମିକ ଆଭିମୁଖ୍ୟ ଅକ୍ଷର ସୃଷ୍ଟିର ଉଦ୍ଦେଶ୍ୟ ।

ମୂଳଧାର ଚକ୍ରରେ ବିଦ୍ୟମାନ 'ବ୍ରହ୍ମପଦ୍ମ' । ଏହାର ଚାରେଟି ପାଖୁଡ଼ା । ସ୍ୱାଧିଷ୍ଠାନ ଚକ୍ରରେ ବିଦ୍ୟମାନ 'ଭୀମପଦ୍ମ' । ଏହାର ଛଅଟି ପାଖୁଡ଼ା । ମଣିପୁର ଚକ୍ରରେ ବିଦ୍ୟମାନ 'ମଣିପୁର ପଦ୍ମ' । ଏହାର ଦଶଟି ପାଖୁଡ଼ା । ଅନାହତ ଚକ୍ରରେ ବିଦ୍ୟମାନ 'ଅନାହତପଦ୍ମ' ।



Source: Author, Digitized by PPRACHIN, SOA

ଏହା ଦ୍ୱାଦଶ ପାଖୁଡ଼ା ବିଶିଷ୍ଟ । ବିଶୁଦ୍ଧ ଚକ୍ରରେ ବିଦ୍ୟମାନ 'ବିଶୁଦ୍ଧ ପଦ୍ମ' । ଏହାର ଷୋହଳ ପାଖୁଡ଼ା । ଷଷ୍ଠତମ ବା ଷଡ଼ଚକ୍ର ଆଜ୍ଞାଚକ୍ର । ଏଠାରେ ବିଦ୍ୟମାନ 'ଜ୍ଞାନପଦ୍ମ' । ଦୁଇ ପାଖୁଡ଼ା ବିଶିଷ୍ଟ । ଏହି ଷଡ଼ପଦ୍ମ ପାଖୁଡ଼ାମାନଙ୍କ ସଂଖ୍ୟା ପଚାଶ, ପଚାଶ ଅକ୍ଷର ଉତ୍ପତ୍ତିସ୍ଥଳ । ଏହାର ଊର୍ଦ୍ଧ୍ୱକୁ ରହିଛି ବିଂଦୁପଦ୍ମ ଓ ନାଦପଦ୍ମ, ତାହା ଊର୍ଦ୍ଧ୍ୱରେ ସହସ୍ରାର ସହସ୍ରଦଳ ପଦ୍ମ ।

ଷଡ଼ଚକ୍ର ପ୍ରସଂଗ ପ୍ରଶ୍ନୋପନିଷଦ, କାଳିକା, ତାରା, ନାରାୟଣ ଓ ଶିବଉପନିଷଦ ଆଦିରେ ମଧ୍ୟ ହୁଏ ଦୃଷ୍ଟିଗୋଚର । ଷଡ଼ଚକ୍ର ଭେଦ ଓ କୁଣ୍ଡଳିନୀ ଜାଗରଣ; ଯୋଗ ଓ ତନ୍ତ୍ରର ମଧ୍ୟ ଅନ୍ତରଂଗ ଓ ଅନ୍ତର୍ଗତ କ୍ରିୟା । ଏହା କଳାତତ୍ତ୍ୱ ଓ ବିଦ୍ୟାତତ୍ତ୍ୱ, ଯେଉଁ ବିଦ୍ୟା ପରମା, ମୁକ୍ତେର୍ହେତୁଭୂତା, ଅଟନ୍ତି ସନାତନୀ ବା ଅବିନାଶୀ (ଅକ୍ଷର)) । ଏହି ମହାତତ୍ତ୍ୱ ରହସ୍ୟମୟ ଓ ମାନବ ବୁଦ୍ଧିର ଅଗମ୍ୟ । ତେଣୁ 'ତାରା ରହସ୍ୟ'ରେ ସାଧକ କରିଛନ୍ତି ପ୍ରାର୍ଥନା-

Devi, I have been through 1,20,000 books, and I am yet unable to say what is KALATATTA (କଳାତତ୍ତ୍ୱ)। O Suresvari do thou relate to me that KALAYOGA(କଳାଯୋଗ) !

ଯାହା କଳାତତ୍ତ୍ୱ ତାହା ଅକ୍ଷର ତତ୍ତ୍ୱ । ତିନି ପ୍ରକାର ବର୍ଣ୍ଣ (ସାରଦା ତିଳକ ୨/୧୩-୧୬) ତହିଁରୁ ଅଠ ତିରିଶ ପ୍ରକାର କଳାର ଉତ୍ପତ୍ତି । ତତ୍ ତ୍ରିଭେଦ ସମୁଦ୍‌ଭୂତା ଅଷ୍ଟତ୍ରିଂଶତ କଳା ମତାଃ । ସ୍ୱରୈଃ ସୌମ୍ୟାଃସ୍ପର୍ଶ ଯୁଗ୍ମୈଃ ସୌରା ଯାଦ୍ୟାଷ୍ଟ ଷୋଡ଼ଶ ଦ୍ୱାଦଶ ଦଶ ସଂଖ୍ୟାଃ ସ୍ୟୁଃ କ୍ରମଶଃ କଳାଃ । ୧- ସୌମ୍ୟ (ଚନ୍ଦ୍ରମାସମ୍ବନ୍ଧୀୟ) କାମ ଦାୟିନୀ ଷୋହଳ କଳା, ୨- ସୌର (ସୂର୍ଯ୍ୟସମ୍ବନ୍ଧୀୟ=, ସୌରୀକଳା) ବସୁଦା ଅଟନ୍ତି ବାର ଏବଂ ଅଗ୍ନେୟ (ଅଗ୍ନେୟୀ କଳା )ଧର୍ମପଦାଙ୍କ ସଂଖ୍ୟା ଅଟେ ଦଶ । ମୋଟ ଅଠତରିଶ । ଅଠ ତିରିଶ ଦେବୀ ଅଠ ତିରିଶ ଅକ୍ଷର ପ୍ରତୀକରେ ପ୍ରକାଶ ଲାଭ କରିଛନ୍ତି । Shiva is RUPA or form; Shakti is SHOONYA or nothingness. ଦୁହିଁଙ୍କର ଏକାକାର ରୂପ 'ସୃଷ୍ଟି', ଚୈତନ୍ୟମୟ ଓ ସୁନ୍ଦର । ରୂପ ପବିତ୍ର ପ୍ରତୀକ ଗୋଟିଏ ଏବଂ ମଙ୍ଗଳମୟ । ଶୂନ୍ୟରୁ ଆକାର ଓ ଅକାରର ମୂଳଶୂନ୍ୟ । ଶୂନ୍ୟରୁ ଅକ୍ଷର, ଅରୂପର ରୂପର ଉଦ୍‌ଗାର ।





Source: Author, Digitized by PPRACHIN, SOA

# ଭାରତୀୟ ଶବ୍‌ଦବାଦ

## ଶବ୍‌ଦ୍‌ବ୍ରହ୍ମମୟୀ ଦେବୀ ଏକ ଓ ଅନେକ ଅକ୍ଷର ଆକୃତି

ଭାରତୀୟ ଶକ୍ତି ସାଧନା ତତ୍ତ୍ୱ ଓ ନାନ୍ଦନିକତତ୍ତ୍ୱ (Enjoyment and appreciation of beauty), ଦୁଇଟି ଯାକ ଏକ ଏବଂ ବୈଦିକ ଶବ୍‌ଦରେ ତାହା 'ବାଗାମ୍ଭୃଣୀ' । ସୌନ୍ଦର୍ଯ୍ୟ ଦୃଶ୍ୟ ଜଗତ ଊର୍ଦ୍ଧ୍ୱ ବସ୍ତୁ ଏବଂ ଦ୍ୱଂଦ୍ୱାଭାସୀ ଶବ୍‌ଦ, ତାହାର ହୋଇ ଆସିଛି ଭାବ ପ୍ରକାଶ । ତାହାକୁ ଆଧୁନିକ ଶବ୍‌ଦରେ କୁହାଯାଇଛି ସିଂବଲ୍ । ନିଶ୍ଚିତ ଶବ୍‌ଦ ଏକ ପ୍ରତୀକ (Symbol), ଏବଂ ତାହା ଭାବ ପ୍ରକାଶ ପାଇଁ ହେଉଛି ବ୍ୟବହୃତ; ତଥା ସୌନ୍ଦର୍ଯ୍ୟର ଅଭିବ୍ୟକ୍ତି ପାଇଁ ସାରସ୍ୱତ ସ୍ରଷ୍ଟା ହୋଇଥାଏ ତାହାର ଆଶ୍ରିତ ।

ତେବେ ଶବ୍‌ଦ କ'ଣ, ସୌନ୍ଦର୍ଯ୍ୟ କ'ଣ ? ଦୁଇଟି ପାପୁଲିର ଧକ୍‌କାରୁ ସୃଷ୍ଟି ତାଳି ପରି ଦୁଇଟି ଯାକ ଏକ ତତ୍ତ୍ୱରୁ ଉତ୍ପତ୍ତି ଲାଭ କରିଛନ୍ତି । ତାହା ଶକ୍ତିତତ୍ତ୍ୱ ଏବଂଯାହା ଶକ୍ତିତତ୍ତ୍ୱ ତାହା ମଧ୍ୟ ଶିବଶକ୍ତି ତତ୍ତ୍ୱ । ଭାରତୀୟ ଦର୍ଶନ ବଡ଼ ରହସ୍ୟାତ୍ମକ । 'ଶିବ ସଂହତା'ରେ ବର୍ଣ୍ଣିତ ହୋଇଛି-

ମୂଳାଧାରସ୍ଥ ବ୍ରହ୍ମ୍ୟାତ୍ମତେଜୋ ମଧ୍ୟେ ବ୍ୟବସ୍ଥିତା ।।<br>
ଜୀବଶକ୍ତିଃ କୁଣ୍ଡଳାଖ୍ୟା ପ୍ରାଣାକାରାଥ ତେଜସୀ ।।<br>
ମହାକୁଣ୍ଡଳିନୀ ପ୍ରୋକ୍ତା ପରବ୍ରହ୍ମ ସ୍ୱରୂପିଣୀ ।।<br>
ଶବ୍‌ଦ ବ୍ରହ୍ମମୟୀ ଦେବୀ ଏକାନେକାକ୍ଷରା କୃତି ।।<br>
ଶକ୍ତି କୁଣ୍ଡଳିନୀ ନାମ ବିସତନ୍ତୁନିଭା ଶୁଭା ।।

ଶକ୍ତି ପରମେଶ୍ୱରୀ, ବ୍ରହ୍ମଙ୍କ ପ୍ରକୃତି, ତାହାଙ୍କୁ କୁଣ୍ଡଳିନୀ ବୋଲି ଲୋକେ କହନ୍ତି । ତାହା ପଦ୍ମ ଅନୁରୂପ ଏବଂ ମୂଳାଧାର ପଦ୍ମ ଗର୍ଭ ମଧ୍ୟରେ ଉଜ୍ଜ୍ୱଳ ସ୍ୱର୍ଣ୍ଣ କିରଣ ବିକିରଣ କରୁଥିବା କୁଣ୍ଡଳାକୃତି । ସିଏ ପରାଶିବଙ୍କ ସବୋଚ୍ଚ ଭୀତିହୀନ ଶକ୍ତି । ପୁରୁଷ ଓ ସ୍ତ୍ରୀ ନିର୍ବିଶେଷଙ୍କ ଜୀବଶକ୍ତି । "She is of the form of "PRANA". All letters from ଅ to କ୍ଷ arise from her." ସିଏ ମାନବର ଅନ୍ତର୍ଶକ୍ତିରୂପେ ମାନବ ସତ୍ତା ଭିତରେ ଶୃଂଙ୍ଖଳିତ ଭାବରେ ଥାଇ ସଂସାରକୁ ଜୀବନ୍ତ କରିଛନ୍ତି । "Kundalini is the essence of OM"



Source: Author, Digitized by PPRACHIN, SOA

ବୋଲି ଉପର୍ଯ୍ୟୁକ୍ତ ଉଦ୍ଧୃତିର ବ୍ୟାଖ୍ୟାରେ ସ୍ୱାମୀ ମୁକ୍ତାନନ୍ଦ ପରମହଂସ ଉଲ୍ଲେଖ କରିଛନ୍ତ । (Play of Consciousness, ମୁଖବନ୍ଧ ପୃଷ୍ଠା xxxVIII )।

ସାହିତ୍ୟର ମୂଳ ଉପାଦାନ ଅକ୍ଷର ଏବଂ ଅକ୍ଷରଙ୍କ ମିଳନରୁ ଶବ୍‌ଦର ଉତ୍ପତ୍ତି । କୁଣ୍ଡଳିନୀ 'ଶବ୍‌ଦ ବ୍ରହ୍ମମୟୀ' ଏବଂ 'ଏକାନେକାକ୍ଷରାକୃତି' । ଏକ ଓ ଅନେକ ଅକ୍ଷର ଆକୃତି ସେ । ଯେଉଁ ଶକ୍ତି ମାନବ ଭିତରୁ ଉଦୟ ହୁଅନ୍ତି ଜ୍ଞାନ ସ୍ୱରୂପିଣୀ, ସିଏ ଜୀବର ଚିତ୍ ଶକ୍ତି, ଦେବୀ କୁଣ୍ଡଳିନୀ । 'ରସୋବୈସଃ', ସିଏ ପଞ୍ଚତତ୍ତ୍ୱ ସଂଯୋଜିତ ଦେହ ଭିତରେ ଏଭଳି ରସୋଦ୍‌ଗାର୍ କରୁଛନ୍ତି ଯେ ମାନବ ବଂଚିବାପାଇଁ ଅହରହ ପ୍ରଲୋଭିତ ଏବଂ ବଂଚି ରହିଚି ମଧ୍ୟ ! 'ଏଷାଽଽତ୍ମଶକ୍ତି । ଏଷା ବିଶ୍ୱମୋହିନୀ' (ଶ୍ରୀଦେବ୍ୟଥର୍ବଶୀର୍ଷ, ୧୫) । ପୁନଶ୍ଚ ତାଙ୍କୁ କୁହାଯାଇଛି, 'ବାଙ୍‌ମାୟା' ଓ 'ଏଷା ଶ୍ରୀମହାବିଦ୍ୟା' । ଯେଉଁ ବିଦ୍ୟାଙ୍କୁ ଜାଣିଲେ ଦୁଃଖ ସମୁଦ୍ର ଲଂଘି ହୋଇଥାଏ, ଯେଉଁ ବିଦ୍ୟାଙ୍କୁ ଅଧ୍ୟୟନ କଲେ ଭୋଗ ଓ ମୋକ୍ଷ ପ୍ରାପ୍ତି ଘଟିଥାଏ । ଜୀବର ହିତ ପାଇଁ ଦେହ ସହିତ ଥିବା ହେତୁ ସେହି ଚିନ୍ମୟୀ ସତ୍ୟ ଓ ସୁଷମାଙ୍କୁ 'ସାହିତ୍ୟ' ବୋଲି ମଧ୍ୟ ଯୁଗୀୟ ତାନ୍ତ୍ରିକ ସଂସ୍କୃତି ବିବେଚନା କରି ଆସିଛି । 'ସାହିତ୍ୟ' ଭାବ ବାଚକ ଏକ ପ୍ରତୀକ, ପରବର୍ତ୍ତୀ କାଳର ଗୁଣବାଚକ ଶବ୍‌ଦ ।

'ଯୁଜ୍' ଧାତୁରୁ ନିଷ୍ପନ୍ନ 'ଯୋଗ' ଅର୍ଥ ଯୁକ୍ତ କରିବା । ଶବ୍‌ଦର ସାମରସ୍ୟ ସାହିତ୍ୟ, ଶବ୍‌ଦରେ ଶବଦ୍ ଯୁକ୍ତ ହୋଇ ଯେଉଁ ଦ୍ୱନ୍ଦ୍ୱାତ୍ମକ ଶକ୍ତି କରେ ସୃଷ୍ଟି, ତାହା ସାହିତ୍ୟ । ସାହିତ୍ୟ ବାକ୍‌ର କେବଳ 'ପରା' (ପ୍ରାଣବାୟୁ) ରୂପନୁହେଁ, ତାହା 'ପରାତ୍‌ପରା' ବା 'ଅପରାଶକ୍ତି' (ପ୍ରକୃତି) ମଧ୍ୟ । ଭାରତୀୟ ଗବେଷକ ସ୍ୱଷ୍ଟ ଭାବେ ଅନୁଭବ କରିଛନ୍ତି, ଆଦୌ ଭଗବାନ ଶବ୍‌ଦରାଶିଃ; ପବିତ୍ର ବର୍ଣ୍ଣମାଳା ଆଙ୍ଗିକରେ 'ନାଦବ୍ରହ୍ମ' ନିଜକୁ ଅଭିଷିକ୍ତ କରିଥାନ୍ତି । ସ୍ୱାମୀ ମୁକ୍ତାନଂଦ ପରମହଂସ ବର୍ଣ୍ଣନା କରିଛନ୍ତି,–

I directly experienced sabdabrahman in the form of nada. As for my every-active Kundalini, She too was over joyed to be meeting Her husband who had come to Her as the nada.

(The World Sounds ଅଧ୍ୟାୟ,Play of Consciousness,ପୃ-୧୮୫ ଷ୍ଠା )।

ଘଟଣାଟିର କେନ୍ଦ୍ରରେ ବିଦ୍ୟମାନ ପରିବ୍ୟାପ୍ତ ଆନନ୍ଦ । ଯେଉଁ ଆନନ୍ଦରୁ ସୃଷ୍ଟିର ଉନ୍ମେଷ ଓ ଜୀବନର ଅସ୍ତିତ୍ୱ । ଆଗକୁ ଅଦ୍ୱୈତ ଭାବ 'ମିଳନ' । ଯେଉଁ ମିଳନର ଉଚ୍ଚତମ ଜ୍ଞାନ ଅଟେ 'ବିଦ୍ୟା' । ଯେଉଁ ବିଦ୍ୟା ମୁକ୍ତି ସ୍ୱରୂପା ଏବଂ ଯାହାଦ୍ୱାରା ଆସେ ଉପଲବ୍ଧି Purno' ham, ଆସେ ସଚେତନତା, I am entire Universe ! ସିଦ୍ଧଙ୍କ ଗୋପନୀୟତା– Through this knowledge one enters the state of unit from that of duality.



Source: Author, Digitized by PPRACHIN, SOA

ସୁସ୍ପଷ୍ଟ କୁହାଯାଇଛି ଯେ Vidya does not belong to the belong to the realm of B.A., M.A. or .P.hd., or to science or psychology. ଏହି ସ୍ଥଳରେ 'ଜ୍ଞାନମନ୍ନମ୍', Knowledge is food, ଯାହାକୁ ଭୋଜନ କରିଥାଏ ଉପନିଷଦୀୟ 'ଦ୍ୱସୁପର୍ଣ୍ଣା'ର ଗୋଟିଏ ପକ୍ଷୀ ! ମୂଳ ପ୍ରସଂଗ ସେହି ଯୋଗ କୌଶଳ, ଅନଭୋପାୟ, ପରାଶକ୍ତି କ୍ରିୟା; The Goddess Parashakti, first takes the form of ichhaskti, Jnanasakti and Kriya sakti, The power of will, knowledge and action. Then She undergoes a transformation and become vowels, consonants and classified and unclassified letters. The shakti, becoming matrka, takes the form of the letters from a to Ksa, giving rise to positive and negative feelings. (Secret of the Siddhas, page100-101, Swami Muktananda, Chitshakti publication, Thane) । ଜଗଦୀଶ୍ୱରୀ ଇଚ୍ଛାଶକ୍ତି, ଜ୍ଞାନଶକ୍ତି ଓ କ୍ରିୟାଶକ୍ତିରେ ରୂପାନ୍ତରିତ ହୋଇ ସ୍ୱର ଓ ବ୍ୟଞ୍ଜନବର୍ଣ୍ଣ ରୂପଧାରଣ କରନ୍ତି । ବିଭିନ୍ନ ବିଭାଗରେ ସଜିତା ମାତୃକା ନିଅନ୍ତି-ଅକ୍ଷର ରୂପ । ସକାରାତ୍ମକ ଓ ନକାରାତ୍ମକ ଅନୁଭୂତିରୁ ଘଟେ ତାଙ୍କ ଉଦୟ ।

ବସ୍ତୁବିଜ୍ଞାନ ଦୃଷ୍ଟିରୁ Robert E. Svoboda କହନ୍ତି, Language is sound and sound moves in air. ଶବ୍ଦ ଉତ୍ପତ୍ତି ତତ୍ତ୍ୱର ମୂଳ ମୌଳିକ ବାୟୁ ତତ୍ତ୍ୱ । ମହା ମହୋପାଧ୍ୟାୟ ପଣ୍ଡିତ ଗୋପୀନାଥ କବିରାଜ ତାହାଙ୍କ ପ୍ରବନ୍ଧ 'ଜ୍ଞାନ ଓ ବିଜ୍ଞାନ' (ଯୋଗୀରାଜ ବିଶୁଦ୍ଧାନନ୍ଦ ପ୍ରସଂଗ ତଥା ତତ୍ତ୍ୱକଥା, ପୃଷ୍ଠା ୬୪-୬୫) କରିଛନ୍ତି ଉଲ୍ଲେଖ, ବିକ୍ଷୁବ୍ଧ ସବିତୃ-ବିନ୍ଦୁରୁ ଶୁଦ୍ଧବସ୍ଥାରେ ବାହାରକୁ ବାହାରି ପରିବ୍ୟାପ୍ତ ନାଦମୟ ରଶ୍ମିଚକ୍ର ବାସ୍ତବରେ ହିଁ ଅଟେ ଅ-କାର ଆଦି ବର୍ଣ୍ଣମାଳା । ବାହ୍ୟ ଭାବରେ ଅଣଚାଶ ବାୟୁଙ୍କ କମ୍ପନ ଅଣଚାଶ ବର୍ଣ୍ଣ ବା ରଶ୍ମି ରୂପରେ ତାହାର ବାହାରେ ଘଟିଥାଏ ପ୍ରକଟ ।

ଏହି ପଚାଶ ବର୍ଣ୍ଣ ହିଁ ବ୍ୟଷ୍ଟି ଓ ସମଷ୍ଟି ଭାବରୁ 'ଅ' ଠାରୁ 'କ୍ଷ' ପର୍ଯ୍ୟନ୍ତ ବର୍ଣ୍ଣମାଳା ଅଥବା ଅ-କ୍ଷ ମାଳା ରୂପରେ ମୂଳାଧାର ଚକ୍ରରେ ଆଜ୍ଞାଚକ୍ର ପର୍ଯ୍ୟନ୍ତ ଛଅ ଚକ୍ର ମଝିରେ ପଚାଶ ଦଳରେ ପ୍ରକାଶମାନ ହୋଇଥାଏ ।....ଶବ୍ଦ ବ୍ରାହ୍ମଣି ନିଷ୍ଣାତଃ ପରବ୍ରହ୍ମଧି ଗଚ୍ଛତି, ଶବ୍ଦରୁ ଜଗତ ସୃଷ୍ଟି ହୋଇଅଛି । ଶେଷରେ ଶବ୍ଦରେ ଜଗତର ବିଲୟ ଘଟେ ।...ଅଚ୍ୟୁତ ଶବ୍ଦବିନ୍ଦୁରେ ପହଂଚିବା ପାଇଁ ଆଗରେ ମନ୍ତ୍ରରୂପୀ ଶବ୍ଦ କର୍ଣ୍ଣଧାର । ସମସ୍ତ ଦେବତାଙ୍କ ଶରୀର ମନ୍ତ୍ରମୟ ଜ୍ୟୋତିଦ୍ୱାରା ଗଠିତ ।

ଭାରତୀୟ ନାଂଦନିକ ତତ୍ତ୍ୱରେ ଶବ୍ଦ ନୁହେଁ ବାହ୍ୟ ବସ୍ତୁ । ଶବ୍ଦର ବସ୍ତୁ ତତ୍ତ୍ୱରେ ଚିନ୍ମୟ ଶକ୍ତିତତ୍ତ୍ୱ କେଉଁ ଅନାଦି କାଳରୁ ଦ୍ରଷ୍ଟା ପ୍ରାପ୍ତ ହୋଇଛନ୍ତି । ଶକ୍ତି ଯେଉଁଠି ଏବଂ



Source: Author, Digitized by PPRACHIN, SOA

ଯେଉଁ ପ୍ରକାର ଥିଲେ ମଧ୍ୟ ତାହା ଏକ ଓ ମହାଶକ୍ତିଙ୍କ ଅଂଶ । ଯେଉଁ ଶକ୍ତିରୁ ସମଗ୍ର ସୃଷ୍ଟିର ଜନ୍ମ, ତାହା ସେହି ଶକ୍ତିଙ୍କ ଅଂଶ ।

...manifests outwordly as a group of letters in the form of language. These letters arise from a source known as the matrkacakra. 'ମାତୃକାଚକ୍ର' ପାଦଟୀକାରେ ସୂଚିତ: The suprime power of Consciousness in its primal sound form which all matrkas arise. (Secret of the siddhas, page84) । ଶାକ୍ତୋପାୟ ପ୍ରସଂଗରେ କୁହାଯାଇଛି, To understand the powers of the letters is to attain every thing. ଅକ୍ଷର ଶକ୍ତିଙ୍କୁ ହୃଦୟଙ୍ଗମ କଲେ ସବୁକିଛିର ପ୍ରାପ୍ତି ହୋଇଥାଏ ସିଦ୍ଧି । ଅକ୍ଷର ଶକ୍ତିଙ୍କ ହୃଦୟଙ୍ଗମ ଅଟେ ଅକ୍ଷର ସିଦ୍ଧି । ସୁଖ ଓ ମୋକ୍ଷ ବା ଦୁଇଟିର ଏକ ଶବ୍‌ଦ 'ଆନନ୍ଦ' ଜୀବନର ଲକ୍ଷ୍ୟକୁ କରାଇଥାଏ ପୂର୍ଣ୍ଣତମ ।

ନାଦବ୍ରହ୍ମଙ୍କୁ ଉତ୍ପନ୍ନ କହନ୍ତି ଯେଉଁ ମହାଶକ୍ତି ତାହା ବ୍ରହ୍ମାଣ୍ଡୀୟ ମହାଶକ୍ତି ଠାରୁ ଅଲଗା ନୁହନ୍ତି ଏବଂ ତାହାର ସ୍ୱରୂପକୁ କୁହାଯାଏ ଶବ୍‌ଦ । ନାଦବ୍ରହ୍ମ ନିରୁତା ଧ୍ୱନି । ଧ୍ୱନି ହିଁ ଶବ୍‌ଦର ଆଙ୍ଗିକ । ଶବ୍‌ଦ ଆଙ୍ଗିକକୁ ଗଠନ କରନ୍ତି ବର୍ଣ୍ଣମାଳା ଓ ବର୍ଣ୍ଣମାଳାରେ ମିଶ୍ରିତ ଫଳା । ଅଣଚାଶ ପ୍ରକାର ବାୟୁର କଂପନ ନାଦ ଅଣଚାଶ ବର୍ଣ୍ଣ ଏବଂ ଶ୍ରେଷ୍ଠବର୍ଣ୍ଣ ପଚାଶତମ ଅଟେ ଓଁ । ଭାରତୀୟ ଆଧ୍ୟାତ୍ମିକ ନାନ୍ଦନିକ ତତ୍ତ୍ୱରୁ ଏହା ଉତ୍ପତ୍ତିର କାରଣ ମିଳେ ଏକମାତ୍ର 'କୁଣ୍ଡଳିନୀ' । କୁଣ୍ଡଳିନୀ ହିଁ ନାଦବ୍ରହ୍ମର ଆଦିମାତା ଅଟନ୍ତି । ଶକ୍ତିଙ୍କ ଆକର୍ଷଣ ଓ ବିକର୍ଷଣରୁ ଜନ୍ମ ନିଏ ସୃଜନୀ ବା ସୃଷ୍ଟି ହୁଏ ଧ୍ୱନି । ଧ୍ୱନି ଶବ୍‌ଦଙ୍କ ଅଲିଖିତ ସ୍ୱରୂପ । ଧ୍ୱନିର ଲିଖିତ ରୂପ ଶବ୍‌ଦ । ଶବ୍‌ଦ ଏକ ବା ଏକାଧିକ ବର୍ଣ୍ଣ ଓ ମାତ୍ରାଙ୍କ ସମ୍ମିଳିତ ସ୍ୱରୂପ ।

ସାର୍ ଜନ୍ ଉଡ୍‌ରଫ୍ (Arthur Avalon) ତାଙ୍କ ରଚିତ 'Principles of Trantra' ଦ୍ୱିତୀୟ ଭାଗସ୍ଥ ଦ୍ୱାଦଶ ଅଧ୍ୟାୟ ଶୀର୍ଷକ ରଖିଛନ୍ତି, 'Lettered and unlettered sound'। ଶବ୍‌ଦ ବା ଧ୍ୱନି ଏକ ପ୍ରକାର ନାମ, ଧ୍ୱନି ଓ ବର୍ଣ୍ଣ । 'The first or unlettered form of sabda (Sound) or sound in its subtle form, is Dhvani. Lettered sound is called Varna, which means letters'.ସୂତ୍ରପରି ଅଭିବ୍ୟକ୍ତି ହେଉଥିବା ଅକ୍ଷର ଅ ଠାରୁ କ୍ଷ କୁ କୁହାଯାଏ ବର୍ଣ୍ଣ ଏବଂ ଯାହା କୌଣସି ଆକ୍ଷରିକ ଚିହ୍ନ ଦ୍ୱାରା ନ ହୋଇ ହୁଏ ଅଭିବ୍ୟକ୍ତ, ତାହା ଧ୍ୱନି । ଶବ୍‌ଦ ଦ୍ୱିବିଧ ମଧ୍ୟରେ ପ୍ରଭେଦ ଘଟାଏ ଗୋଟିଏ ଉପାଦାନ, ତାହା ସ୍ୱର । ସ୍ୱରରେ ମାତ୍ରା ଯୁକ୍ତ ହେଲେ ହୁଏ ଶବ୍‌ଦ । Dhvani is the real substance (ପଦାର୍ଥ) of which Sabda is only a manifestation (ପରିଣାମ, development of effect),ଜୀବର ପ୍ରାଣ ଶକ୍ତିର ରହସ୍ୟପୂର୍ଣ୍ଣ ଉପାଦାନ ଅଟେ ଏଇ ଧ୍ୱନି, ଯାହା ଅଟେ



Source: Author, Digitized by PPRACHIN, SOA

ଚେତନା । It is the form of Dhvani that this Sakti appears in and disappears from a Jiva's body. ଧ୍ୱନି ରୂପରେ ଜୀବ ଶରୀରରୁ ଶକ୍ତି ହୁଅନ୍ତି ପ୍ରକାଶିତ ଏବଂ ପୁଣି ଅଦୃଶ୍ୟ ।

ଜୀବ ଓ ପରମ ଅଭିନ୍ନ, ତେଣୁ ଈଶ୍ୱର କହନ୍ତି, Sabdabrahman and Parabrahma are both may eternal bodies.ଶାସ୍ତ୍ର କରିଛି ମୀମାଂସା, ଶାସ୍ତ୍ର ବ୍ରହ୍ମଙ୍କ ରୂପ (appearance) । ତାହା ବେଦ ବା ହେଉ ତନ୍ତ୍ର, ତାହା ମନ୍ତ୍ର ଗଠିତ only a manifestation (ସ୍ୱରୂପ ବିଭୂତି) of Brahman. ଯେମିତି ବିଷ୍ଣୁ ସମସ୍ତ ଅବତାରଙ୍କ ମୂଳସ୍ୱରୂପ (Root being), ସେମିତି ଆଲୋକ ପ୍ରଦାୟକ 'ମନ୍ତ୍ରମୂର୍ତ୍ତି' ଅଟନ୍ତି ସମସ୍ତ ଶାସ୍ତ୍ରର ମୂଳସ୍ୱରୂପ । ତାହା ସତ୍, ଚିତ୍ ଓ ଆନନ୍ଦରୁ, ଯାହା ଶବ୍ଦ ବ୍ରହ୍ମ, ହୋଇଥାନ୍ତି ଆକର୍ଷିତ ଓ ପ୍ରକାଶିତ । ଏହି ତ୍ରିଶକ୍ତିଙ୍କ ଆକର୍ଷଣ ଓ ବିକର୍ଷଣର ପରିଣାମ ନାଦବ୍ରହ୍ମଙ୍କ ପ୍ରକଟନ । ତାହା ମନ୍ତ୍ରର ମୂର୍ତ୍ତ ସ୍ୱରୂପ, ବା ଶାସ୍ତ୍ର । ଯେତେବେଳେ ତାହା ସାଧାରଣ ଜନଜୀବନକୁ କରେ ସଂଜୀବୀତ ତାହାକୁ କରନ୍ତି ସାହିତ୍ୟ । ଶାସ୍ତ୍ର ଦେବତାର ସଂଜୀବନୀ ତତ୍ତ୍ୱ ।

## ଋଗ୍‌ବେଦ 'ବାଗାମ୍ଭୃଣୀ'ସୂକ୍ତ: ସରସ୍ୱତୀରୁ ଶିବା କଳାର ଜନନୀ

'ଶକ୍ଳ୍ ଶକ୍ତୌ' ଧାତୁରେ 'କ୍ତିନ୍' ପ୍ରତ୍ୟୟ ହୋଇ ହୁଏ ଶକ୍ତି, ବସ୍ତୁରେ ଯାହା କାର୍ଯ୍ୟ ଉତ୍ପାଦନ ଉପଯୋଗୀ ଅପୃଥକ୍‌ସିଦ୍ଧ ଧର୍ମ-ବିଶେଷ, ତାହା ଶକ୍ତି ବୋଲି କଥିତ । ଋଗ୍‌ବେଦର 'ବାଗାମ୍ଭୃଣୀ ସୂକ୍ତ' (୧୦/୧୨୫), ଏହାର ମୂଳ ଉତ୍ସ । ଖ୍ରୀ.ପୂ. ୨୦୦ ସିନ୍ଧୁ ସଭ୍ୟତା କାଳ, ମାତୃ ରୂପରେ ଶକ୍ତି ଉପାସନା ବା ମାତାଙ୍କୁ ପ୍ରଦାନ କରାଯାଇଛି ଶକ୍ତି ରୂପ ! କାଳାନ୍ତରରେ କଳ୍ପନା କରାଯାଇଛି ଜଣେ ପୁରୁଷ 'ଶିବ', ଶକ୍ତି ତାଙ୍କର ଜନ୍ମ ଦାତ୍ରୀ, ଶିବଶକ୍ତିଙ୍କ ସମ୍ମିଳିତ ରୂପରୁ ଶକ୍ତିବାଦର ସ୍ରୋତ ସୃଷ୍ଟି ହୋଇଛି । ଶକ୍ତି 'ମହାଦେବୀ' ହେବା ବେଳେ ତାଙ୍କ ସହିତ ସମ୍ମିଳିତ ରୂପ 'ମହାଦେବ' ।

ଶକ୍ତିଙ୍କ ସର୍ବପ୍ରଥମ ବର୍ଣ୍ଣନା ଋଗ୍‌ବେଦ, 'ସରସ୍ୱତୀ' ରୂପେ 'ଦେବୀ' ଓ 'ନଦୀ', ତାଙ୍କର ଦୁଇଟି ରୂପ ସାମ୍ନାକୁ ଆସିଛି । ନଦୀ ଦୃଷ୍ଟିରୁ ସ୍ତବ କରାଯାଇଛି: ଅମ୍ବିତମେ ନଦୀ ତମେ ଦେବୀ ତମେ ସରସ୍ୱତୀ । ଅପ୍ରଶସ୍ତା ଇବ ସ୍ମସି ପ୍ରଶସ୍ତିମମ୍ବ ନମସ୍କୃଧି । ଋଗ୍‌ବେଦ, ୨/୪୧/୧୬ । ଅର୍ଥାତ୍ ହେ ନଦୀମାନଙ୍କ ମଧ୍ୟରେ ଶ୍ରେଷ୍ଠ, ଦେବୀମାନଙ୍କ ଅଗ୍ରଗଣ୍ୟ, ପୂଜନୀୟା ମାତା, ଆମ୍ଭେମାନେ ଦରିଦ୍ର । ତୁମେ ଆମ ଠାରେ ଏଭଳି ଦୟାକର, ଯାହା ଫଳରେ କି ଆମେ ଭାଗ୍ୟବାନ ହୋଇ ଉଠିବୁ । (ଭାରତୀୟ ସଂସ୍କୃତି, ୧ମ ଭାଗ, ବୈଦିକ ପର୍ବ, ପୃ ୧୨୦ଷ୍ଠା, ସୁରେନ୍ଦ୍ରନାଥ ଶତପଥୀ) । ଏହା ପରେ ସିଏ 'ଉଷା' ଓ 'ଅଦିତି', ଆଦିତ୍ୟ ବା ସୂର୍ଯ୍ୟଙ୍କ ଜନନୀ ! ଋଗ୍‌ବେଦ 'ବାକ୍‌ସୂକ୍ତ'ର ରୂପାନ୍ତର 'ଶକ୍ତିବାଦ'ର



Source: Author, Digitized by PPRACHIN, SOA

ଆଧାର 'ଦେବୀସୂକ୍ତ' । ବାକ୍‌ସୂକ୍ତରେ ବର୍ଣ୍ଣିତ, ସିଏ ସର୍ବଶକ୍ତିମାନ, ସକଳ ଐଶ୍ୱର୍ଯ୍ୟ ପ୍ରଦାନକାରିଣୀ, ଇଚ୍ଛା, ଜ୍ଞାନ ଓ କ୍ରିୟା ସ୍ୱରୂପିଣୀ ଈଶ୍ୱରୀ । ଚେତନା, ବାକ୍, ବାଣୀ, ପରା, ପଶ୍ୟନ୍ତି, ମଧ୍ୟମା ଓ ବୈଖରୀ ଶକ୍ତି ତାଙ୍କରି ।

ଗରିମାମୟ ବୈଦିକ ବାଙ୍ମୟରେ ତାଙ୍କର ଅନ୍ୟ ଏକ ମହିମମୟୀ ରୂପ 'ରାତ୍ରୀ', ପରାଶକ୍ତି ! ତନ୍ତ୍ର ଭୂମିର ସିଏ ପ୍ରଭୁଶକ୍ତି 'କାଳୀ' ! 'ଶାକ୍ତତନ୍ତ୍ର'ର ମୂଳ ଭିତ୍ତି ରାତ୍ରୀସ୍ୱରୂପିଣୀ ଦେବୀ 'ମହାକାଳୀ' । ବେଦ ପରବର୍ତ୍ତୀ ଭାରତୀୟ ବାଙ୍ମୟ ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦଗ୍ରନ୍ଥ । ତହିଁରେ ଗାୟତ୍ରୀ, ସାବିତ୍ରୀ, ଦୁର୍ଗା, ରାଧା, ସୁଭଗା, ଅମ୍ବା, ଅମ୍ବିକା, ଓ ସୁନ୍ଦରୀ ଆଦି ଅନେକ ରୂପରେ ନିରାଜିତା । 'ଶ୍ୱେତାଶ୍ୱେତର' ବ୍ରହ୍ମଙ୍କ ଅନ୍ତର୍ନିହିତ ଶକ୍ତି ବୋଲି ପ୍ରାଧାନ୍ୟ ଦେଇଛନ୍ତି । ଇଚ୍ଛା, ଜ୍ଞାନ ଓ କ୍ରିୟା ସେହି ଶକ୍ତିଙ୍କ ତ୍ରିବିଧ ରୂପ; ବର୍ଣ୍ଣିତ । କଠୋ, କେନୋ ଓ ଛାଂଦୋଗ୍ୟ ରଚନା ବେଳକୁ 'ଶକ୍ତିଶକ୍ତି ମତୋର ଭେଦଃ', ଶକ୍ତି ଓ ଶକ୍ତିମାନ ଅଭେଦ ଓ ନିତ୍ୟ ଅନୁଭବ କରନ୍ତି ସାଧକ । ମୈତ୍ରେୟୁପନିଷଦ ବେଳକୁ ବ୍ରହ୍ମଙ୍କ ଦୁଇରୂପ, ମୂର୍ତ୍ତ ଓ ଅମୂର୍ତ୍ତ ! ଯିଏ ମୂର୍ତ୍ତ ସିଏ ଅସତ୍ ଓ ଯିଏ ଅମୂର୍ତ୍ତ ସିଏ ସତ୍ । ତଂତ୍ରର ସିଏ ଶକ୍ତି । ବ୍ରହ୍ମଙ୍କ ଶକ୍ତି ଅଚିନ୍ତ୍ୟ ଓ ଆଲୌକିକ ବର୍ଣ୍ଣିତ କଲାବେଳେ ବ୍ରହ୍ମଶକ୍ତି ଚିତ୍ ଶକ୍ତି ସେ ଅଗ୍ନିପରି ସର୍ବତ୍ର ବ୍ୟାପ୍ତ ବୋଲି ବୃହଜ୍ଜାବାଲୋପନ୍ନିଷଦ ବର୍ଣ୍ଣନା କରିଛନ୍ତି । ସେହି ଚିତ୍‌ଶକ୍ତି ଜଗତ ପରିବ୍ୟାପ୍ତ । ସରସ୍ୱତୀ, ଗୌରୀ, ବିଦ୍ୟା, ଶ୍ରୀ ଆଦି ସେହି ଚିତ୍ ପର୍ଯ୍ୟାୟ ଶକ୍ତି । ଚିତ୍ ଆନନ୍ଦସ୍ୱରୂପ ଓ ସରସ୍ୱତୀ ଚିଦାନଂଦମୟୀ । ତାଙ୍କ ଠାରୁ ଯାହାର ଜନ୍ମ ତାହା ଚିଦାନଂଦମୟ । ଶକ୍ତିଙ୍କ ବିଭିନ୍ନ ସ୍ୱରୂପର ବିବେଚନ କରାଯାଇଥିବା ଉପନିଷଦମାନେ ଅଟନ୍ତି; ୧-ସରସ୍ୱତୀ ରହସ୍ୟୋପନିଷଦ, ୨-ସୀତୋପନିଷଦ, ୩- ସୌଭାଗ୍ୟଲକ୍ଷ୍ମୀ ଉପନିଷଦ, ୪-ତ୍ରିପୁରୋପନିଷଦ, ୫- ତ୍ରିପୁରାତାପିନ୍ୟୁପନିଷଦ, ୬-ଭାବତୋପନିଷଦ ଏବଂ ୭-ଦେବ୍ୟୁପନିଷଦ ପ୍ରଭୃତି ଶକ୍ତିବାଦର ପ୍ରତିନିଧିତ୍ୱ କରନ୍ତି ।

ତନ୍ତ୍ରରେ 'ସୂକ୍ଷ୍ମବାକ୍', ବ୍ୟାକରଣାଗମରେ ସେହି ଶକ୍ତି 'ବାକ୍' ରୂପା । ସର୍ଜନକ୍ରିୟା ପାଇଁ ସେଇ 'ମାୟାବୃତ୍ତି' ପ୍ରକଟ ହୋଇଛନ୍ତି । ସିଏ ଅବ୍ୟକ୍ତ ତ୍ରିଗୁଣ ବିନ୍ଦୁ । ବ୍ୟାକରଣ ଆଗମରେ ଶକ୍ତି ବିନ୍ଦୁରୂପା । ବିନ୍ଦୁର ଜଡ଼ଅଂଶ 'ବୀଜ', ଚୈତନ୍ୟାଂଶ ଅପରବିନ୍ଦୁ ଓ ମିଶ୍ରାଂଶ ନାଦ ଅଟନ୍ତି । ଯେଉଁ ଆଦିତତ୍ତ୍ୱକୁ 'ବ୍ରହ୍ମ' ସଂଜ୍ଞା ଦେଇଛନ୍ତି ଆଦିଶଙ୍କରଚାର୍ଯ୍ୟ, ସେହି ଶ୍ରୁତିଶୀର୍ଷ ନିତ୍ୟ ସ୍ୱରୂପ ଅଟନ୍ତି ତନ୍ତ୍ରର 'ଶକ୍ତି' । ସଗୁଣୋପାସନା ଭୂମିରେ ସେହି ଶକ୍ତିଙ୍କୁ 'ଦୁର୍ଗା' ବୋଲି ସମ୍ବୋଧିତ କରିଛନ୍ତି । ସିଏ ବ୍ରହ୍ମ 'ଚିତ୍' ସ୍ୱରୂପ କିଂତୁ ସିଏ 'ଚିଦ୍ ଚିନ୍ମୟୀ' । ପ୍ରଭେଦ ଏତିକି ।

ଶାକ୍ତ ଉପାସନାର ପକ୍ଷ ତିନୋଟି । ଆଧ୍ୟାତ୍ମିକ, ଦାର୍ଶନିକ ଓ କ୍ରିୟାପକ୍ଷ; ରୂପକୁ ଅସଂଖ୍ୟ ଭାରତୀୟ ଗ୍ରନ୍ଥ କରିଛନ୍ତି ପ୍ରକାଶିତ । ପ୍ରାୟ ସମସ୍ତ ପୁରାଣ-ସାହିତ୍ୟ ଶକ୍ତିବାଦ



Source: Author, Digitized by PPRACHIN, SOA

ପ୍ରଚାର ଗ୍ରନ୍ଥ । ସମସ୍ତ ଭାରତୀୟ ସାଧନାର କଂଚି ତନ୍ତ୍ର । ତନ୍ତ୍ର ଅର୍ଥ-ତନୟତି ବିସ୍ତାରୟିତ ଜ୍ଞାନମନେନ ଇତି ତନ୍ତ୍ରମ୍ । ଶିବଙ୍କ ପଞ୍ଚ ମୁଖରୁ ତାହାର ଆଗମନ ହେତୁ ତାହାକୁ କହନ୍ତି 'ଆଗମ' । ତନ୍ତ୍ର ସାଧନା ଶାସ୍ତ୍ର ଓ ଗୁହ୍ୟ ବିଦ୍ୟା । ଯୋଗ୍ୟଗୁରୁ ସୁଯୋଗ୍ୟ ପାତ୍ର (ଶିଷ୍ୟ)କୁ ଏହି ବିଦ୍ୟାରତ୍ନ କରନ୍ତି ଦାନ ହିନ୍ଦୁଧର୍ମର ସମସ୍ତ ସଂପ୍ରଦାୟ ଶାକ୍ତ, ସୌର, ଶୈବ, ବୈଷ୍ଣବ, ଗାଣପତ୍ୟ ଠାରୁ ଆରମ୍ଭ କରି ବୌଦ୍ଧ ଓ ଜୈନ ପର୍ଯନ୍ତ ସମସ୍ତେ ତନ୍ତ୍ର ଉପାସକ । କାଶ୍ମୀର ଓ ଦକ୍ଷିଣ ଭାରତୀୟ ବିନ୍ଧ୍ୟାଚଳ ପ୍ରଭୃତିରେ ତାହାକୁ କହନ୍ତି ମନ୍ତ୍ର ଶାସ୍ତ୍ର । ବଂଗଳା ଓ ଆସାମ ପ୍ରଦେଶରେ ତନ୍ତ୍ର ଶାସ୍ତ୍ର ଭାବେ ଏହା ବେଶ ଆଦୃତ । ଭାରତୀୟ ଧର୍ମଧାରାକୁ ବାନ୍ଧି ରଖିଛି ମାତୃ (ଶକ୍ତି) ସଂସ୍କୃତି । ବେଦର ଉଷା, ସରସ୍ୱତୀ, ବାକ୍ ଓ ଦେବୀସୂକ୍ତ ଏହାର ଆଦି ସ୍ରୋତ । ଅଥର୍ବ ବେଦରେ ତାନ୍ତ୍ରିକ ସାଧନା ଅପର୍ଯ୍ୟାପ୍ତ ଏବଂ ଉପନିଷଦରେ ଶକ୍ତି 'ହୈମବତୀ', ବ୍ରହ୍ମବିଦ୍ୟା ରୂପେ ବର୍ଣ୍ଣିତା ହୋଇଛନ୍ତି । ବେଦାନ୍ତର ସିଏ 'ମାୟା' । ମୀମାଂସାର ସିଏ 'ଧର୍ମ' । ସାଂଖ୍ୟରେ ସିଏ ଅବ୍ୟକ୍ତ 'ପ୍ରକୃତି' ଏବଂ ବୌଦ୍ଧଙ୍କ 'ତାରା' ସେହି ମହାଶକ୍ତି ଅଟନ୍ତି ।

ବୈଦିକ ଯୁଗ ସହିତ ତନ୍ତ୍ର ଯୁଗର ବୟସ ସମାନ । ସର୍ବ ପ୍ରଥମ ତାନ୍ତ୍ରିକ ସଂପ୍ରଦାୟ ଶାକ୍ତ ଓ ସର୍ବ ପ୍ରଥମ ତାନ୍ତ୍ରିକ ମତ ଶକ୍ତିମତ । କାଳାନ୍ତରରେ ତାହା କୌଳ, ଶୈବ, କାପାଳିକ, ପାଶୁପତ, ବୈଷ୍ଣବ ଓ ଗାଣପତ୍ୟାଦି ସଂପ୍ରଦାୟ ହୋଇଛନ୍ତି ସୃଷ୍ଟି । ୧୨୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏହି ମତର ସ୍ରୋତ ଭାରତୀୟ ଧର୍ମଧାରା ଓ ଜୀବନଧାରାକୁ ପ୍ରଭାବିତ କରି ଆସିଛି । ଶାକ୍ତବାଦ ଗର୍ଭରୁ ଜନ୍ମ ସର୍ବପ୍ରଥମ ତନ୍ତ୍ର 'ଶାକ୍ତତନ୍ତ୍ର' । ଏହି ତନ୍ତ୍ର ବେଦାନୁକୂଳ ଏବଂ ଅଦ୍ୱୈତବାଦର ଗମ୍ଭୀର ସାଧନା ଶାସ୍ତ୍ର । ବେଦାନ୍ତର ସିଦ୍ଧାନ୍ତ ଏହାର କ୍ରିୟାର ପ୍ରତୀକ ଓ ତଦନୁଯାୟୀ ରୀତି । ଦ୍ୱୈତ ମାର୍ଗରୁ ତାହା ଅଦ୍ୱୈତ ଆଡ଼କୁ କରାଇଥାଏ ଅଗ୍ରସର ଏବଂ ଦ୍ୱୈତର ଏକତ୍ୱରେ ଲୟ ଏହାର ଆଭିମୁଖ୍ୟ ।

ଆଦିଶକ୍ତିର ଆଦି ରୂପ ମାତା କିନ୍ତୁ ଆଦିଶକ୍ତିର ଆଦିବିକାଶ ମୈଥୁନ-ବିଷୟକ, ଅର୍ଥାତ୍ ଆନନ୍ଦ ଓ ରତି ପାଇଁ, ବିଶ୍ୱବାସନା ଏହା । ପାରିବାରିକ, ବ୍ୟବହାରିକ, ସାମାଜିକ ତଥା ସାଂସାରିକ ଯେତେବେଳେ ଲୌକିକ ସମ୍ବନ୍ଧ ରହିଛି; ଏପରି କି ପୂଜା ଉପାସନା ଓ ସାଧନା ଆଦିଦ୍ୱାରା ଦେବତାଙ୍କ ଠାରେ ଯେତେ ସମ୍ବନ୍ଧ ରହିଛି, ସେସମସ୍ତ ଆକର୍ଷଣାତ୍ମକ, କାମାତ୍ମକ ତଥା ମୈଥୁନାତ୍ମକ । ଲୌକିକ ଓ ପାରଲୌକିକ ଯେତେ ଯେତେ ଆନ୍ତରିକ ଓ ବାହ୍ୟ ସମ୍ବନ୍ଧ ମଧ୍ୟ ସେ ସମସ୍ତରେ କାମ ଶକ୍ତିର ହିଁ ରହିଛି ପ୍ରାଧାନ୍ୟ । ସମସ୍ତ ବିଶ୍ୱରେ ନିବୃତ୍ତି ନିଜକୁ ପ୍ରବୃତ୍ତି ମାର୍ଗରେ ସ୍ଥାପିତ କରିବାକୁ ଚାହୁଁଛି । ଏହାଦ୍ୱାରା ଭେଦର ବରଣ ହୁଏ କେବଳ ଅଭେଦ- ସିଦ୍ଧି ଲାଗି । ଏହା ମହାମାୟା, ଏହି ଅଜ୍ଞାନ ଓ ଏହି ଅଟେ



Source: Author, Digitized by PPRACHIN, SOA

ଅବିଦ୍ୟା । ଯାହା ମଧ୍ୟରେ ଜୀବ ସକଳ ଘୂର୍ଣ୍ଣନରତ । ମିଥୁନର ନାଶ ପାଇଁ ଯଦି କିଛି ସାଧନ ଅଛି ତାହା ମୈଥୁନ କେବଳ ! ଦ୍ୱଂଦ୍ୱର ବିନାଶ ଦ୍ୱଂଦ୍ୱରେ ଘଟିପାରେ କେବଳ ! ଦ୍ୱଂଦ୍ୱର ମାର୍ଗ ଦେଇ ସାଧକକୁ ଅଦ୍ୱୈତ ଆଡ଼କୁ ଅଗ୍ରସର ହେବାକୁ ହୁଏ । ଭୂମି ଉପରେ ପଡ଼ିଗଲେ ମଧ୍ୟ ସେହି ଭୂମିକୁ ଧରି ଉଠି ଠିଆ ହୋଇ ହୁଏ । ଭୌତିକ ବିଷୟମାନ ଆବଶ୍ୟକ, କିନ୍ତୁ ତାହା ସାଧନ ରୂପ ରୂପେ । ସାଧନ ଦୃଷ୍ଟିରୁ ଦେଖିଲେ ଭୋଗ ଦ୍ୱାରା ତୃପ୍ତି ହେବା ପରେ ହିଁ ବ୍ୟକ୍ତି ହୁଏ ସାଧକ, ଅନ୍ୟଥା ନୁହେଁ । ଭୋଗ୍ୟ ବସ୍ତୁକୁ ସାଧନ ରୂପରେ ନିଜର କରି ସାଧକ ସାଧନାରେ ଉଚ୍ଚତମ ଅବସ୍ଥାକୁ ହୋଇଥାଏ ଉପଲବ୍ଧ । ଶାକ୍ତ ମତର ଏହି ସିଦ୍ଧାନ୍ତ ପଛରେ ଛପି ରହିଛି ଅତ୍ୟନ୍ତ ଗୂଢ଼ ଅଧ୍ୟାତ୍ମିକ ଓ ଦାର୍ଶନିକ ରହସ୍ୟ । ଶାକ୍ତ ମତରେ କାଳାନ୍ତରରେ ସର୍ବ ପ୍ରଥମ ଯେଉଁ ମତ ହୋଇଛି ଆବିର୍ଭାବ, ତାହା 'କୌଳମତ' । କୌଳମତ ଶାକ୍ତମତ ପରି ଅଦ୍ୱୈତବାଦୀ ଏବଂ କୌଳସିଦ୍ଧାନ୍ତ ଦିଏ ଶକ୍ତି ସହିତ ଶିବଙ୍କୁ ସମାନ ମହତ୍ୱ । ଏହି ଦୃଷ୍ଟିରୁ ଶୈବ ଓ ଶାକ୍ତ, ଦୁଇଟି ପରମ୍ପରାର ପୋଷାକ । ଜଡ଼ତତ୍ତ୍ୱ ଓ ଚେତନ ତତ୍ତ୍ୱ କିମ୍ୱା ଭୂତତତ୍ତ୍ୱ ଓ ଦେବତତ୍ତ୍ୱ ବୈଦିକ ବିଜ୍ଞାନ ଭାଷାରେ ଏବଂ ଯାହା ଦାର୍ଶନିକ ଭାଷାରେ ପୁରୁଷ ଓ ପ୍ରକୃତି, କୌଳମତରେ ତାହା ଶିବ ଓ ଶକ୍ତି ଅଟନ୍ତି । ଯାହାଙ୍କ ପ୍ରତୀକାତ୍ମକ ରୂପ ଷଟ୍‌କୋଣ । ଉର୍ଦ୍ଧ୍ୱ ତ୍ରିକୋଣ ଶିବ ଏବଂ ଅଧୋତ୍ରିକୋଣ ଶକ୍ତି । 'କୌଳ' ଶବ୍‌ଦ 'କୁଳ' ଶବ୍‌ଦରୁ ତିଆରି, ଯାହା ଅର୍ଥ କୁଣ୍ଡଳିନୀ ଶକ୍ତି । କୁଣ୍ଡଳିନୀ ଲାକ୍ଷଣିକ ଶବ୍‌ଦ । ଯେଉଁ ଶକ୍ତି ସହିତ ଏହି ଲାକ୍ଷଣିକ ଶବ୍‌ଦର ହୋଇଛି ପ୍ରୟୋଗ, ତାହା କାମଶକ୍ତି । ଶାକ୍ତ ମତର ମାତୃଶକ୍ତି, କୌଳମତରେ ତାହା କାମଶକ୍ତି ।

କୌଳ ମୌଳିକ ସିଦ୍ଧାନ୍ତ, ସମସ୍ତ ବାସନା ବା ମୂଳ ପ୍ରବୃତ୍ତି ତିନି ଭାଗରେ ବିଭକ୍ତ ହୋଇଛି । ସେଗୁଡ଼ିକ ବିତୈଷଣା, ଦାରୈଷଣା ଓ ଲୋକୈଷଣା । ଏହି ତ୍ରୟ ମଧ୍ୟରେ ଦାରୈଷଣା ମୁଖ୍ୟ ଏବଂ ଅନ୍ୟ ଦୁଇ ଏହାରି ଅନ୍ତର୍ଭୁକ୍ତ । ଏହା ଶ୍ରେଷ୍ଠ ଆକର୍ଷଣ ଓ ଏହି ଆକର୍ଷଣ ସ୍ତ୍ରୀ-ପୁରୁଷ ସଂଯୁକ୍ତିରେ ପର୍ଯ୍ୟବେସିତ । ଆକର୍ଷଣ କେବଳ ମିଥୁନଜନ୍ୟ ଅଟେ । ଆଦିଶକ୍ତିଙ୍କ ସ୍ୱରାଜ୍ୟ 'କାମ' ଓ ସହଚର କାମନା । ସହଚର ପୁରୁଷ ବା ସ୍ତ୍ରୀ ହୋଇପାରେ । ଆନନ୍ଦ ହିଁ ମାନବ ଜୀବନର ସର୍ବସ୍ୱ । ସମସ୍ତ କାମର ପ୍ରାଣ ଆନନ୍ଦ ଓ ଆନନ୍ଦ ମାନବର ପ୍ରେରଣା ଶକ୍ତି । ଏହି ଅସ୍ତିତ୍ୱ ବୃଦ୍ଧି ଓ ନାଶ ଆଦି ନିର୍ଭର । ଏହାର ପ୍ରତ୍ୟକ୍ଷ ଅନୁଭବ ମୈଥୁନ । ମୈଥୁନ ଆନନ୍ଦ ସାଂସାରିକ ଜୀବନରେ ପରାକାଷ୍ଠାର ଆନନ୍ଦ । କୌଳମତରେ ସମସ୍ତ ପ୍ରକାର ଆନନ୍ଦ ଏହି ଆନନ୍ଦର ରୂପାନ୍ତର । ତାହା ବିଶ୍ୱବାସନା । ବିଶ୍ୱ ବାସନାର ମୂର୍ତ୍ତି 'ସ୍ତ୍ରୀ' । ସେହି କାରଣରୁ କୌଳମତରେ ସ୍ତ୍ରୀକୁ ଗୌରବିତ ଓ ମହତ୍ତ୍ୱପୂର୍ଣ୍ଣ ଭାବେ ସ୍ୱୀକାର କରାଯାଇଛି । ସମସ୍ତ ତାନ୍ତ୍ରିକ ସାଧନାରେ ସ୍ତ୍ରୀକୁ ମୂଳ ରୂପେ ଗ୍ରହଣ କରାଯାଇଛି ।



Source: Author, Digitized by PPRACHIN, SOA

ସମସ୍ତ ବାସନା ଓ ବୃତ୍ତିର ମୂଳ 'କାମ' ହେତୁ କାମକୁ ଆଦିଦେବ ସଂଜ୍ଞା ପ୍ରଦାନ କରାଯାଇଛି । ବୈଦିକ ଦୃଷ୍ଟିକୋଣରୁ ଆଦିଦେବ ମହାଦେବ, ଅର୍ଥାତ୍ କାମଦେବ ସ୍ୱୟଂଶିବ । ଏଣୁ କୌଳବାଦୀ ସମସ୍ତ ସୃଷ୍ଟିର ମୂଳ, 'ଶିବଶକ୍ତି ସମାଯୋଗାଦ୍ ଜାୟତେ ସୃଷ୍ଟିକଳ୍ପନା' ବୋଲି ଗ୍ରହଣ କରନ୍ତି । କୌଳ ମତରେ ଆଦି ବାସନା ତାହା, ଯାହା ଆଧ୍ୟାତ୍ମିକ ଦୃଷ୍ଟିରୁ ପୁରୁଷ ଓ ପ୍ରକୃତିଙ୍କ ସଂପର୍କ ! ଆକର୍ଷଣ ଦ୍ୟୋତିତ ବା ଶାରୀରିକ ରୂପରେ ସ୍ତ୍ରୀ ପୁରୁଷ ସମ୍ଭୋଗରେ ପରିଣତ ! କୌଳ ଦୃଷ୍ଟିରେ 'କାମ' ଅସ୍ତିତ୍ୱର କାମ ନୁହେଁ, ତାହା ସ୍ତ୍ରୀ-ପୁରୁଷ ସମ୍ବନ୍ଧାତ୍ମକ । ସମସ୍ତ ଜଗତ୍ ଶୈବ-ଶାକ୍ତ ଜଗତ୍, ସେମାନଙ୍କ ମତ, ଶକ୍ତି ଓ ଶକ୍ତିମାନଙ୍କ ଠାରୁ ଏହାର ଉତ୍ପତ୍ତି ।

ସ୍ତ୍ରୀ-ପୁରୁଷଙ୍କ ଠାରୁ ପୃଥିବୀ ଉତ୍ପନ୍ନ ଏବଂ ପୃଥିବୀ ସ୍ତ୍ରୀ ପୁଂସାତ୍ମକ । ପରମାତ୍ମା ଶିବ ଓ ମାୟା ଶିବା । ପୁରୁଷ ପରମେଶ୍ୱର, ପରମେଶ୍ୱରୀ ପ୍ରକୃତି । ଶିବ କାମେଶ୍ୱର ଓ କାମେଶ୍ୱରୀ ଶକ୍ତି । ସମସ୍ତ ପୁରୁଷ କାମେଶ୍ୱର ଏବଂ ନାରୀ କାମେଶ୍ୱରୀ । ଏହି ଦୁହିଁଙ୍କ ମିଥୁନାତ୍ମକ ସମ୍ବନ୍ଧ ଅଟେ ମୂଳ ବାସନା । ତାହା ମୂଳ 'ଆକର୍ଷଣ' ବା ଅଟେ 'କାମ' ।

ଶିବ ଶକ୍ତି ସଂଯୋଗରୁ ସୃଷ୍ଟି ଉତ୍ପତ୍ତିପରି ଶବ୍ଦ ଓ ଅର୍ଥର ଘଟିଛି ଉତ୍ପତ୍ତି । ନିବୃତ୍ତି ଓ ପ୍ରବୃତ୍ତି ଶକ୍ତି ମଧ୍ୟ ନିଷ୍ପନ୍ନ ହୋଇଛି । ଶବ୍‌ଦର ନିଷ୍ପତ୍ତି ଓ ଜପକୁ ମଧ୍ୟ ମୈଥୁନ ସଂଜ୍ଞାରେ ସ୍ପଷ୍ଟ କରାଯାଇଛି । ଜପ ସାଧକଙ୍କ ଦୁଇ ଓଷ୍ଠ ମିଳନରେ ଗୋଟିଏ ଶିବ ଓ ଅନ୍ୟଟି ଶକ୍ତି । ଦୁଇ ଓଷ୍ଠର ହଲିବା ମୈଥୁନ ଓ ନିର୍ଗତ ଶବ୍‌ଦ 'ବିଂଦୁ' ସ୍ୱରୂପ ! ତହିଁରୁ ଉତ୍ପନ୍ନ ଦେବତା ସାଧକଙ୍କ ପାଇଁ ପୁତ୍ର । ସର୍ବ ପ୍ରଥମେ କୌଳ ମତ ହିଁ ଘୋଷିତ କରିଛି ପିଣ୍ଡ (ମାନବ ଦେହ) ଅଟେ ବ୍ରହ୍ମଣ୍ଡର ସଂକ୍ଷିପ୍ତ ରୂପ, ବ୍ରହ୍ମାଣ୍ଡେଽପ୍ୟସ୍ତି, ଯତ୍ କିଂଚିତ୍ ତତ୍ ପିଣ୍ଡେଽପ୍ୟସ୍ତି ସର୍ବଥା, ମନୁଷ୍ୟ ଦେହରେ ବ୍ରହ୍ମାଣ୍ଡର ସମସ୍ତବସ୍ତୁ ରହିଅଛି । ସର୍ବାଧିକ ବିକଶିତ ଓ ସର୍ବଶ୍ରେଷ୍ଠ ମାନବ ଦେହ ଯନ୍ତ୍ର, ପଞ୍ଚତତ୍ତ୍ୱ ନିର୍ମିତ । ତହିଁରେ ତିନି ତତ୍ତ୍ୱ ସର୍ବାଧିକ ମହତ୍ତ୍ୱଯୁକ୍ତ । ପ୍ରାଣତତ୍ତ୍ୱ, ମନସ୍ତତ୍ତ୍ୱ ଓ ବିନ୍ଦୁତତ୍ତ୍ୱ । ସମସ୍ତ ଯୋଗ-ତାନ୍ତ୍ରିକ ସାଧାନର ଆଧାର । ଦୁଇଟି କାରଣରୁ ମାନବ ଶରୀରକୁ ଶ୍ରେଷ୍ଠ ଓ ସର୍ବାଧିକ ମହତ୍ୱ ପ୍ରଦାନ କରନ୍ତି କୌଳ । ଗୋଟିଏ ହେଲା-ଚୌରାଅଶି ଲକ୍ଷ ଗର୍ଭଭ୍ରମଣ ପରେ ବଡ଼ ପୁଣ୍ୟ ହେତୁ ଚୌରାଅଶୀ ଆଙ୍ଗୁଳି ମାନବ ଦେହ ହୁଏ ପ୍ରାପ୍ତି । ବିଶ୍ୱ ପରିବ୍ୟାପ୍ତ ଚିନ୍ମୟୀ ପରାଶକ୍ତି ନିଜ ଶ୍ରେଷ୍ଠ ଲୀଳା ମାନବ ଦେହକୁ ଆଶ୍ରୟ କରି କରନ୍ତି ପ୍ରକଟ । ଶ୍ରୀ ବିଷ୍ଣୁଙ୍କ ଅବତାର ଅନେକ କିନ୍ତୁ ସର୍ବାଧିକ ଅବତାର ଗ୍ରହଣ କରିଛନ୍ତି ମାନବ ରୂପ, ଯଥା-ବାମନ, ରାମ, କୃଷ୍ଣ, ପର୍ଶୁରାମ ଓ ବୁଦ୍ଧ ପ୍ରଭୃତି । ସମସ୍ତ ଧର୍ମ ସାଧନା ଓ ଶାସ୍ତ୍ର ତଥା ସାହିତ୍ୟ ସାଧନା ମାନବ ଶରୀରକୁ ନେଇ ହୋଇଛି ବିକଶିତ ଏବଂ ସମୃଦ୍ଧ ।



Source: Author, Digitized by PPRACHIN, SOA

ଦ୍ୱିତୀୟ-ତତ୍ତ୍ୱଦର୍ଶୀଙ୍କ ଅନୁଭବ ଯେ ଭଗବାନ ଅନ୍ୟ କେଉଁଠି ନାହାନ୍ତି, ତାଙ୍କୁ ହୃଦୟ ଭିତରୁ ଖୋଜ, ପାଇବ ! ଈଶ୍ୱରଙ୍କ ଆବାସସ୍ଥଳ ମନୁଷ୍ୟର ହୃଦୟ ।

ମାନବ ଶରୀର ଦୁଇଭାଗ, କଣ୍ଠସ୍ଥଳରୁ ଉପରକୁ ଜ୍ଞାନଖଣ୍ଡ ଏବଂ ତଳକୁ କର୍ମଖଣ୍ଡ । ଜ୍ଞାନଖଣ୍ଡର ରହିଛି ଜ୍ଞାନେନ୍ଦ୍ରିୟମାନ ଏବଂ କର୍ମ ଖଣ୍ଡରେ ଖଂଜା ଯାଇଛି କର୍ମେନ୍ଦ୍ରିୟ । ଜ୍ଞାନଖଣ୍ଡରେ ମୂଳ କେନ୍ଦ୍ର ସହସ୍ରାର ଚକ୍ର ଏକ କର୍ମଖଣ୍ଡର ମୂଳକେନ୍ଦ୍ର ମୂଳାଧାର ଚକ୍ର । ସହସ୍ରାରରେ ଶିବ ଏବଂ ମୂଳାଧାରରେ ବାସ କରନ୍ତି ଶକ୍ତି । ମୂଳାଧାର ଚକ୍ରରେ ବାଳ ଠାରୁ ସରୁ ସର୍ପ କୁଣ୍ଡଳୀପରି ଗୁରେଇ ହୋଇ ଗୋଲାକାର ଏକ ନାଡ଼ୀ ତନ୍ତୁ, ମହାଜୀବନୀ ଶକ୍ତି ପ୍ରସୁପ୍ତ ଅବସ୍ଥାରେ ବିଦ୍ୟାମାନ ରହିଛି । ସେହି ତନ୍ତୁ ରୂପ ସର୍ପକୁଣ୍ଡଳୀପରି ହୋଇଥିବା ହେତୁ, ସେହି ପରମଶକ୍ତିକୁ କୌଳବାଦୀ 'କୁଣ୍ଡଳିନୀ' ବୋଲି ସଂଜ୍ଞା ଦେଇଛନ୍ତି । କୁଣ୍ଡଳିନୀ ଶକ୍ତି ଆଦି ଶକ୍ତିଙ୍କ ବ୍ୟଷ୍ଟିରୂପ, ଯାହାଙ୍କ ସମଷ୍ଟି ରୂପ ସଂପୂର୍ଣ୍ଣ ବ୍ରହ୍ମାଣ୍ଡର ଚୈତନ୍ୟ ଓ ଚିନ୍ମୟ ଚେତନା ରୂପେ କ୍ରିୟାଶୀଳ ।

ମାତୃଗର୍ଭସ୍ଥ ଶିଶୁଠାରେ କୁଣ୍ଡଳିନୀ ଶକ୍ତି ଥାଏ ଜାଗ୍ରତ । ମାତ୍ର ଶିଶୁ ଭୂମିଷ୍ଠ ହେବା ମାତ୍ରେ ତାହା ହୋଇ ଯାଏ ନିଦ୍ରିତ । ମନୁଷ୍ୟର ଜାଗ୍ରତ ଅବସ୍ଥାରେ କୁଣ୍ଡଳିନୀ ଶକ୍ତି ରହେ ପ୍ରସୁପ୍ତ ମାତ୍ର ସ୍ୱପ୍ନାବସ୍ଥା ବା ସୁଷୁପ୍ତି ଅବସ୍ଥା ବେଳେ ରହେ ତ୍ରଂଦ୍ରିଳ । ସ୍ଥୂଳ ଶରୀର ସହିତ ତାହାର ପ୍ରଥମ ଅବସ୍ଥା ଓ ଦ୍ୱିତୀୟ ଅବସ୍ଥା ଘଟିଥାଏ ସୂକ୍ଷ୍ମ ଶରୀର ସହିତ । ସାଧନା ଦ୍ୱାରା ଯେତେବେଳେ ସିଏ ଜାଗ୍ରତ ହୁଏ ତାହାର ସମ୍ବନ୍ଧ ହୁଏ କାରଣ-ଦେହ ସହିତ । ପୂର୍ବରୁ ସୂଚିତ କୌଳ ମତର ମୂଳ ଲକ୍ଷ୍ୟ ଅଦ୍ୱୈତଲାଭ । ଅର୍ଥାତ୍, ଜୀବ ଭାବରୁ ମୁକ୍ତି ଓ ପରମ ନିର୍ବାଣ ପ୍ରାପ୍ତି ।

ଅଦ୍ୱୈତ ଲାଭ ହୁଏ ଶରୀରସ୍ଥ ଶିବଶକ୍ତିଙ୍କ ମିଳନରେ, ସାମରସ୍ୟରେ ଓ ଯୋଗରେ ! ତାହାକୁ କୁଣ୍ଡଳିନୀ ଯୋଗ କୁହାଯାଇଛି । ସମସ୍ତ ଯୋଗ ମଧ୍ୟରେ ଏହା ଏପରି ଏକ ଯୋଗ ଯାହା ତନ୍ତ୍ରର ଗୂହ୍ୟ ତତ୍ତ୍ୱ ଆଧାରିତ । ତେଣୁ ଏହାକୁ ମହାଯୋଗ ଓ ପରମଯୋଗ ବୋଲି ହୋଇଛି କଥିତ । ଯେଉଁଠି ସମାପ୍ତ ହୁଏ ପତଂଜଳି ଯୋଗ, ସେଇଠାରୁ ଆରମ୍ଭ ହୁଏ କୁଣ୍ଡଳିନୀ ଯୋଗ । କୁଣ୍ଡଳିନୀ ଯୋଗ ସାଧନା ଚାରି ଚରଣଯୁକ୍ତ । ପ୍ରଥମ ଚରଣ - କୁଣ୍ଡଳିନୀ ଶକ୍ତିର ଜାଗରଣ, ଦ୍ୱିତୀୟ ଚରଣ-କୁଣ୍ଡଳିନୀ ଶକ୍ତିର ଉତ୍‌ଥାନ, ତୃତୀୟ ଚରଣ-ଚକ୍ରମାନଙ୍କୁ ଭେଦନ ଏବଂ ଚତୁର୍ଥ ଚରଣ-ସହସ୍ରାର ସ୍ଥିତ ଶିବଙ୍କ ସହିତ ସାମରସ୍ୟ ବା ମହାମିଳନ ଘଟିବା !

ଯୋଗ-ତନ୍ତ୍ରର ବାହ୍ୟ ଓ ଆଭ୍ୟନ୍ତର, ଦୁଇ ପ୍ରକାର କ୍ରିୟା ଦ୍ୱାରା ସଂପୂର୍ଣ୍ଣ ହୁଏ କୁଣ୍ଡଳିନୀ ଯୋଗ । ପୂର୍ବକୌଳ ଓ ଉତ୍ତର କୌଳ, ଦୁଇ ଭାଗରେ ବିଭକ୍ତ କୌଳ ମତ ।



Source: Author, Digitized by PPRACHIN, SOA

ସମୟାଚାରୀ ସାଧନା ମାର୍ଗ ପୂର୍ବକୌଳ ଏବଂ ଉତ୍ତର କୌଳ ବାମାଚାରୀ ମାର୍ଗ । ଦୁଇଟି ଯାକ ମାର୍ଗରେ ହୁଏ ନାରୀ ପ୍ରଜନନେନ୍ଦ୍ରିୟ ପୂଜା । ଦୁଇ ମାର୍ଗୀ କରିଥାନ୍ତି ପଞ୍ଚମକାର ପୂଜା । ଏହି ଯୋଗର ପ୍ରତ୍ୟେକ କ୍ରିୟା ଯୌନାଚାର ବା ବାସନା ଦ୍ୱାରା ପ୍ରତିଷ୍ଠିତ । କିନ୍ତୁ ଏହାର ପୃଷ୍ଠଭୂମି ପୂର୍ଣ୍ଣ ରୂପରେ ଦାର୍ଶନିକ ଓ ଆଧ୍ୟାତ୍ମିକ ।

କର୍ମଯୋଗ, ଜ୍ଞାନଯୋଗ, ଭକ୍ତିଯୋଗ, ରାଜଯୋଗ, ସାତତ୍ୟ ଯୋଗ ଆଦି ସମସ୍ତ ଯୋଗ କୁଣ୍ଡଳିନୀରେ ସମାବେଶ ହୋଇଛି । ଏହାକୁ ଦିବ୍ୟଯୋଗ ବୋଲି କୁହାଯାଇଛି । ସର୍ବାଧିକ ପ୍ରକାର ବ୍ୟକ୍ତିତ୍ୱମାନଙ୍କ ଅନ୍ତର୍ବିକାଶ ଘଟେ । ଅନ୍ତର୍ଯାତ୍ରା ସ୍ଥୁଳତମ ଆଧାରରୁ ଆରମ୍ଭ ହୋଇ ସୂକ୍ଷ୍ମରୁ ସୂକ୍ଷ୍ମ ହୋଇ ସୂକ୍ଷ୍ମାତିସୂକ୍ଷ୍ମର ଅତିକ୍ରମଣ କରି ପରମ ସତ୍ୟଠାରେ ପହଂଚି ଥାଏ ।

କୁଣ୍ଡଳିନୀ ସାଧନା ଅନ୍ତରିକ ରୂପାନ୍ତରିଣ ଏକ ବୈଜ୍ଞାନିକ ପ୍ରକ୍ରିୟା । ଅସ୍ତିତ୍ୱଗତ ରୂପାନ୍ତର ଘଟେ । ଶେଷରେ ବ୍ୟକ୍ତିତ୍ୱ ଲୁଚିଯାଏ । ଅନନ୍ତ ରହସ୍ୟମୟ ଅସ୍ତିତ୍ୱରେ ଏକରସ ହୋଇଯାଏ ବ୍ୟକ୍ତିତ୍ୱ, ଜୀବନସ୍ରୋତ ସମସ୍ତ ସୀମା, ବିରୋଧ, ଦ୍ୱନ୍ଦ୍ୱ ଓ ଯନ୍ତ୍ରଣାକୁ ଅତିକ୍ରମ କରିଯାଇ ଶାନ୍ତ ହୋଇଯାଏ । ପରମ ସତ୍ୟର ଉପଲବ୍ଧି ମଧ୍ୟରେ ନିଜେ ସତ୍ୟର ଜୀବନ୍ତ ଜ୍ୟୋତି ପାଲଟି ଥାଏ ।

କୁଣ୍ଡଳିନୀ ପରାଶକ୍ତି । ହୃଦୟ, ମସ୍ତିଷ୍କ ଓ ନାଭି ପରାଶକ୍ତିଙ୍କ ତ୍ରିକେନ୍ଦ୍ର ଅଟେ 'ତ୍ରିପୁର' । ଇଚ୍ଛା, ଜ୍ଞାନ ଓ କ୍ରିୟା ରୂପରେ 'ତ୍ରିପୁରା' ଶରୀରରେ କରିଛନ୍ତି ଅବସ୍ଥାନ । ମାନବ ବ୍ୟତୀତ ଦେବତା ମଧ୍ୟ ହୋଇ ନାହାନ୍ତି ଏଇ ତ୍ରିଧାରା ପ୍ରାପ୍ତ ! ସଂସାରରେ ସମସ୍ତଙ୍କ ମଧ୍ୟରେ ମାନବ ଶ୍ରେଷ୍ଠ କେବଳ ଏହି କୁଣ୍ଡଳିନୀ ଲାଗି । ପରାତ୍ପର ପରମେଶ୍ୱର ନର ଦେହ ବ୍ୟତୀତ ଅନ୍ୟ କେଉଁଠାରେ ଲୀଳା କରି ପାରିବେନି । କାରଣ ଅନ୍ୟ କେଉଁଠାରେ ତ୍ରିପୁରାଙ୍କ ଉପସ୍ଥିତି ନାହିଁ ।

କୁଣ୍ଡଳିନୀ ଲାଗି ଏଇ ଭଙ୍ଗୁର ଦେହ ହୋଇଛି ଦେବତାର ମିଳନ ବେଦୀ । କୁଣ୍ଡଳିନୀ ଜାଗରଣ ଦ୍ୱାରା ପ୍ରାପ୍ତିଘଟେ ସେହି ଅମୃତ ତୁରୀୟ ଉପଲବ୍ଧି । କୁଣ୍ଡଳିନୀ ଜାଗରଣ ପାଇଁ କରାଯିବା କର୍ମ ବାସ୍ତବରେ 'କର୍ମଯୋଗ' । କୁଣ୍ଡଳିନୀ ହିଁ ଏକମାତ୍ର 'ଜ୍ଞାନଶକ୍ତି' । କୁଣ୍ଡଳିନୀ ଶକ୍ତି ଜାଗ୍ରତ ବ୍ୟତୀତ ସମସ୍ତ ଭକ୍ତି, ସମସ୍ତକର୍ମ ଓ ଉପାସନା ବ୍ୟର୍ଥ । କୁଣ୍ଡଳିନୀ ନିଦ୍ରାଭଙ୍ଗ ବ୍ୟତୀତ ଆତ୍ମା ପରମାତ୍ମାରେ ହୁଏ ନାହିଁ ସ୍ଥିତ ।

କୁଣ୍ଡଳିନୀ ଯୋଗ କେତେ ପୁରାତନ, କେବେ ଠାରୁ ଏହାର ଆରମ୍ଭ ? ଭାରତ ବର୍ଷରେ ଅକ୍ଷର ଉପାସନା ବିଷୟ ସ୍ଥାପନ ଓ ପ୍ରାଧାନ୍ୟ ପରଠାରୁ ତନ୍ତ୍ରଶାସ୍ତ୍ରର ଏହି ଅନ୍ତରଂଗ ସାଧନା ପ୍ରତିଷ୍ଠିତ । ବୈଦିକ ସିଦ୍ଧାନ୍ତ କିମ୍ବା ପାତଞ୍ଜଳ ଯୋଗ ଶାସ୍ତ୍ର ଆଦିରେ କୁଣ୍ଡଳିନୀ



Source: Author, Digitized by PPRACHIN, SOA

ଯୋଗ ହୋଇ ନାହିଁ ଆଲୋଚିତ । କାରଣ ଏହି ଯୋଗ ମୁକ୍ତିର ଉପାୟ ବିଶେଷ । କୁଣ୍ଡଳିନୀ ଯୋଗର ଚାରୋଟି ଅଙ୍ଗ, ପ୍ରଥମ କୁଣ୍ଡଳିନୀ ସ୍ୱରୂପ ଜ୍ଞାନ, ଦ୍ୱିତୀୟ-କୁଣ୍ଡଳିନୀ ଜାଗରଣ, ତୃତୀୟ-କୁଣ୍ଡଳିନୀ ଉତ୍‌ଥାନ ଓ ଷଡ୍‌ଚକ୍ର ଭେଦନ ଏବଂ ୪ର୍ଥ -ତଦନନ୍ତର ସହସ୍ରାରେ ପୂର୍ଣ୍ଣ ରୂପରେ ସ୍ଥିତ ।

କୁଣ୍ଡଳିନୀର ଅନ୍ୟ ନାମ ଆଧାରଶକ୍ତି । ଜଗତର ସମସ୍ତ ପଦାର୍ଥର ମୂଳସତ୍ତା । ସମସ୍ତ ପଦାର୍ଥର ଆଧାର, ଯେତେବେଳେ ସିଏ ଆଧାର ଶୂନ୍ୟ ହୋଇଯାଏ, ସକଳ ପଦାର୍ଥ ନିରାଧାର ହୋଇଯାଏ । ଯେତେବେଳେ ପ୍ରବୁଦ୍ଧ ହୋଇ କୁଣ୍ଡଳିନୀ ଧାରଣ କରେ ଚିନ୍ମୟ ରୂପ, ଚୈତନ୍ୟମୟ ହୋଇ ଯାଏ ସମଗ୍ର ବିଶ୍ୱ ।

କୁଣ୍ଡଳିନୀ ସାଧନାର ଲକ୍ଷ୍ୟ-ସ୍ୱୟଂ ଠାରେ ହେବା ଉପସ୍ଥିତ । ସ୍ୱୟଂ ଅର୍ଥାତ୍ 'ମୁଁ' । ସ୍ୱୟଂକୁ ଚିହ୍ନିହେବ,କିଏ ତୁମେ ? ତୁମେ ଆତ୍ମା, ସହଜ ଉତ୍ତର । ଆତ୍ମା ଏଠି ଶବ୍‌ଦ, କୁଣ୍ଡଳିନୀ ସେହି ଅରୂପ ଶକ୍ତି ଯାହାକୁ 'ଆତ୍ମା' ବୋଲି କହୁଛୁ, ତାହାରି ହେବ ଉପଲବ୍ଧି । ସ୍ୱୟଂ ସହିତ ପରିଚୟ ହେବ ଏବଂ ସ୍ୱୟଂକୁ ହେବ ପ୍ରାପ୍ତ । ସେ ସ୍ୱୟଂ ଶବ୍‌ଦ ନୁହେଁ, ତାହା ଗୋଟିଏ ଧନାତ୍ମକ ଓ ଅନ୍ୟ ଗୋଟିଏ ଋଣାତ୍ମକ ଶକ୍ତିର ମିଳନରୁ ପ୍ରାପ୍ତ ଏକ ନୂତନ ଶକ୍ତି । ଯାହା ବିଶ୍ୱକ୍ରିୟାଶକ୍ତିର ଅଂଶ ବିଶେଷ । ବିଶ୍ୱକ୍ରିୟା ଶକ୍ତି ଓ ନିଜ ଭିତରେ ଜାଗ୍ରତ କୁଣ୍ଡଳିନୀଶକ୍ତି ଏକ ଓ ଅଦ୍ୱୈତ ଉପଲବ୍ଧି ସିଦ୍ଧି । ଏହାରି ନାମ ବ୍ରହ୍ମସାକ୍ଷାତ୍‌କାର, ଚୈତନ୍ୟ ଅନୁଭବ, ଏହାକୁ ସର୍ବଖଲ୍ୱିଂଦ ବ୍ରହ୍ମ ଓ କୁହାଯାଏ କୁଣ୍ଡଳିନୀ ଜାଗରଣ ମଧ୍ୟ । ଆତ୍ମାଙ୍କ ଏହି ଉପଲବ୍ଧି ନ ଆସିବା ପର୍ଯ୍ୟନ୍ତ ଦେହ ଧାରଣ ଚାଲିଥିବ । ଜନ୍ମ ଓ ମୃତ୍ୟୁ ଚକ୍ର ଘୂର୍ଣ୍ଣନରତ ହେଉଥିବ । ମୋହିନୀ ମହାମାୟା ତାଙ୍କ ମୋହ ଜାଲରେ ଜୀବନକୁ ଫସାଇ ଛଟପଟ କରି ତାଙ୍କ ମୋହିନୀ ପୁଲକରେ ହେଉଥିବେ ଆହ୍ଲାଦିନୀ । ଏହା ତାଙ୍କ ସୃଷ୍ଟିଲୀଳା, ସଂସାର ଲୀଳା । ଏହା ଏକ କ୍ରମ ବିବର୍ତ୍ତନ ଧାରା, ଏହି ଧାରା ଅବ୍ୟାହତ ରହିବ କୁଣ୍ଡଳିନୀ ଶକ୍ତିଦ୍ୱାରା ଅଦ୍ୱୈତ ସିଦ୍ଧି ଅପ୍ରାପ୍ତି ପର୍ଯନ୍ତ । କୋଟିକୋଟି ବର୍ଷ । ଜ୍ଞାନ ଓ କର୍ମ, ଦୁହିଁଙ୍କର ପରସ୍ପର ସହିତ ମିଶ୍ରଣ ବା ମିଳନ ଅଟେ 'ଯୋଗ' । ମନ, ପ୍ରାଣ ଓ ବିଚାରର ସାଧନା 'ଯୋଗ' । ସାଧନା ବଳରେ ଏହି ତ୍ରୟ ଶକ୍ତିରେ ହୁଏ ପରିବର୍ତ୍ତିତ ଏବଂ ଯେଉଁ ଉର୍ଜା ହୁଏ ହୁଏ ପ୍ରକାଶିତ ତାହା କୁଣ୍ଡଳିନୀ । ଯୋଗ ଏକ ବିଜ୍ଞାନ । ଯେଉଁ ବିଜ୍ଞାନ ଦିଏ ଚିନ୍ମୟ ଶକ୍ତିର ଜ୍ଞାନ । ତାହା ଭୌତିକ ବିଜ୍ଞାନ ନୁହେଁ । ଭୌତିକ ବିଜ୍ଞାନର ବିଷୟ 'ବସ୍ତୁ' ତାହା ଆଧ୍ୟାତ୍ମିକ ବିଜ୍ଞାନ, ଯାହା ବିଷୟ 'ଆତ୍ମା' । ଯୋଗ ଚିନ୍ମୟ ସତ୍ୟର ଅନ୍ୱେଷଣ ଏବଂ ବିଜ୍ଞାନ 'ବସ୍ତୁ' ସତ୍ୟର ଆବିଷ୍କାର ।

ସୃଷ୍ଟିର ପ୍ରାକ୍‌କାଳରେ ମୂଳ ପରମତତ୍ତ୍ୱ ଘନୀଭୂତ ହୋଇ ହୁଏ ଦୁଇ ଭାଗରେ ବିଭକ୍ତ । ଶିବ ଶକ୍ତି ତତ୍ତ୍ୱ ସଂଜ୍ଞାରେ ତାହା ପରିଚିତ । ଶିବ ଜଡ଼ତତ୍ତ୍ୱ ଏବଂ ଶକ୍ତି ଚେତନତତ୍ତ୍ୱ ।



Source: Author, Digitized by PPRACHIN, SOA

ଜଡ଼ ଚେତନାର ଆଧାର । ଜଡ଼କୁ ଦେଖିହୁଏ । ତା ଭିତରେ ସଂଜୀବୀତ ଚିନ୍ମୟୀ ଶକ୍ତିକୁ ନୁହେଁ । ଯଦିଓ ଜଡ଼ ମୂର୍ଚ୍ଛିତ ଚେତନା, ଚେତନା ସଂଜୀବିତ ଜଡ଼ । ପରବର୍ତ୍ତୀ କାଳରେ ସେହି ଦୁଇ 'ପୁରୁଷ' ଓ 'ସ୍ତ୍ରୀ' ତତ୍ତ୍ୱ, 'ବ୍ରହ୍ମ' ଓ 'ମାୟା', 'ପ୍ରକୃତି ଏବଂ ପୁରୁଷ', 'ଈଶ୍ୱର' ଓ 'ଈଶ୍ୱରୀ' ରୂପରେ ହୋଇଛନ୍ତି ପରିକଳ୍ପିତ । ଏହି ଦୁଇ ତତ୍ତ୍ୱ ବ୍ରାହ୍ମାଣ୍ଡରେ ଦୁଇ ପ୍ରକାର ବିଦ୍ୟୁତ୍ ଚୁମ୍ବକୀୟ ତରଙ୍ଗ କରନ୍ତି ଉତ୍ପନ୍ନ । ତାହାକୁ ଆଧୁନିକ ବୈଜ୍ଞାନିକ ଭାଷା କହେ 'ଇଲେକ୍ଟ୍ରୋନ୍' ଓ 'ପ୍ରୋଟୋନ୍' । ଏହି ଦୁଇ ତରଙ୍ଗ ମଝିରେ ଅନ୍ୟ ଏକ ତରଙ୍ଗ ବିଦ୍ୟମାନ 'ନ୍ୟୁଟ୍ରୋନ୍' । 'ନ୍ୟୁଟ୍ରୋନ୍' ବିଦ୍ୟୁତ୍ ବିହୀନ କିନ୍ତୁ ଚୁମ୍ବକୀୟ ଉର୍ଜାଯୁକ୍ତ ତରଙ୍ଗ । ଏହି ତ୍ରୟ ବିଦ୍ୟୁତ୍ ଚୁମ୍ବକୀୟ ତରଙ୍ଗ ନିର୍ମାଣ କରନ୍ତି ପରମାଣୁ । ପରମାଣୁର ବ୍ୟାସ- ୧/୧୦୦୦,୦୦୦୦୦ ସେ.ମି. ଏବଂ ଲମ୍ବ କେବଳ କଳ୍ପନା କରାଯିବ । ପୁରୁଷତତ୍ତ୍ୱ ଋଣାତ୍ମକ ଓ ସ୍ତ୍ରୀତତ୍ତ୍ୱ ଧନାତ୍ମକ ହେତୁ ପରସ୍ପର ପ୍ରତି ସର୍ବଦା ହୋଇଥାନ୍ତି ଆକର୍ଷିତ । ପରମାଣୁ ପରିଧିରେ ଇଲେକ୍ଟ୍ରୋନ୍ ଘୂରୁଥାଏ ଏବଂ ଏହି ପ୍ରମାର ନାଭିରେ ସ୍ଥିତ ପ୍ରୋଟୋନ୍ସ ଓ ନ୍ୟୁଟ୍ରୋନ୍ସର ଚାରିପଟ, ଯେଉଁଠି ଥାଏ ଆକର୍ଷଣ, ତାହା ମିଥୁନାତ୍ମକ । ତାହାକୁ କହନ୍ତି 'କାମ' । ଆକର୍ଷଣରୁ ଉତ୍ପନ୍ନ ଯେଉଁ କାମ ତାହା ସୃଷ୍ଟି ଦୃଷ୍ଟିରୁ 'ଆଦିକାମ' । 'କାମ' ତୃତୀୟ ପୁରୁଷାର୍ଥ । ଯୋଗ-ତାନ୍ତ୍ରିକ ସାଧନାର ଏକମାତ୍ର ଲକ୍ଷ୍ୟ ଦ୍ୱଂଦ୍ୱରୁ ମୁକ୍ତି । ଦ୍ୱଂଦ୍ୱ କ'ଣ ? ଦୁଇଟି ପଦାର୍ଥର ଆକର୍ଷଣ ଓ ବିକର୍ଷଣାତ୍ମ ସଂଘର୍ଷର ନାମ 'ଦ୍ୱନ୍ଦ୍ୱ' । ତାହା ତାନ୍ତ୍ରିକ ଭାଷାର 'ମୈଥୁନ' ଏବଂ ଏଥିରେ ନିହିତ ଶକ୍ତିର ନାମ 'କାମଶକ୍ତି' । ବେଦାନ୍ତରେ ତାହାକୁ କୁହାଯାଇଛି 'ମାୟା' ଓ 'ମହାମାୟା' । ମାୟାରୁ ମୁକ୍ତି 'ଭବମୁକ୍ତି' । ଜନ୍ମ-ମରଣ ଆବାଗମନରୁ ସବୁଦିନ ପାଇଁ ହୋଇଯିବା ମୁକ୍ତ, ଯାହାକୁ 'ନିର୍ବାଣ' ବୋଲି କରାଯାଇଛି ପରିଚିତ । ଆକର୍ଷଣ ବିକର୍ଷଣ ମୂଳ 'କାମଶକ୍ତି' । ଯେଉଁଠି କାମ, ସେଇଠି ଆକର୍ଷଣ । ତନ୍ତ୍ରରେ ଯାହା 'କାମ' ବେଦରେ ତାହା 'ପୁରୁଷାର୍ଥ' । ବୈଦିକ ମାର୍ଗର 'ପୁରୁଷାର୍ଥ' ସାଧନା ଯୋଗ -ତାନ୍ତ୍ରିକ 'କାମସାଧନା' । ବୈଦିକ କାଳରେ କାମକୁ କୁହାଯାଇଛି 'ଆଦିଦେବ' ଏବଂ ତାହାର ଶକ୍ତିକୁ 'ରତି' । ତନ୍ତ୍ରର ଶିବ 'କାମେଶ୍ୱର' ଏବଂ ଶିବା 'କାମେଶ୍ୱରୀ', ଦୁହିଁଙ୍କୁ କୁହାଯାଇଛି 'ଆଦିକାମ' । ଆଦିକାମ ଆଦିବାସନାର ସାକାର ରୂପ ବା ମୂର୍ତ୍ତି ।

ତନ୍ତ୍ରମତ- ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ତ୍ରିକାଳ କାମରେ ପ୍ରବୃତ୍ତ । କାମର ସେହି ଅସ୍ତିତ୍ୱ ସମ୍ବନ୍ଧାତ୍ମକ । ସାଧକ ବା ଯୋଗୀ ତହିଁରୁ ମୁକ୍ତି ପ୍ରାପ୍ତି ମାର୍ଗର ନାମ ଯୋଗ । କାମର ବାହ୍ୟିକ ତାତ୍ପର୍ଯ୍ୟ ଇନ୍ଦ୍ରିୟ-ସନ୍ତୁଷ୍ଟି ଅଭିଳାଷ । ସମ୍ଭୋଗ ସନ୍ତୁଷ୍ଟି ଅଭିଳାଷ କାମ ଲୌକିକ ଓ ସମାଜ-ମନୋବୈଜ୍ଞାନିକ । କାମ ଆଧ୍ୟାତ୍ମିକ, ଯୋଗ -ତାନ୍ତ୍ରିକ ଓ ଅଲୌକିକ



Source: Author, Digitized by PPRACHIN, SOA

ହୁଏ ସେତିକିବେଳେ, ଯେତେବେଳେ ଏହା ମୋକ୍ଷ, ନିର୍ବାଣ, ସାମରସ୍ୟ ଓ ଅଦ୍ୱୈତଲାଭ ପାଇଁ ହୁଏ, ସାଧ୍ୟ । 'ଶିବ ଶକ୍ତି ସମାଯୋଗାଦ୍‌ଜାୟତେ...।' ପୁଣି ତାହା ଆଣେ ନିବୃତ୍ତି । ତେଣୁ 'କାମ'କୁ ଦେବତାର ଗରିମା ପ୍ରଦାନ କରାଯାଇଛି, 'କାମଦେବ' ! ସାହିତ୍ୟରେ ସୁଖାନୁଭୂତି ଅଭିବ୍ୟକ୍ତି କାମ ପରମ୍ପରା ବିଚାରଧାରାର ସୃଷ୍ଟି । 'କାମ' 'ରସସିଦ୍ଧାନ୍ତ'କୁ ଦେଇଛି ଜନ୍ମ ଏବଂ ସୌନ୍ଦର୍ଯ୍ୟ ସୁଖ ଉଦ୍ଦୀପକ । ସୌନ୍ଦର୍ଯ୍ୟଶାସ୍ତ୍ର କାମ ପରମ୍ପରା ବିଚାରଧାରାର ଅନ୍ତର୍ଗତ । ସୌନ୍ଦର୍ଯ୍ୟ ସୁଖର ଆଧାର 'ରସସିଦ୍ଧାନ୍ତ' । ରସ ମାନବ ମସ୍ତିଷ୍କରେ ନିହିତ ଭାବର ପ୍ରକାର । ସାହିତ୍ୟରେ ରସ ଧ୍ୱନି ଦ୍ୱାରା ଅଭିବ୍ୟକ୍ତ । ରସ ନ' ପ୍ରକାର । ଶୃଙ୍ଗାର ଶ୍ରେଷ୍ଠ । ସୌନ୍ଦର୍ଯ୍ୟ ସୁଖ ଜୀବନର ଏକ ଅଙ୍ଗ ।

'ମୁଁ' ଓ 'ତୁମେ' ମଧ୍ୟରେ ଥିବା ଦ୍ୱୈତ ଚେତନାକୁ ଅଦ୍ୱୈତ କରିଦେଇଥାଏ କାମ । 'ମୁଁ' ସ୍ଥିତିଶୀଳ, ଷ୍ଟେଟିକ ଏନର୍ଜୀ, 'ତୁମେ' ଗତିଶୀଳ ଡାଇନେମିକ୍ ଏନର୍ଜୀ, ଜଣେ ଆକର୍ଷକ ଓ ଅନ୍ୟ ଜଣେ ବିକର୍ଷକ ଶକ୍ତି, ଦୁହିଁଙ୍କ ଦ୍ୱନ୍ଦ୍ୱ ସତ୍, ଚିତ୍ ଓ ଆନନ୍ଦ ବ୍ରହ୍ମଙ୍କୁ ଗଠିତ କରନ୍ତି । ତାହା ଏକ ସମାଧିସ୍ଥିତି । ଦେହକୁ ସାତ ଭାଗରେ ବିଭକ୍ତ କରାଯାଇଛି । ସେଗୁଡ଼ିକ ସପ୍ତଚକ୍ର । ମୂଳାଧାର ଚକ୍ର ଶକ୍ତିକେନ୍ଦ୍ର । ଗଚ୍ଛିତ ଗତିଶୀଳ ଶକ୍ତିକୁ ଏଠାରୁ ଜାଗରଣ କରି ଚକ୍ର ଭେଦ କରାଇ ଊର୍ଦ୍ଧ୍ୱକୁ ଉଠାଇଥାନ୍ତି ଯୋଗୀ । ବିଦ୍ୟୁତ୍‌ର ଚୁମ୍ବକୀୟ ଆକର୍ଷଣ ତରଙ୍ଗ ସପ୍ତମ ଚକ୍ରର ବିକର୍ଷଣ ଶକ୍ତିରେ ହୁଏ ମିଳିତ । ଜଡ଼କୁ ଚିନ୍ମୟୀ ଶକ୍ତି କରିଦିଏ ସଂଜୀଂବୀତ । ସେହି ମିଳନକୁ କୁହାଯାଇଛି 'ମୈଥୁନ' ଏବଂ ତାହାରି ନାମ କୁଣ୍ଡଳିନୀ ।

ଆତ୍ମା ଏକ ତତ୍ତ୍ୱ । ସେହି ତତ୍ତ୍ୱର ଶକ୍ତି କୁଣ୍ଡଳିନୀ । ଆଧ୍ୟାତ୍ମବାଦୀ ଏହାକୁ କହନ୍ତି ଆତ୍ମଶକ୍ତି । କୁଣ୍ଡଳିନୀ ବିଶ୍ୱବ୍ୟାପୀ ଏକ ପ୍ରଚଣ୍ଡ ବିଦ୍ୟୁତ୍ ଶକ୍ତି, Cosmic Electricity । ପ୍ରତି ସେକେଣ୍ଡରେ ଆଲୋକ ୧୮୫,୦୦୦ ମାଇଲ୍ ଗତି କରୁଥିବା ବେଳେ କୁଣ୍ଡଳିନୀ ପ୍ରତି ସେକେଣ୍ଡରେ ଗତିକରେ ୩,୪୫, ୦୦୦ ମାଇଲ୍ । ଏହାର ଋଣାତ୍ମକ ଭାଗ ପୁରୁଷ ଓ ଧନାତ୍ମକ ଭାଗ ସ୍ତ୍ରୀ । ପୁରୁଷ ସହାୟତାରେ ସ୍ତ୍ରୀ ଓ ସ୍ତ୍ରୀ ସହାୟତାରେ ପୁରୁଷର କୁଣ୍ଡଳିନୀ ହୁଏ ଜାଗ୍ରତ । କୁଣ୍ଡଳିନୀ ଜାଗରଣ ପାଇଁ ସର୍ବ ପ୍ରଥମ ଦୁଇଟି ବସ୍ତୁ ଅପରିହାର୍ଯ୍ୟ, ପ୍ରଥମ ବସ୍ତୁ କାମ ଓ ଦ୍ୱିତୀୟଟି ଧ୍ୟାନ । କୁଣ୍ଡଳିନୀ ସାଧନାର ମୁଖ୍ୟ ଚାରୋଟି ଅଙ୍ଗ । ଆସନ, ପ୍ରାଣାୟାମ, ଧ୍ୟାନ ଓ ସମାଧି ।

ସ୍ଥୁଳ ଦେହର ବିକାଶ ଘଟାଇ ଥାଏ ଆସନ ଅଭ୍ୟାସ । ପ୍ରାଣାୟମ ଦ୍ୱାରା ସୂକ୍ଷ୍ମ ଶରୀରର ଘଟିଥାଏ ବିକାଶ । ଧ୍ୟାନ ସହାୟତାରେ ହୋଇଥାଏ ମନଃ ଶରୀରର ବିକାଶ ଓ ଅନୁଭବ । ସମାଧିଦ୍ୱାରା ଆତ୍ମ ଶରୀର ହୁଏ ବିକାଶିତ । ଆତ୍ମାରେ ହୁଏ ଅନୁପ୍ରବେଶ ଓ



Source: Author, Digitized by PPRACHIN, SOA

ଅନୁଭବ ହୁଏ ପ୍ରାପ୍ତି । ଆତ୍ମା ବିଶ୍ୱଚେତନାର ଏକ ଅଂଶ ଓ ତାହାର ଗୁଣ ସତ୍-ଚିତ୍-ଆନନ୍ଦର ଘଟିଥାଏ ଅନୁଭବ । ତାହା ଶବ୍ଦ ନ ହୋଇ ହୋଇଥାଏ ସ୍ୱାଦ । ସଂପୂର୍ଣ୍ଣ ବିଶ୍ୱ-ବ୍ରହ୍ମାଣ୍ଡ ଯେଉଁ ମୂଳ ମୌଳିକ ତତ୍ତ୍ୱ ବା 'ପରମବ୍ରହ୍ମ', ତାହାରି ଅନୁଭବ ପ୍ରାପ୍ତ ହୋଇଥାଏ ଆତ୍ମା । ସେହି ଅନୁଭବ ଟିକକ ନ ଆସିବା ପର୍ଯ୍ୟନ୍ତ ଆତ୍ମା ଧାରଣା କରୁଥିବ ଦେହ । ଦେହ ମାଧ୍ୟମରେ ବା ଦେହ ପଥ ଦେଇ ସେହି ପରମତତ୍ତ୍ୱର ଅନୁଭବକୁ କରୁଥିବ ଅନ୍ୱେଷଣ । ଗୋଟିଏ ଦେହ ପରିପକ୍ୱ ହୋଇ ପଚିଗଲେ ତାହାକୁ ତ୍ୟାଗ କରି ନୂତନ ଶରୀର କରୁଥିବ ଧାରଣ । କରୁଥିବ ଭବଭୋଗ । ଜୀବ ଯେତିକି ଲକ୍ଷ୍ୟ ସଚେତନ ହେବ ସେତିକି ସେତିକି ଉଚ୍ଚଗର୍ଭ ଲାଭ କରୁଥିବ । ଲକ୍ଷ୍ୟ ସଚେତନ ସାଧନା ଠାରୁ ଦୂରେଇ ଗଲେ ନୀଚ ଯୋନି ଲାଭ କରି ପଶୁ, ପକ୍ଷୀ, କୀଟ ଆଦି ହୋଇ ରସାତଳକୁ କରିବ ଗମନ । ଏହା କର୍ମଫଳ ବା ଜୀବର ପ୍ରାରବ୍ଧ । ତାନ୍ତ୍ରିକ ପରିଭାଷାରେ 'ଋଣାନୁବନ୍ଧନ' । ପୌରାଣିକ ଶବ୍ଦରେ ମାନବର ପାପ-ପୁଣ୍ୟର ପରିମାଣ ।

ଦୁଇ ଭ୍ରୂ ମଝିରେ ଥାଏ ଆଜ୍ଞାଚକ୍ର ଏବଂ ତାହାର ଊର୍ଦ୍ଧ୍ୱଚକ୍ର ସହସ୍ରାର ଚକ୍ର । ଏହା ଥାଏ ନିଷ୍କ୍ରିୟ । ଯଦି ସକ୍ରିୟ ହୋଇଯାଏ ସାଧକ ସ୍ଥୁଳ ଶରୀର ସୂକ୍ଷ୍ମ ଶରୀରକୁ, ମନଃ ଶରୀରକୁ ମଧ୍ୟ ନିଜଠାରୁ ଅଲଗା କରିପାରେ । ପରକାୟା ପ୍ରବେଶ ମଧ୍ୟ କରିପାରେ । ପ୍ରତ୍ୟେକ ଚକ୍ର ଏକ ଏକ ବିକାଶର ସ୍ତର । ସପ୍ତମ ଚକ୍ର ବ୍ରହ୍ମଚକ୍ର । ଏହି ଠାରୁ ହିଁ ଯୋଗୀ ପାଏ ଉତ୍ତର-କିଏ ମୁଁ ? 'ମୁଁ' ଟିକୁ କରିଥାଏ ଅନୁଭବ । ଏହି ଚକ୍ର ସକ୍ରିୟ ଉପାୟ ଏକମାତ୍ର ଧ୍ୟାନ । ଧ୍ୟାନଦ୍ୱାରା ଚକ୍ରଟି ବା କେନ୍ଦ୍ରଟି ହୋଇଥାଏ ଉଷ୍ଣୁମ୍ ଏବଂ ବାରମ୍ବାର ଉଷ୍ଣୁମ୍ ହୋଇ ହୋଇଯାଏ ସକ୍ରିୟ । ଦେଇଥାଏ 'ମୁଁ' କିଏର ଉତ୍ତର ।

ଯୋଗ ଚିନ୍ମୟ ସତ୍ୟର ଆବିଷ୍କାର । ସେହି ସତ୍ୟଟି ଥରେ ଆତ୍ମାଦ୍ୱାରା ହୋଇଗଲେ ଆବିଷ୍କୃତ, ସମାପ୍ତ ହୋଇଯାଏ ଜନ୍ମ-ମୃତ୍ୟୁର ଚକ୍ର । ଜୀବନରେ ଜ୍ଞାନକୁ କ୍ରିୟା ରୂପରେ ପରବର୍ତ୍ତିତ କରିବାକୁ କୁହାଯାଏ 'ତନ୍ତ୍ର' । ଜ୍ଞାନକୁ କର୍ମରେ ଏବଂ କର୍ମକୁ ଜ୍ଞାନରେ ପରିବର୍ତ୍ତିତ କରିବା କର୍ମର ନାମ ବା ସାଧନାର ନାମ 'ତନ୍ତ୍ର' । ଜ୍ଞାନ ଓ କର୍ମ, ଦୁହିଁଙ୍କୁ ସମାନ ଭାବରେ ମିଶ୍ରିତ କରିବା ସାଧନାର ନାମ 'ଯୋଗ' । ମନ, ପ୍ରାଣ ଓ ବିଚାରର ସାଧନା 'ଯୋଗ-ତନ୍ତ୍ର' । ମନ, ପ୍ରାଣ ଓ ବିଚାର ଶକ୍ତି ତ୍ରୟକୁ ସମ ପରିମାଣରେ ମିଶ୍ରିତ କଲେ ତାହା ଯେଉଁ ଉର୍ଜାରେ ପରବର୍ତ୍ତିତ ହୁଏ, ସେହି ଉର୍ଜାକୁ 'କୁଣ୍ଡଳିନୀ' କୁହାଯାଏ ।

'କୁଣ୍ଡଳିନୀ' ଶବ୍ଦ ଗୁଣ ବାଚକ ନୁହେଁ, ଏହା ଏକ ଲାକ୍ଷଣିକ ଶବ୍ଦ । ପ୍ରତ୍ୟେକ ବ୍ୟକ୍ତିର ଜ୍ଞାନେନ୍ଦ୍ରିୟ ତଳେ, ଯେଉଁଠୁ ମେରୁଦଣ୍ଡର ଆରମ୍ଭ, ଚଣାପରି ଗୋଟିଏ ଗୋଲ ଗାଡ଼ ଅଛି । ଯୋଗ ଭାଷାରେ ତାହା 'କୁଣ୍ଡ', ସେହି ଶକ୍ତିର କେନ୍ଦ୍ର, ତେଣୁ ତାକୁ 'କୁଣ୍ଡଳିନୀ'



Source: Author, Digitized by PPRACHIN, SOA

କହନ୍ତି । ଚାରୋଟି ମୁଖ୍ୟ ନାଡ଼ିର ତାହା ମିଳନ ସ୍ଥଳ । ମେରୁଦଣ୍ଡ ପୋଲା ଓ ତତ୍‌ସ୍ଥିତ ନାଡ଼ିର ନାମ ସୁଷୁମ୍ନା । ସେହି ଶୂନ୍ୟ ଅଂଶ 'ଶୂନ୍ୟନାଡ଼ୀ' ବା 'ଭ୍ୟାକୁମ୍ ଟ୍ୟୁବ୍' । ଯଦି କୌଣସି କାରଣରୁ ତାହା ଭିତରେ ବାୟୁ ପଶେ, ଘଟେ ଧନୁଷ୍ଟଙ୍କାର ବା ଟିଟେନସ୍ ଏବଂ ପରିଣାମ ମୃତ୍ୟୁ ।

ଯେଉଁ ଅନ୍ୟ ଦୁଇଟି ନାଡ଼ି ସୁଷୁମ୍ନା ଭିତରେ ରହିଛି ତାହା ଇଡ଼ା ଓ ପିଙ୍ଗଳା । ଏହି ଦୁଇ ନାଡ଼ିରେ ମନ ଓ ପ୍ରାଣର ପ୍ରବାହ ଚାଲିଛି । 'କୁଣ୍ଡ' ପ୍ରକୃତରେ ତ୍ରିକୋଣୀ, ଏକ ଏକ କୋଣ ଏକଏକ ବିନ୍ଦୁ ଏବଂ ତିନି ବିନ୍ଦୁରେ ତିନିନାଡ଼ି ଯୋଡ଼ା ଯାଇଛି । ତାହା ଜୀବନ ଶକ୍ତି ପ୍ରସାର କେନ୍ଦ୍ରସ୍ଥଳ । ଯୋଗ ଭାଷାରେ ଏହା ମୂଳାଧାର । ଷଡଚକ୍ରର ପ୍ରଥମ ଚକ୍ର ଏବଂ ତ୍ରିକୋଣାତ୍ମକ ହେତୁ ତାନ୍ତ୍ରିକ କହନ୍ତି 'ଯୋନିଚକ୍ର' । ବାମପଟ କୋଣରେ ଇଡ଼ା, ଦକ୍ଷିଣପଟ କୋଣବିନ୍ଦୁରେ ପିଙ୍ଗଳା ଏବଂ ନିମ୍ନସ୍ଥ କୋଣବିନ୍ଦୁ ସୁଷୁମ୍ନାର ସନ୍ଧି । ମେରୁ ଅସ୍ଥି ଭିତର ଦେଇ ଯାଇ ପୁଣି ତିନିହେଁ ଅଲଗା ହୋଇଛନ୍ତି । ଇଡ଼ା ଓ ପିଙ୍ଗଳା ଦୁଇ କାନପଟି ଉପର ଦେଇ ଯାଇ ଭ୍ରୂମଧ୍ୟରେ ବା ଆଜ୍ଞାଚକ୍ରରେ ମିଳିତ ହୋଇ ପୁଣି ଏକାଠି ଯାଇ ମସ୍ତିଷ୍କ ପାର ହୋଇ ବ୍ରହ୍ମ ରନ୍ଧ୍ରରେ ମିଶିଛନ୍ତି । ବିଚାର ତରଙ୍ଗ ବ୍ରହ୍ମ ରନ୍ଧ୍ରରୁ ବାହାରି ସୁଷୁମ୍ନାରେ ପ୍ରବେଶ କରି 'ମେଡୁଲା ଓବ୍ଲାଙ୍ଗଟା'ରେ ମସ୍ତିଷ୍କରେ ପହଞ୍ଚେ ।

ମୂଳାଧାର ତ୍ରିକୋଣୀ ଯୋନିଚକ୍ର, ମନ, ପ୍ରାଣ ଓ ବାକ୍ ଏହି ତ୍ରିଶକ୍ତି ପ୍ରକାଶିତ ହୋଇ ଏଠାରୁ ସମଗ୍ର ଶରୀର ବ୍ୟାପନ୍ତି । ତାଂତ୍ରିକ ଏହାକୁ ମୂଳଶକ୍ତି କହନ୍ତି । ଦୁଇକୋଣରେ ମନ ଓ ପ୍ରାଣଶକ୍ତି ଏବଂ ନିମ୍ନସ୍ଥ କୋଣ ବିଚାରଶକ୍ତି କେନ୍ଦ୍ର । ମନଶକ୍ତି ମହାଲକ୍ଷ୍ମୀ, 'ଏନର୍ଜୀ' ଏହାକୁ କହନ୍ତି । ପ୍ରାଣଶକ୍ତି ମହାକାଳୀ, 'ଫୋର୍ସ', ତାହାକୁ କହନ୍ତି । ନିମ୍ନରେ ବିଚାରଶକ୍ତି ମହାସରସ୍ୱତୀ, 'ପାଓ୍ୱାର' । ଏହି ଶକ୍ତିତ୍ରୟ ଶରୀରରେ ମିଶ୍ରିତ ହୋଇ ଜୀବନୀଶକ୍ତି ରୂପେ କାର୍ଯ୍ୟ କରୁଛନ୍ତି । ତ୍ରିକୋଣ ପୀଠର ଠିକ୍ ମଧ୍ୟସ୍ଥଳରେ ରହିଛି ଗୋଟିଏ ବିନ୍ଦୁ । ତନ୍ତ୍ରାନୁଯାୟୀ ବିନ୍ଦୁ ଅର୍ଥ ଶିବଶକ୍ତିଙ୍କ ସମ୍ମିଳିତ ରୂପ । ଏହାର ଅନ୍ୟ ପରିଭାଷା ହେଲା, 'ଆତ୍ମଶକ୍ତି' । ସୃଷ୍ଟି ପ୍ରକ୍ରିୟାରେ ପରମାତ୍ମାଙ୍କ ମହତ୍ୱପୂର୍ଣ୍ଣ ଆତ୍ମା । ଶାଶ୍ୱତ ଓ ଅଖଣ୍ଡ ବସ୍ତୁ । ସୃଷ୍ଟିର ପ୍ରାକ୍ କାଳରେ ଆତ୍ମା ଦୁଇଟି ମୂଳତତ୍ତ୍ୱରେ ହୋଇଥିଲା ନିର୍ମିତ । ସେହି ତତ୍ତ୍ୱ ଦୁଇଟି-ଶିବ ଓ ଶକ୍ତି । ଯୋଗରେ ତାହା ପୁରୁଷ ଓ ପ୍ରକୃତି । ଦାର୍ଶନିକଙ୍କ ଶବ୍‌ଦରେ ବ୍ରହ୍ମ ଓ ମାୟା । ଏହି ଦୁଇତତ୍ତ୍ୱର ମିଶ୍ରଣରେ ଯେଉଁ ନୂତନ ତତ୍ତ୍ୱ ହୁଏ ଆବିର୍ଭାବ, ତାହା ଆତ୍ମତତ୍ତ୍ୱ । ଆତ୍ମତତ୍ତ୍ୱ ବିନ୍ଦୁ ରୂପ । ବିନ୍ଦୁରେ ଦୁଇ ତତ୍ତ୍ୱର ସମ୍ମିଶ୍ରଣରୁ ଏକ ବିଲକ୍ଷଣ ଉର୍ଜା ହୋଇଛି ଉତ୍ପନ୍ନ । ତାହା ଆତ୍ମଶକ୍ତି । ସେହି ବିଲକ୍ଷଣ ଉର୍ଜା ସୃଷ୍ଟି ପ୍ରକ୍ରିୟାରେ ଯେତେବେଳେ ଆସେ, ତାହାକୁ 'ଚେତନା' କହନ୍ତି ।



Source: Author, Digitized by PPRACHIN, SOA

ମୂଳାଧାର। ତ୍ରିକୋଣାତ୍ମକ କୁଣ୍ଡ ପରମ ଚେତନା କୁଣ୍ଡ । କେନ୍ଦ୍ରର ବିନ୍ଦୁ ମହାଶକ୍ତି ପୀଠ ବା ଆତ୍ମଶକ୍ତିପୀଠ । ଆତ୍ମଶକ୍ତି ତାନ୍ତ୍ରିକ ସାଧନାରେ ଆଦ୍ୟାଶକ୍ତି । ଅଚିନ୍ତ୍ୟ ମହାଶକ୍ତି । ଯୋଗର ଯୋଗେଶ୍ୱରୀ କୁଣ୍ଡଳିନୀ । କୁଣ୍ଡଳିନୀର ସୁଷୁପ୍ତ ଅବସ୍ଥାକୁ କହନ୍ତି 'ଜୀବ' । କିନ୍ତୁ ଅବିରତ ଆତ୍ମଶକ୍ତି ପ୍ରବାହିତ ମନ, ପ୍ରାଣ ଓ ବିଚାର ଶକ୍ତି ରୂପରେ ! ତାହା ଆମ ଜୀବନ । ତାହା ମାୟା ।

ଆତ୍ମଶକ୍ତି କେନ୍ଦ୍ରରୁ ପ୍ରବାହିତ ମନ ଓ ପ୍ରାଣ ଶକ୍ତି ପରିବର୍ତ୍ତିତ ହୋଇ ନିଜ ନାଡ଼ି ବାଟେ ପ୍ରବାହିତ ହୁଅନ୍ତି ମସ୍ତିଷ୍କ ଓ ହୃଦୟକୁ । ବିଚାରଶକ୍ତି ଆସିଥାଏ ନାଭିକୁ । ଏହି ତ୍ରୟ କେନ୍ଦ୍ରକୁ ଆତ୍ମଶକ୍ତି ସହିତ ସଂଯୋଗ କରେ ଯେଉଁ ନାଡ଼ି ତାହାକୁ 'ଗୁହ୍ମ୍ୟନୀ ନାଡ଼ୀ' କହନ୍ତି । ଏହା ମସ୍ତିଷ୍କରୁ ଆରମ୍ଭ, କଣ୍ଠପାଖରେ ଯେଉଁଠି ଜିହ୍ୱା ସମାପ୍ତ, ସେଠାରେ ରହିଛି ଗୋଟିଏ ଗଣ୍ଠି, 'ରୁଦ୍ରଗ୍ରନ୍ଥୀ' । ହୃଦୟଠି ରହିଛି ଅନ୍ୟ ଗୋଟିଏ ଗଣ୍ଠି 'ବିଷ୍ଣୁଗ୍ରନ୍ଥୀ' ଏବଂ ନାଭି ନିକଟରେ ରହିଛି 'ବ୍ରହ୍ମଗ୍ରନ୍ଥୀ' । ଗୁହ୍ମ୍ୟନୀପଥ 'ଦିବ୍ୟୈାଧପଥ' ।

ମନ, ପ୍ରାଣ ଓ ବିଚାରର ଦୁଇଟି ରୂପ । ପ୍ରଥମ ବ୍ୟଷ୍ଟିରୂପ । ଦ୍ୱିତୀୟ ସମଷ୍ଟି ରୂପ । ସମଷ୍ଟି ରୂପରେ ଶକ୍ତିତ୍ରୟ ପରିବର୍ତ୍ତିତ ହୁଏ ବିଶ୍ୱ-ବ୍ରହ୍ମାଣ୍ଡ ସହିତ ତାଦାତ୍ମ୍ୟ ସ୍ଥାପନ ପାଇଁ । ଯାହା ଜ୍ଞାନ ଅଟେ ମୋକ୍ଷ ବା ବିଶ୍ୱ-ବ୍ରହ୍ମାଣ୍ଡ ଅତିକ୍ରମଣ । 'କୌଳ' ଶବ୍‌ଦରୁ ଉତ୍ପନ୍ନ 'କୁଳ' ଅର୍ଥ ଶକ୍ତି ଏବଂ 'ଅକୁଳ' ଶିବ । କୁଳର କେନ୍ଦ୍ର ମୂଳାଧାର ଚକ୍ର ହେବା ବେଳେ ଅକୁଳର କେନ୍ଦ୍ର ସହସ୍ରାର । ଦୁଇ କେନ୍ଦ୍ରର ସଂଯୋଗ 'ଯୋଗ', ତାନ୍ତ୍ରିକ ଶବ୍‌ଦରେ 'ସାମରସ୍ୟ' ବା ମହାମିଳନ । ଏଥିରୁ ଆତ୍ମା ପ୍ରାପ୍ତ ହୁଏ ଯେଉଁ ଆନନ୍ଦ, ତାହା ବ୍ରହ୍ମାନଂଦ ବା ପରମାନନ୍ଦ ଅନୁଭୂତି । ସେହି ଆନନ୍ଦରୁ କଣିକାଏ ଆନନ୍ଦ ସାହିତ୍ୟ ପଠନ ଓ ମନନରୁ ସାହିତ୍ୟ ସେବକଙ୍କୁ ହୋଇଥାଏ ପ୍ରାପ୍ତି । ସ୍ରଷ୍ଟା ଜୀବନକୁ ଧନ୍ୟ କରି ଦେଇଥାଏ ସିଦ୍ଧି । ଶବ୍‌ଦ ସିଦ୍ଧି ଭଗବତ ସିଦ୍ଧିର ଅଂଶ । ତେଣୁ କାଳିଦାସ ଓ ସାରାଳାଦାସ ମାନେ ମୃତ୍ୟୁଂଜୟୀ ଅମୃତ ପୁରୁଷ ।

## ରସ ସିଦ୍ଧାନ୍ତ ଅନ୍ତର୍ଗତ ରସେଶ୍ୱର ତତ୍ତ୍ୱ

ଶୈବ ସିଦ୍ଧାନ୍ତ ଚତୁଷ୍ଟୟର ଶେଷ ଦର୍ଶନ ରସେଶ୍ୱର ଦର୍ଶନ । ଶ୍ରୁତି ମୁଖ ନିସୃତ, ରସୋ ବୈ ସଃ, ରସଂ ହ୍ୟେବାୟଂ ଲବ୍ଧାନଂଦୀ ଭବତି, ଅର୍ଥାତ୍ ସେହି ରସ ସ୍ୱରୂପ ଲାଭ କରି ଆନନ୍ଦମୟ ହୁଅ, ରସମୟ ହୁଅ ! ସେହିରସ, ଯାହାନିତ୍ୟ ଓ ଶିବ (ମଙ୍ଗଳମୟ) । ସାହିତ୍ୟ ମନକୁ ରସମୟ କରିଦିଏ । ଶୃଙ୍ଗାର ରସ ମନକୁ ଉତ୍‌ଫୁଲ୍ଲିତ କରିଦେବା ବେଳେ କରୁଣ ରସ ପାଠକ ହୃଦୟକୁ ମନ୍ଥି ଚକ୍ଷୁରୁ ଉଷ୍ମ ଅଶ୍ରୁ ବୁନ୍ଦା ନିଗାଡ଼ି ପକାଏ । ରସ ତାହାର କ୍ରୀଡ଼ାରେ ବୀରତ୍ୱ ଭାବର ସଂଚାର କରି ପକାଇ ଥାଏ । ଏହା ବାହ୍ୟରସ । ଶରୀର



Source: Author, Digitized by PPRACHIN, SOA

ନାଶବାନ । ରସାଭ୍ରକ ପଦବାଚ୍ୟ ହରଗୌରୀ ସୃଷ୍ଟ୍ୟୁତ୍ପନ୍ନ ଶରୀର କିନ୍ତୁ ନିତ୍ୟ । ତାହା ଜୀବନ୍ମୁକ୍ତିକାମୀ ଯୋଗୀଙ୍କ ଦିବ୍ୟ ଶରୀର । ହରଙ୍କ ଠାରୁ ରସ ଏବଂ ଗୌରୀଙ୍କ ଠାରୁ ଅଭ୍ରକ ସମୁତ୍ପନ୍ନ ହେବା ଯୋଗୁ ହରଗୌରୀ ସଂଯୋଗ ଜନିତ ବୋଲି କହିଥାନ୍ତି । ଯେ ହେତୁ ଶିବଙ୍କ ଠାରୁ ଶ୍ରବଣ କରିବାକୁ ମିଳିଛି :

ଅଭ୍ରକସ୍ତବ ବୀଜଂ ତୁ ମମବୀଜଂ ତୁ ପାରଦଃ
ଅନୟୋର୍ମେଳନଂ ଦେବି ମୃତ୍ୟୁ ଦାରିଦ୍ର୍ୟ ନାଶନମ୍ ।

(ରସେଶ୍ୱର ସିଦ୍ଧାନ୍ତ)

ଅର୍ଥାତ୍-ହେ ଦେବି ! ତୁମର ରଜ ଓ ମୋ ବୀର୍ଯ୍ୟର ମିଳନ ଅଟେ ମୃତ୍ୟୁ ଦାରିଦ୍ର୍ୟ ବିନାଶକ । ଏଠାରେ ବ୍ୟକ୍ତି ଅଭ୍ରକ ନୁହେଁ ଖଣିଜ Mica ବା ପାରଦ ନୁହେଁ Mercury । ପୁନଶ୍ଚ ତହିଁରେ ବ୍ୟକ୍ତ, ରସ ସାମର୍ଥ୍ୟାଦ୍ଦିବ୍ୟଂ ଦେହ ମାଶ୍ରିତ ଜୀବନ୍ମୁକ୍ତି ସମାଶ୍ରିତଃ । ଅର୍ଥାତ୍, ରସ ସମାର୍ଥ୍ୟରୁ ଦିବ୍ୟ ଦେହ ଲାଭ କରି ଅନେକ ଜୀବନ୍ମୁକ୍ତି ଲାଭ କରିଛନ୍ତି । 'ସର୍ବ ଦର୍ଶନ ସଂଗ୍ରହ' ମଧ୍ୟ ବର୍ଣ୍ଣନା କରିଛନ୍ତି, ରସମେବ ସଙ୍ଗିରନ୍ତେ ରସସ୍ୟ ପାରଦତ୍ୱଂ ସଂସାର ପରପାର ପ୍ରମାଣ ହେତୁତ୍ୱେନ । ଅର୍ଥାତ୍-ସଂସାର ପରପାରରେ ପହଞ୍ଚାଏ ବୋଲି ସେହି ରସର ନାମ 'ପାରଦ' । 'ରସାର୍ଣ୍ଣବ'ରେ ବର୍ଣ୍ଣିତ :

ପାରଦୋ ବଦିତେ ଯସ୍ମାତ୍ ପରାର୍ଥଂ ସାଧକୋତ୍ତମୈଃ
ସୁପ୍ତୋଽୟଂ ମତ୍ସମୋ ଦେବି ମମ ପ୍ରତ୍ୟଙ୍ଗ ସମ୍ଭବଃ
ମମ ଦେହରସୋ ଯସ୍ମାଦ୍ ରସ ସ୍ତେନାୟ ମୁଚ୍ୟତେ ।ଇତି।

ଅର୍ଥାତ୍-ହେ ଦେବୀ ପାର୍ବତି ! ମୋ ଅଙ୍ଗରୁ ସମୁତ୍ପନ୍ନ ଶୁଦ୍ଧି ପରେ ମୋ' ପରି ଫଳପ୍ରଦ ମୋ ଦେହ ସମ୍ଭୂତ ରସକୁ ଶ୍ରେଷ୍ଠ ସାଧକମାନେ ପରପାରଦ ବୋଲି କହନ୍ତି ପାରଦ ।

ମାନବ ବିଷୟ ରସ ଲମ୍ପଟ । ରସ ତ ଆନନ୍ଦ ପ୍ରଦାୟକ । ସାଧନା ରସ ଓ ସିଦ୍ଧିରସ ସ୍ୱାଦ ସାତ୍ତ୍ୱିକ । ରସେଶ୍ୱର ସିଦ୍ଧାନ୍ତ ସାହିତ୍ୟଗତ ବିମ୍ବ ପ୍ରୟୋଗରେ ତତ୍ତ୍ୱକୁ କରିଛି ସୁବୋଧ୍ୟ । ସାହିତ୍ୟ ଶବ୍ଦ ରସ । ନିତ୍ୟରସ ଆତ୍ମରସ । ତାହା ଚିନ୍ମୟ ବା ଜୀବନ୍ତ । ତାହା ଅକ୍ଷୟ ଅବିନାଶୀ ଓ ମଙ୍ଗଳକର ହେତୁ ଶିବ ।

ରସର କେନ୍ଦ୍ରରେ ରସେଶ୍ୱର; ଯୋନିଲିଙ୍ଗ ସ୍ୱରୂପଂ ଚ କଥଂ; ବିଗର୍ହିତଂରୂପଂ ପ୍ରାପ୍ତବାନ୍ ସହଭାର୍ଯ୍ୟୟା ! କାହିଁକି ହୋଇଛି ରସେଶ୍ୱରଙ୍କ ଯୋନି ଲିଙ୍ଗ ସ୍ୱରୂପ ଭାର୍ଯ୍ୟାଙ୍କ ସହିତ ? ପୁରାଣର ଉପାଖ୍ୟାନର ତାତ୍ପର୍ଯ୍ୟ, ବଶିଷ୍ଠଙ୍କ ଠାରୁ ଶୁଣିବାକୁ ମିଳିଛି ! ମହର୍ଷିଭୃଗୁ ଶିବ ଦର୍ଶନାର୍ଥେ ଉପସ୍ଥିତ ହେବାବେଳେ ଦର୍ଶନ କଲେ ଶିବଶକ୍ତିଙ୍କ ସହିତ ମିଳନ ରତ । କ୍ରୋଧୋଦ୍ଦୀପ୍ତ ମହର୍ଷି ଦେଲେ ଅଭିଶାପ:



Source: Author, Digitized by PPRACHIN, SOA

ନାରୀ ସଙ୍ଗମ ମତ୍ତସ୍ତ୍ୱଂ ଯସ୍ମାନ୍ମାମବମନ୍ୟତେ ।

ଯୋନି ଲିଙ୍ଗ ସ୍ୱରପଂ ବୈରୂପଂ ତସ୍ମାଦ୍ ଭବିଷ୍ୟତି ।

ତୁମେ ନାରୀ ସଙ୍ଗମ ମତ୍ତ, ମୋତେ ଅବମାନନା କରିଛ, ତୁମର ସ୍ୱରୂପ ହେଉ ଲିଙ୍ଗ ଯୋନି ବିଶିଷ୍ଟ ବୈରୂପ । ପ୍ରକୃତରେ ଯାହା ସୃଷ୍ଟି ହେଲା ତାହା ଉଦ୍ଦୀପକ ଚେତନା ଦର୍ଶକ ଭିତରେ ସୃଷ୍ଟି କରିବା ପରିବର୍ତ୍ତେ ସୃଷ୍ଟି କଲା ଏକ ମୃତ୍ୟୁଞ୍ଜୟୀ ଅମୃତ ଭାବନା । ଏହାଏକ ବିଶୁଦ୍ଧ ପ୍ରତୀକ, ନୁହେଁ ଆକର୍ଷଣର ବରଂ ସୃଷ୍ଟିତତ୍ତ୍ୱର ଏବଂଏକ ଆଧ୍ୟାତ୍ମିକ ଆତ୍ମହାର ! ମୈଥୁନ ଏକ ଆବାହନ । କର୍ତ୍ତା ନିଜେ ବାମନ ହୋଇ ଅବତରଣ କରିବା ପ୍ରକ୍ରିୟାଟିର ! ଯୋନିରେ ଲିଙ୍ଗର ଘଟେ ବିଲୟ, ତେଣୁ ତାହା 'ଲିଙ୍ଗ' । 'ସ୍କନ୍ଦପୁରାଣ'ରେ ଏହାର ବ୍ୟୁତ୍ପତ୍ତି-ଆକାଶ ଲିଙ୍ଗ ମିତ୍ୟାହୁଃ ପୃଥିବୀ ତସ୍ୟ ପୀଠିକା । ଆଳୟଃ ସର୍ବଦେବାନାଂ ଲୟନାତ୍ ଲିଙ୍ଗ ମୁଚ୍ୟତେ । ଆକାଶ ଶବ୍ଦ ଲିଙ୍ଗ ବ୍ୟକ୍ତ କରୁଥିବା ବେଳେ ପୃଥିବୀ ତାହା ପୀଠିକା । ଏହା ସକଳ ଦେବତାଙ୍କ ଆଳୟ । ଏଠାରେ ସମସ୍ତ ଲୟ ପ୍ରାପ୍ତ ହୁଏ, ତେଣୁ ଏହାକୁ ଲିଙ୍ଗ କୁହାଯାଏ । ପୁନଶ୍ଚ ରସ ସମ୍ବନ୍ଧରେ କଥିତ 'ଦୁଃଖଭାର ତରଣୋପାୟ ରସ ଏବ ଇତି ସିଦ୍ଧଂ ।'

ରସତତ୍ତ୍ୱ ସୃଷ୍ଟିତତ୍ତ୍ୱ । ରସ ଆତ୍ମା, ଶ୍ରୁତିରେ କଥିତ । ପରମାତ୍ମା ପରମେଶ୍ୱର ରସସିନ୍ଧୁ ଏବଂ ସେ ରସେଶ୍ୱର । ତାଙ୍କ ରସର ରୂପ ଓଁ, ଅକ୍ଷର ତତ୍ତ୍ୱ । ସେ ଶବ୍‌ଦବହ୍ମଙ୍କ ପ୍ରକାଶକ:

ଶବ୍‌ଦବ୍ରହ୍ମ ତନୁଂ ସାକ୍ଷାତ୍ ଶବ୍‌ଦ ବ୍ରହ୍ମ ପ୍ରକାଶକଂ

ବର୍ଣ୍ଣାବୟବ ମବ୍ୟକ୍ତ ଲକ୍ଷଣଂ ବହୁଧାସ୍ଥିତଂ

ଅକାରୋକାର ମକାରଂ ସ୍ଥୁଳଂ ସୂକ୍ଷ୍ମ ପରତ୍ପରଂ

ଓଁକାର ରୂପ ମୃଗ୍‌ଦ୍ୱଂ ସାମଜିହ୍ୱା ସମନ୍ୱିତଂ ।

ଶବ୍‌ଦବହ୍ମ ଶରୀର ପୁଣି ତାହା କେବଳ ପ୍ରକାଶମୟ ବା ଜ୍ୟୋତି; ଅକାର, ଉକାର ଓ ମକାର ସମ୍ମଳିତ ସ୍ଥୁଳ ପୁଣି ସୂକ୍ଷ୍ମ ଓ ପରାତ୍ପର, ଜଗତର କାରଣ । ଲିଙ୍ଗପୁରାଣ ବର୍ଣ୍ଣନା କରିଛନ୍ତି—

"ଅସ୍ୟ ଲିଙ୍ଗାଦଭୂଦ୍ ବୀଜଂ ଅକାରଂ ବୀଜିନଃ ପ୍ରଭୋ

ଉକାର ଯୋନୌ ବୈକ୍ଷିପ୍ତମବର୍ଦ୍ଧତ ସମନ୍ତତଃ

ଅର୍ଥାତ୍ ବୀଜୀ ମହେଶ୍ୱର ଲିଙ୍ଗରୁ ଅକାର ବୀଜ ଉତ୍ପନ୍ନ ହେଲା ।ତାହା ଉକାର ରୂପ ଯୋନିରେ ନିକ୍ଷିପ୍ତ ହୋଇ ଚତୁର୍ଦ୍ଦିଗରେ ବୃଦ୍ଧି ପ୍ରାପ୍ତ ହେଲା । ଶିବ ଅରୂପ ଓ ଏକ ରସତତ୍ତ୍ୱ, ଯହିଁରୁ ସୃଷ୍ଟି ସମ୍ଭୂତ । ସେହି ରସତତ୍ତ୍ୱ ଉପନିଷଦୀୟ ଅନ୍ନରସରେ ପରିବର୍ତ୍ତିତ, ଯାହାଦ୍ୱାରା ଜୀବନ ରହେ ଜୀବିତ । ତେଣୁ ଅନ୍ନ ମଧ୍ୟ ଆନନ୍ଦ । ଅନ୍ନ ମଧ୍ୟ ବ୍ରହ୍ମ ବୋଲି ଉପନିଷଦରେ



Source: Author, Digitized by PPRACHIN, SOA

ବର୍ଣ୍ଣିତ । ଅନ୍ନରସ ଆତ୍ମରସକୁ କରିଥାଏ ଉଜ୍ଜ୍ୱଳ ବା ଜ୍ୟୋତିଷ୍ମାନ୍ । ଏହାଦ୍ୱାରା ଜୀବ ହୋଇଥାଏ ଅଜର ଓ ଅମର, ଯାହା ଧର୍ମ, ଅର୍ଥ, କାମ ଓ ମୋକ୍ଷର ମୂଳାଧାର । ଶରୀର ଠାରୁ ନାହିଁ ଅନ୍ୟ କିଛି ଶ୍ରେଷ୍ଠ । ଚର୍ତୁବର୍ଗ ସାଧନା ପାଇଁ ଶରୀର ନିହାତି ଆବଶ୍ୟକ । ଚର୍ତୁବର୍ଗ ପ୍ରାପ୍ତି ଜୀବନର ଲକ୍ଷ୍ୟ । ଶେଷ ବର୍ଗ ମୋକ୍ଷ ପ୍ରାପ୍ତି ନ ଘଟିବା ପର୍ଯ୍ୟନ୍ତ ଆତ୍ମା ସହିତ ଦେହ ରହିଥିବ । ଜରା କ୍ଳେଶ ଓ ବିଷାଦ ସନ୍ତପ୍ତ କରି ଚାଲିଥିବ । ଆମେ ଲେଖି ଚାଲିଥିବା ସାହିତ୍ୟ କବିତା, ଗଳ୍ପ, ନାଟକ ଓ ଉପନ୍ୟାସ ତାହା ପରୋକ୍ଷରେ ଆମ ବିଷାଦଯୋଗର ପ୍ରତୀକ । ଆମ ଅସୁସ୍ଥ ଚେତନାର ପ୍ରତୀକିତ ରୂପକଳ୍ପ । ତହିଁରେ ଅଛି ରସ; ଅଛି ଶିବ ? ବରଂ ନିସ୍ତରଙ୍ଗ ସେଗୁଡ଼ିକ ଗୋଟିଏ କ୍ଷତାକ୍ତ ଜର୍ଜରର କାତର ପରିଗ୍ରହଣ କରିଛି ଶବ୍‌ଦ ରୂପ ।

ସମକାଳ ସ୍ରଷ୍ଟା ହୃଦୟ ଏକ ରକ୍ତାକ୍ତ ଯୁଦ୍ଧ କ୍ଷେତ୍ର, ଆତ୍ମା ତାର ଲହୁ ନୁହାଣ ! ସମକାଳ ଶବ୍‌ଦ ବସାଣ ଏହାରି ପ୍ରତିଫଳନ । ତେଣୁ ଏଥିରେ ରସ ନାହିଁ, ଅଛି ରୂପ ଓ ରୂପକଳ୍ପ । ଶିବ ଅନୁପସ୍ଥିତ ହେତୁ ସୌନ୍ଦର୍ଯ୍ୟ ଅନୁପସ୍ଥିତ । ସତ୍ୟ ଅସିବ ବା କିପରି ? ଯେଉଁଠି ସତ୍ୟ, ଶିବ ଓ ସୁନ୍ଦର ବିଦ୍ୟାମାନ, ତାହା ହୁଏ ସଚ୍ଚିଦାନନ୍ଦ ! ଯାହା ରଚିତ ହୋଇଯାଏ ତାହା ହୁଏ ମହାମୃତ୍ୟୁଂଜୟ ମନ୍ତ୍ର । ନୁହେଁ ଫାଲ୍‌ତୁ ଲେଖା ସାହିତ୍ୟ, ଯାହା ଶୁଦ୍ଧ ଅରୋଚକ ଓ ଅନାବଶ୍ୟକ ।

## ବୈଦିକ ଶବ୍‌ଦବାଦ

ଯାହାଧ୍ୱନି ଦ୍ୱାରା ବ୍ୟକ୍ତ ହୁଏ ତାହା ଶବ୍‌ଦ । ଧ୍ୱନି ଶବ୍‌ଦର ବ୍ୟଂଜକ । ଶବ୍‌ଦ ବ୍ୟଂଜକ ଧ୍ୱନି ବୁଦ୍ଧିର ଗ୍ରାହ୍ୟ; ଅର୍ଥାତ୍ ଧ୍ୱନି ଗୁଣ ଏବଂ ତାହାର ବ୍ୟଙ୍ଗ୍ୟ ଶବ୍‌ଦ ଗୁଣ ନୁହେଁ, ପଦାର୍ଥ । ଶବ୍‌ଦ ଦ୍ରବ୍ୟ । ଦ୍ରବ୍ୟବାଦୀ ଦଶ । ଯଥାକ୍ରମେ ସେଗୁଡ଼ିକ-କ୍ଷିତ୍, ଅପ୍, ତେଜ, ମରୁତ, ବ୍ୟୋମ, କାଳ, ଦିକ୍, ଦେହ, ମନ ଓ ତମ । ଏକାଦଶ ଦ୍ରବ୍ୟବାଦୀ ଶବ୍‌ଦ ଏକାତିରିକ୍ତ ନିତ୍ୟଦ୍ରବ୍ୟ ।

କିନ୍ତୁ ସ୍ଫୋଟବାଦ ଅନୁଯାୟୀ ବର୍ଣ୍ଣମାନ କ୍ଷଣସ୍ଥାୟୀ । କାରଣ ଦ୍ୱିତୀୟ ବର୍ଣ୍ଣ ଉଚ୍ଚାରଣାନନ୍ତର ପ୍ରଥମ ବର୍ଣ୍ଣ ନାଶ ହୁଏ । ସମସ୍ତ ବର୍ଣ୍ଣମାନଙ୍କର ଏକତ୍ରାବସ୍ଥା ଅସମ୍ଭବ ଏବଂ ବର୍ଣ୍ଣ ଅଭାବରେ ହୁଏ ନାହିଁ ପଦବୁଦ୍ଧି, ତେଣୁ ଅର୍ଥ ପ୍ରତୀତି ହୁଏ ନାହିଁ । ସ୍ଫୋଟ ଅଙ୍ଗୀକାର କଲେ ସମସ୍ତ ବର୍ଣ୍ଣର ସ୍ମୃତି ହେବ ଜାଗ୍ରତ, ହେବ ପଦବୁଦ୍ଧି ଜାତ ଏବଂ ତତ୍‌ପରେ ହେବ ଅର୍ଥ ଜ୍ଞାନ । ତେଣୁ ବୈୟାକରଣିକ କହନ୍ତି ସ୍ଫୋଟ ନିତ୍ୟ ଏବଂ ଶବ୍‌ଦ ଅନିତ୍ୟ । ସ୍ଫୋଟ ପଦରେ ସର୍ବ ବର୍ଣ୍ଣ ଅଭିବ୍ୟଂଜକ ଅନ୍ତ୍ୟବର୍ଣ୍ଣନିଷ୍ଠ; ଅଲୌକିକ ସ୍ଫୋଟ ଶବ୍‌ଦ ରୂପନିତ୍ୟ ।



Source: Author, Digitized by PPRACHIN, SOA

ଶବ୍‌ଦବାଦ ଅନୁଯାୟୀ ଶବ୍‌ଦ ଓ ଅର୍ଥ ଉଭୟେ ନିତ୍ୟବସ୍ତୁ । ଶବ୍‌ଦ ଓ ଅର୍ଥ ଦୁହିଁଙ୍କର ବୋଧ୍ୟ ବୋଧକ ସମ୍ବନ୍ଧ ମଧ୍ୟ ନିତ୍ୟ । ଗୌତମ ଓ କଣାଦ ଉକ୍ତ ବିଷୟରେ ଛ'ଟି ଆଶଙ୍କା କରିଛନ୍ତ ବ୍ୟକ୍ତ । ସେଗୁଡ଼ିକ—

୧ - ଶବ୍‌ଦରେ ଏକ ପ୍ରକାର ଉଚ୍ଚାରଣ ପ୍ରକ୍ରିୟା ରହିଛି । ତାହା କ୍ଷଣସ୍ଥାୟୀ ଏବଂ ପ୍ରଯତ୍ନ ବିଶେଷ ନିଷ୍ପାଦ୍ୟ । ଯଥା – ଉଚ୍ଚାରଣର ପୂର୍ବେ ଶବ୍‌ଦ ନଥାଏ, ପରେହୁଏ ଉପଲବ୍ଧ । ଅତଏବ ଜାୟମାନ ଓ କ୍ଷଣସ୍ଥାୟୀ ଶବ୍‌ଦର ସହିତ ଉଚ୍ଚାରଣରେ ଅଜାୟମାନ ଓ ସ୍ଥାୟୀପଦାର୍ଥର ନିତ୍ୟସମ୍ବନ୍ଧ ଅନୁପପନ୍ନ ।

୨ - ଶବ୍‌ଦ ପ୍ରଥମ କ୍ଷଣରେ ଜାତ ହୋଇ ଦ୍ୱିତୀୟ କ୍ଷଣରେ ରହେ ଓ ତୃତୀୟ କ୍ଷଣରେ ନାଶ ହୁଏ । ଅତଏବ ଶବ୍‌ଦ ଅନିତ୍ୟ !

୩- ଶବ୍‌ଦ କର, ଶବ୍‌ଦ କର ନାହିଁ ଏହି ରୂପ ଶବ୍‌ଦ ପ୍ରଥମାବଧି ପ୍ରଚଳିତ ଥିବାରୁ ଶବ୍‌ଦ ମନୁଷ୍ୟ କୃତ । ନୁହେଁ ନିତ୍ୟାବସ୍ଥିତ ।

୪ - ଶବ୍‌ଦ ଏକ କାଳରେ ପ୍ରତ୍ୟେକ ଦେଶ ଓ ପ୍ରତ୍ୟେକ ମନୁଷ୍ୟ ଠାରେ ଉଚ୍ଚାରିତ । ଶବ୍‌ଦ ନିତ୍ୟ ହୋଇଥିଲେ ପ୍ରତ୍ୟେକ ସ୍ଥଳରେ ଯୌଗପଦ୍ୟ ରହନ୍ତା ନାହିଁ ଏବଂ ବ୍ୟାକରଣରେ ସୁଦ୍ଧା ଦଧି+ ଅନୟ ସ୍ଥଳରେ ଇକାରର 'ଯ' କାର ହେଉଅଛି । ଅର୍ଥାତ୍-ଇକାର ପ୍ରକୃତି, 'ଯ' କାର ବିକୃତି । ନିତ୍ୟ ବସ୍ତୁର ପ୍ରକୃତି ବିକୃତି ଭାବ ନଥାଏ !

୫ - ଶବ୍‌ଦ ବୃଦ୍ଧି ହ୍ରାସ ଦେଖାଯାଏ । ଉଚ୍ଚାରଣକାରୀ ବହୁତ ହେଲେ ବୃଦ୍ଧି ଓ ଅଳ୍ପ ହେଲେ ହ୍ରାସ ହୁଏ । ତେବେ ତାହା ନିତ୍ୟ କିପରି ? ଏହାର ମୀମାଂସାରେ କୁହାଯାଇଛି, ଶବ୍‌ଦର କ୍ଷୟ ବୃଦ୍ଧି ବ୍ୟାପାର କଣ୍ଠଧ୍ୱନି ମାତ୍ର, ତାହା ନୁହେଁ କର୍ଣ୍ଣାତ୍ମକ ଶବ୍‌ଦ । ବର୍ଣ୍ଣନାତ୍ମକ ଶବ୍‌ଦ ସମସ୍ତ ସମୟରେ ସମାନ ନଥାଏ, ଅତଏବ ଶବ୍‌ଦ ନିତ୍ୟ । ଶବ୍‌ଦ ଉତ୍ପାଦନର ଉପାଦାନ ଦୁର୍ଲ୍ଲଭ, ସୁତରାଂ ଶବ୍‌ଦ ଅନାଦିନିଧନ, ନିତ୍ୟ, ନିତ୍ୟାବସ୍ଥିତ ଏବଂ ନିରାକାର ।

ଭାରତୀୟ ଦର୍ଶନରେ 'ଶବ୍‌ଦବାଦ'ର ଶ୍ରେଷ୍ଠ ମୀମାଂସକ ଅଟନ୍ତି ଜୈମିନୀ । ଶବ୍‌ଦତତ୍ତ୍ୱ ବୋଧରେ ସିଏ ବୈଦିକ ଧର୍ମତତ୍ତ୍ୱ ବୋଧର ପଥ କରିଛନ୍ତି ସୁଗମ । ଶବ୍‌ଦ ବାୟୁରୁ ଉତ୍ପନ୍ନ ଆଶଙ୍କାକୁ ସିଏ ଖଣ୍ଡନ କରିଛନ୍ତି । ଧ୍ୱନି ବାୟୁ କାରଣକ, ନୁହେଁ ଶବ୍‌ଦ । ଶବ୍‌ଦ ପରାବିଦ୍ୟା, ବେଦ । ଅପରାପ୍ରକୃତି ପୁରାଣାଦି ଲୌକିକ ଶବ୍‌ଦ ସମୂହ ପୁରୁଷ ବୁଦ୍ଧି ଜନିତ । ପୁରୁଷ ଭ୍ରମ ସଙ୍କୁଳ ତେଣୁ ତା' ଶବ୍‌ଦ ଅପ୍ରମାଣ୍ୟ । କିନ୍ତୁ 'ବେଦ ବାକ୍ୟାନାଂ ନିତ୍ୟ ନିର୍ଦ୍ଦୋଷତ୍ୱେନ ସ୍ୱତଃ ପ୍ରମାଣ୍ୟମ୍' !



Source: Author, Digitized by PPRACHIN, SOA

ପ୍ରଥମ ଆଶଙ୍କାର ଉତ୍ତରରେ କୁହାଯାଇଛି, ଶବ୍‌ଦ ଉଚ୍ଚାରଣର ପୂର୍ବେ ଉପଲବ୍ଧ ନ ହୋଇ ପରେ ହୁଏ । ଏତିକିରେ ଶବ୍‌ଦର କୃତ୍ରିମତ୍ୱ ବୁଝିବା ନୁହେଁ ନ୍ୟାଯ୍ୟ । ଯେଣୁ-ଶବ୍‌ଦ ଉଚ୍ଚାରଣ ପୂର୍ବରୁ ଥାଏ ଅବ୍ୟକ୍ତ, ଉଚ୍ଚାରଣର ପ୍ରଯତ୍ନରେ ତାହା କେବଳ ବ୍ୟକ୍ତ ହୁଏ, ତେଣୁ ଉଚ୍ଚାରଣ ପ୍ରକ୍ରିୟା ଅନନ୍ତର ଦେଖାଯାଏ ଶବ୍‌ଦର ଉପଲବ୍ଧି ! କିନ୍ତୁ ତାହା ଶବ୍‌ଦର କୃତକତ୍ୱ ସାଧକ ପୁଷ୍କଳ ହେତୁ ନୁହେଁ ! ଦ୍ୱିତୀୟ ଉତ୍ତର-ଶବ୍‌ଦ ବିନାଶୀ ନୁହେଁ । ବ୍ୟଂଜକ ନଥିବା କାରଣ ପୂର୍ବାପର କାଳରେ ତାହାର ଉପଲବ୍ଧି ହୁଏ ନାହିଁ । ବ୍ୟଂଜକ ପଦରେ ପ୍ରକାଶକ ହେତୁ, ଯଥା-ଅନ୍ଧକାରସ୍ଥ ଘଟର ଦୀପଶିଖା ପ୍ରକାଶକ ! ତୃତୀୟ ଆଶଙ୍କାର ଉତ୍ତର-ଶବ୍‌ଦ କର ଶବ୍‌ଦ କର ନାହିଁ, ଇତ୍ୟାଦି ବ୍ୟବହାର କେବଳ ଧ୍ୱନିପର; ନୁହେଁ ବର୍ଣ୍ଣପର ! ଶବ୍‌ଦବାଦରେ ଏହିପରି ସମସ୍ତ ଆଶଙ୍କାର କରାଯାଇଛି ଖଣ୍ଡନ ।

ସେହିପରି ଅର୍ଥବାଦ ! ଏହା ଶବ୍‌ଦର ଅର୍ଥ କିମ୍ବା ବିତ୍ତବାଦ ନୁହେଁ । ୧- କେଉଁଟି ବିହିତ କର୍ମ ଓ କେଉଁଟି ନିଷିଦ୍ଧାଚରଣ; ୨-ପ୍ରଶଂସା ବା ନିନ୍ଦା କରି ବିଧିନିଷେଧ; ବେଦ ଭାବର ପ୍ରମାଣ୍ୟ ବ୍ୟବସ୍ଥାପନ କରିବା ବେଦର ଯେଉଁ ଅଙ୍ଗର ଉଦ୍ଦେଶ୍ୟ, ସେହି ଅଙ୍ଗକୁ କହନ୍ତି ଅର୍ଥବାଦ । ଅର୍ଥବାଦ ବାକ୍ୟ ତ୍ରିବିଧ । ସେଗୁଡ଼ିକ -୧ ଗୁଣବାଦ, ୨-ଅନୁବାଦ ଓ ୩- ଭୂତାର୍ଥବାଦ । ଯାହା ପ୍ରମାଣ ବିରୁଦ୍ଧ ଅର୍ଥର ଅଭିଧାୟକ, ତାହା ଗୁଣବାଦ । ଯାହା ପ୍ରମାଣସିଦ୍ଧ ବାକ୍ୟାର୍ଥ କରେ ପ୍ରକାଶ, ତାହାର ନାମ ଅନୁବାଦ । ଯାହା ପ୍ରତ୍ୟକ୍ଷ ପ୍ରମାଣ ବିରୁଦ୍ଧ ନୁହେଁ; ଅପ୍ରାପ୍ତ ବା ଅଜ୍ଞାତାର୍ଥ ବୋଧକ ତାହା ଭୂତାର୍ଥବାଦ ବୋଲି ନାମିତ ।





Source: Author, Digitized by PPRACHIN, SOA

# ଭାରତୀୟ ବିଦ୍ୟା ଓ କଳାତତ୍ତ୍ୱ

ସା ବିଦ୍ୟା ଯା ମୁକ୍ତୟେ, ବାକ୍ୟାଂଶଟିକୁ ଅନେକ ଅବଗତ । ତାହା ବିଦ୍ୟା, ଯାହା ପ୍ରଦାନ କରେ ମୁକ୍ତି ! ସେହି ବିଦ୍ୟାର ସ୍ୱରୂପ କ'ଣ, ସେହି ବିଦ୍ୟା କିଏ, ଯିଏ ଜୀବକୁ ଦେହ ବନ୍ଧନ ବା ଭବ ବନ୍ଧନରୁ କରେ ମୁକ୍ତ ?

'ଶାକ୍ତାନଂଦ ତରଙ୍ଗିନୀ'ରେ ଉଲ୍ଲେଖ କରାଯାଇଛି, Avidya binds the Sadhak with karma and destroy knowledge. Therefore it is that Vidya should be worshipped, but Avidya never. (Principles of Tantra / Sir John Woodroffe) । କିନ୍ତୁ ଈଶାବାସ୍ୟ ଉପନିଷଦରୁ ମିଳିଛି ଦର୍ଶନ-

ବିଦ୍ୟାଂ ଚାବିଦ୍ୟାଂ ଚ ଯସ୍ତଦ୍
ବେଦୋଭୟଁ ସ ହ ।
ଅବିଦ୍ୟୟା ମୃତ୍ୟୁଂତୀର୍ତ୍ୱା
ବିଦ୍ୟାୟା ମୃତମଶ୍ନୁତେ ।

ଅର୍ଥାତ୍-ଯେଉଁ ପୁରୁଷ ବିଦ୍ୟା ରୂପକ ଜ୍ଞାନତତ୍ତ୍ୱ ଏବଂ ଅବିଦ୍ୟା ରୂପକ କର୍ମତତ୍ତ୍ୱ ସହିତ ହୁଏ ଜ୍ଞାତ, ସେ କର୍ମାନୁଷ୍ଠାନ ଦ୍ୱାରା ମୃତ୍ୟୁକୁ ପାରହୁଏ ଏବଂ ଜ୍ଞାନ ଅନୁଷ୍ଠାନ ଦ୍ୱାରା ଉପଭୋଗ କରିଥାଏ ଅମୃତତ୍ତ୍ୱ ।

ସ୍କୁଲ କଲେଜରେ ପଢ଼ା ଯାଉଥିବା ପାଠ୍ୟ ନୁହେଁ 'ବିଦ୍ୟା', ସେହି ପାଠମାନ 'ଶିକ୍ଷା', ବୃତ୍ତି ନିର୍ବାହ ପାଇଁ ଆବଶ୍ୟକ ତାଲିମ । କିନ୍ତୁ ମୁକ୍ତି ପାଇଁ ଆବଶ୍ୟକ 'ଦୀକ୍ଷା', ନୁହେଁ 'ଶିକ୍ଷା' ! ଦୀକ୍ଷା ଦ୍ୱାରା ଅନୁଭବ ହୁଏ 'ବିଦ୍ୟା' ଏବଂ ସେହି 'ବିଦ୍ୟା' ହିଁ ଜୀବାତ୍ମାକୁ କରିଥାଏ ଭବବନ୍ଧନ ବିମୁକ୍ତ । 'ଶାକ୍ତାନଂଦ ତରଙ୍ଗିନୀ' ସେହି ବିଦ୍ୟାକୁ ପରିଚିତ ନିମ୍ନ ରୂପେ କରାଇଛନ୍ତି,

ସା ବିଦ୍ୟା ସା ମହାମାୟା
ସା ତୁ ସେବ୍ୟା ସଦା ବୁଧୈଃ ।
ଯୋଽବିଦ୍ୟାମୁପାସତେ
ସୋଽୟଂ ତମଃ ପ୍ରବିଶତି



Source: Author, Digitized by PPRACHIN, SOA

ସପ୍ତସତୀ ଚଣ୍ଡୀରେ ବର୍ଣ୍ଣିତ-ଯା ଦେବୀ ସର୍ବଭୂତେଷୁ ବିଦ୍ୟାରୂପେଣ ସଂସ୍ଥିତାଃ, ତାହାଙ୍କୁ ନମସ୍କାର, ନମସ୍କାର, ବାରମ୍ବାର ନମସ୍କାର ! ସେହି ମହାମାୟା ପରମେଶ୍ୱରୀ ଆଦ୍ୟାଶକ୍ତି ହିଁ ଅଟନ୍ତି ବିଦ୍ୟା । ବିଦ୍ୱାନମାନେ କରିଥାନ୍ତି ତାହାଙ୍କ ନିରାଜନା । "ଶାକ୍ତା ନଂଦ ତରଙ୍ଗିନୀ" କହୁଛନ୍ତି, He who worship Avidya enters the regin of darkness. (Trans. by Arthur Avalon) । ବରଦାକାନ୍ତ ମଜୁମଦାର ତାହାଙ୍କ ୧୫୩ ପୃଷ୍ଠାର ଏକ ସୁଦୀର୍ଘ ପ୍ରବନ୍ଧ 'ସ୍ପିରିଚ୍ୟୁଆଲ୍ କଲଚର-ବୈଦିକ ଏଣ୍ଡ୍ ତାନ୍ତ୍ରିକ'ରେ ଶକ୍ତିଙ୍କ ପ୍ରବୃତ୍ତି ଓ ନିବୃତ୍ତି ଗୁଣତତ୍ତ୍ୱ ଉପରେ ଆଲୋଚନା କଲାବେଳେ ଉଚ୍ଚାରଣ କରିଛନ୍ତି-

ସା ବିଦ୍ୟା ପରମା ମୁକ୍ତେର୍ହେତୁଭୂତା ସନାତନୀ
ସଂସାର ବନ୍ଧନ ହେତୁଶ୍ଚ ସୈବ ସର୍ବେଶ୍ୱରୀ ତଥା ।

The Lady paramount of all the lords as the great Vidya is cause of libaration, and as (Avidya) she too is the cause of bondage. (Candi, Page-52) ।

ବିଦ୍ୟା, ସିଦ୍ଧ ବିଦ୍ୟା ଓ ମହାବିଦ୍ୟା, କରାଯାଇଛି ବିଭାଜନ । ଯେଉଁ ଦେବୀବୃଂଦ ହେଲେ 'ବିଦ୍ୟା' ସେମାନେ-ଷୋଡ଼ଶୀ, ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା ଓ ଧୂମାବତୀ । କାଳୀ ଓ ତାରା ଅଟନ୍ତି 'ମହାବିଦ୍ୟା' । 'ସିଦ୍ଧବିଦ୍ୟା' ହେଲେ ବଗଳା, ମାତଙ୍ଗୀ, ଓ କମଳା । 'ଚାମଣ୍ଡାତନ୍ତ୍ର' କହନ୍ତି- ଏତା ଦଶ ମହାବିଦ୍ୟାଃ ସିଦ୍ଧବିଦ୍ୟା ପ୍ରକୀର୍ତ୍ତିତାଃ ।

ଆଧ୍ୟାତ୍ମିକ ସଂସ୍କୃତିରେ ତନ୍ତ୍ର ସ୍ୱୀକାର କରିଛି ଦୁଇଟି ଶକ୍ତି; ବାଚକ ଶକ୍ତି ଓ ବାକ୍ୟ ଶକ୍ତି । ପ୍ରକୃତିରେ ଚିତ୍ ବାଚକ ଶକ୍ତିଙ୍କ ବିଭୂତି ଏବଂ ବାକ୍ୟଶକ୍ତି ନିଜେ ଚିତ୍ ଅଟନ୍ତି । ବାକ୍ୟଶକ୍ତି ନିରଂଜନ । ତାହାଙ୍କୁ ଉପଲବ୍ଧି କରାଇଥାନ୍ତି ବାଚକ ଶକ୍ତି । ବରଦା କାନ୍ତ ମଜୁମଦାର ତତ୍ତ୍ୱଟିକୁ ଦେଇଛନ୍ତି ଦାର୍ଶନିକ ପରିଭାଷା, One aspect of Sabdabrahma is Nada and other aspect is Bindu. As Nada she is the mother and as Bindu He is the father of universe. There is separable twin ever in association in cosmic evolution. Sabdabrahma is the God, the Lord, the Mother, the Word, the object of worship of all sentient beings.

ଋଗ୍‌ବେଦର ବାଗାମ୍ଭୃଣୀସୂକ୍ତ ଅନୁଯାୟୀ ବିଦ୍ୟା ବାକ୍ ରୂପା । ତାଙ୍କର ଆଦି ସ୍ୱରୂପ ନାଦ, ତହିଁରୁ ଶବ୍ଦବ୍ରହ୍ମ ଓ ଶବ୍ଦବ୍ରହ୍ମ ଅଟନ୍ତି ନାଦବ୍ରହ୍ମ । ଶବ୍ଦବ୍ରହ୍ମଙ୍କ ଅନ୍ୟ ଏକ ରୂପ ବିନ୍ଦୁବ୍ରହ୍ମ । ନାଦ ଜନନୀ, ମହାମାୟା ଏବଂ ବିନ୍ଦୁ ମହେଶ୍ୱର, ଜଗତ୍ ପିତା । ବ୍ରାହ୍ମାଣ୍ଡୀୟ ବିବର୍ତ୍ତନରେ ଦୁଇ ଶକ୍ତି ମିଳିତ ଏବଂ ବିବର୍ତ୍ତନର ପରବର୍ତ୍ତୀ ସୋପାନ '୦' (ଶୂନ୍ୟ) । ବିଦ୍ୟାରମ୍ଭରେ ସିଲଟରେ ଖଡ଼ିଛୁଆଁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ସୃଷ୍ଟି ।



Source: Author, Digitized by PPRACHIN, SOA

ମାନବ ସୂକ୍ଷ୍ମ ଶରୀରରେ ରହିଛି ଷଡ଼ଚକ୍ର । ଚକ୍ରମାନେ ସ୍ଥୂଳ ଦେହ ସହିତ ସୂକ୍ଷ୍ମ ଦେହକୁ ଯୋଡ଼ଥାନ୍ତି, ଯେମିତି ସାର୍ଟର ଗୋଟିଏ ଗୋଟିଏ ବୋତାମ ! ନିମ୍ନରୁ ଆରମ୍ଭ ଚକ୍ର ମୂଳାଧାର । ଏହି ମୂଳାଧାରରେ ବିଦ୍ୟା ରୂପିଣୀ ଶକ୍ତି ଥାନ୍ତି ଶାୟିତା । ମାତୃଗର୍ଭରେ ଯେତେବେଳେ ଭ୍ରୂଣକୁ ହୁଏ ସପ୍ତମାସ, ସେହି ଶକ୍ତି ଜାଗ୍ରତ ରହି ଭ୍ରୂଣର କରି ଆସନ୍ତି ସୁରକ୍ଷା । ଶିଶୁ ଯେତେବେଳେ ଭୂମିଷ୍ଠ ହୁଏ ସିଏ ନିଦ୍ରାଯା'ନ୍ତି । ସାଧନା ଦ୍ୱାରା ତାଙ୍କୁ ଜାଗ୍ରତ କରାଇବାକୁ କୁହାଯାଏ ଅକାଳ ବୋଧନ । ସେହି ମହାଶକ୍ତିଙ୍କ ହେତୁ ଶରୀର ଥାଏ ସଜୀବ । ଅର୍ଥାତ୍ ଦେହ ଦୁର୍ଗକୁ ସଜୀବ ବା ସୁରକ୍ଷିତ ରଖୁଥିବ ହେତୁ ସିଏ ଦୁର୍ଗା ନାମରେ ସୁବିଦିତା (ଦୁର୍ଗଃ ରକ୍ଷତି ଇତି ସା ଦୁର୍ଗାଃ) ।

ମା' ଜ୍ଞାନ ସ୍ୱରୂପିଣୀ, ଜ୍ଞାନମୟୀ ଓ ବିଜ୍ଞାନୀମୟୀ; ତା ନ ହେଲେ ଶ୍ରୀଚଣ୍ଡୀର 'ସର୍ବଭୂତେଷୁ ବିଦ୍ୟାରୂପେଣ ସଂସ୍ଥିତା' ହେଲେ କେମିତି ? ପ୍ରତ୍ୟେକ ପ୍ରାଣୀଙ୍କ ସୂକ୍ଷ୍ମ ଶରୀରରେ ସିଏ ମୂଳଧାର ଚକ୍ରରେ ଅବସ୍ଥାନ କରୁଥିବା ହେତୁ ପଞ୍ଚଭୂତ ସମିଶ୍ରଣ ଦେହଟି ସଂଜୀବୀତ । ତାଙ୍କର ଅନୁପସ୍ଥିତିରେ ମୃତ । ପ୍ରାଣ, କୁଣ୍ଡଳିନୀ ଓ ଆତ୍ମା କରିଥାନ୍ତି ବାସ ତ୍ୟାଗ । ତେଣୁ ଶ୍ରୀଅଥର୍ବ ଶୀର୍ଷରେ ଦେବୀଙ୍କ ଦ୍ୱାରା ଉଦ୍‌ଘୋଷିତ; ଅହଂ ବ୍ରହ୍ମ ବ୍ରହ୍ମଣୀ ବେଦିତବ୍ୟେ! ସଂସାରର ସର୍ବୋଚ୍ଚ ଜ୍ଞାନ ଅଟନ୍ତି ସେ ! ଏଷା ଶ୍ରୀ ମହାବିଦ୍ୟା ଯ ଏବଂ ବେଦ ସ ଶୋକଂ ତରତି । ଆଉ ଟିକିଏ ଆଗକୁ ବର୍ଣ୍ଣନା ରହିଛି-

ମନ୍ତ୍ରଣାଂ ମାତୃକା ଦେବୀ ଶବ୍‌ଦନାଂ ଜ୍ଞାନ ରୂପିଣୀ ।
ଜ୍ଞାନାନା ଚିନ୍ମୟାନଂଦା ଶୂନ୍ୟାନାଂ ଶୂନ୍ୟ ସାକ୍ଷିଣୀ ।
ଯସ୍ୟାଃ ପରତରଂ ନାସ୍ତି ସୈଷା ଦୁର୍ଗା ପ୍ରକୀର୍ତିତା ।

ଅର୍ଥାତ୍-ସମସ୍ତ ମନ୍ତ୍ର 'ମାତୃକା' ବା ମୂଳାକ୍ଷର ରୂପେ ବିରାଜିତା, ଶବ୍‌ଦର ଜ୍ଞାନ (ଅର୍ଥ ବା ଭାବ) ରୂପରେ ଅବସ୍ଥିତା, ଚିନ୍ମୟ ଆନନ୍ଦ ରୂପା, ଶୂନ୍ୟମାନଙ୍କରେ 'ଶୂନ୍ୟ ସାକ୍ଷିଣୀ', ତଥା ତହିଁରୁ ନାହିଁ ଅନ୍ୟ କିଛି ଶ୍ରେଷ୍ଠ, ତାହା ଦୁର୍ଗା ନାମରେ ପ୍ରତିଷ୍ଠିତ । ତାଂ ଦୁର୍ଗାଂ ଦୁର୍ଗମାଂ ଦେବୀମ୍... ! ଦେବୀ ଅଗମ୍ୟା ଓ ଅବୋଧ୍ୟା । ଥରେ ତାଙ୍କୁ ବୁଝିଗଲେ, ଥରେ ତାଙ୍କ ମହାମାୟା ଭେଦି ଗଲେ ଆଉ ପୁନର୍ଜନ୍ମ ନ ବିଦ୍ୟତେ । ଜ୍ଞାନ କ'ଣ ? ଜ୍ଞାନ ଅଜ୍ଞାନ ବିପରୀତ ! ବିଦ୍ୟାର ମାର୍ଗ ଜ୍ଞାନ ପଥ । ବର୍ଣ୍ଣନା କରିଛନ୍ତି 'ନିରୁତ୍ତରତନ୍ତ୍ର'- The root of knowledge is that which relates to the union of Siva and Shakti. knowledge of shakti is acquired after many birth. O Devi, whithout a knowledge of shakti Nirvan can never be attained. (Trans. by Barada Kanta) । ତତ୍ତ୍ୱଟି ହେଲା ଶିବ ଶକ୍ତିଙ୍କ ମିଳନ, ସୃଷ୍ଟିତତ୍ତ୍ୱ; ସଚ୍ଚିଦନଂଦ ତତ୍ତ୍ୱ; ଆତ୍ମତତ୍ତ୍ୱ ଓ



Source: Author, Digitized by PPRACHIN, SOA

ପ୍ରକୃତିତତ୍ତ୍ୱ ମିଳନ ଆନନ୍ଦ ଅବବୋଧ। ପୂର୍ବରୁ ସୂଚିତ ଆତ୍ମତତ୍ତ୍ୱ ବ୍ରହ୍ମତତ୍ତ୍ୱ । ପ୍ରକୃତିତତ୍ତ୍ୱ ଅଟେ ଶକ୍ତି ତତ୍ତ୍ୱ । ପ୍ରକୃତିର ସ୍ଥୁଳ ରୂପ ପାଞ୍ଚଗୋଟି ଧାତୁ; ଆକାଶ, ବାୟୁ, ଅଗ୍ନି, ଜଳ ଓ ପୃଥିବୀ । ଏମାନଙ୍କ ଅଧିଷ୍ଠାତ୍ରୀ ଶକ୍ତି ହେଲେ ଲୋଚନା, ମାମକୀ, ପାଣ୍ଡରବାସନୀ, ତାରା ଓ ବଜ୍ରାଧାତ୍ୱୀଶ୍ୱରୀ । ଏହି ପଞ୍ଚ ଅଧିଷ୍ଠାତ୍ରୀ ଶକ୍ତିଙ୍କୁ ଶାକ୍ତତନ୍ତ ବଜ୍ରା, ଗୌରୀ, ଚୌରୀ, ବଜ୍ରାଯୋଗିନୀ ଓ ନୈରତ୍ମ୍ୟ ଯୋଗିନୀ ବୋଲି ଆଖ୍ୟା ପ୍ରଦାନ କରିଅଛି ।

କେତେକ ବିଚାର କରନ୍ତି, ମହାବିଦ୍ୟା ସଂଖ୍ୟା ନଅ ଏବଂ ମୂଳତିନି ଅଟନ୍ତି କାଳୀ, ତାରା ଓ ଷୋଡ଼ଶୀ । ଏହି ତ୍ରୟଙ୍କୁ ଠାରୁ ଯୋନିର ଉଦ୍‌ଭାବନା ହୋଇଅଛି । ଶ୍ରୀବିଦ୍ୟାର ମୂଳ ଏହି ତ୍ରିଧା ଯୋନିଚକ୍ର । ସୃଷ୍ଟି, ସ୍ଥିତି ଓ ନାଶ କାରକ; ତନ୍ତ୍ରର ଏହା ଆଦିତତ୍ତ୍ୱ । ଏହା ଗଭୀର ଓ ରହସ୍ୟାତ୍ମକ । ମହାବିଦ୍ୟାମାନଙ୍କ ସହିତ ସମ୍ବନ୍ଧିତ ସୂକ୍ଷ୍ମ ଦେହର ନବଚକ୍ର ଏବଂ ତ୍ରିଧା ଯୋନିଚକ୍ରକୁ କୁହାଯାଏ ତ୍ରିକୂଟ । ତ୍ରିକୂଟ  କାଳୀ, ତାରା ଓ ଷୋଡ଼ଶୀ ଏହି ତ୍ରୟ ବିଦ୍ୟାଙ୍କ ସାଧନା କେନ୍ଦ୍ର । ଏହି ତ୍ରୟ ମହାବିଦ୍ୟା ସୃଷ୍ଟି ଭୂମିରେ ତ୍ରିଗୁଣାତ୍ମିକା ପ୍ରକୃତି ଅଟନ୍ତି ସତ୍ୱ, ରଜ ଓ ତମଃ । ଏହି ତ୍ରୟ ପ୍ରକୃତିଗୁଣ ଏବଂ ଏହାଙ୍କର ପରିଣାମ ସୃଷ୍ଟି, ସ୍ଥିତି ଓ ପ୍ରଳୟ । ଏହି ତ୍ରୟ ଚକ୍ର ସଂଘାତରୁ ସଂରଚନା ହୋଇଛି ନଅ ଚକ୍ର । ସେମାନେ ହେଲେ, ୧-ସର୍ବାନନ୍ଦମୟ, ୨-ସର୍ବସିଦ୍ଧିକର, ୩- ସର୍ବରୋଗହର, ୪-ସର୍ବରକ୍ଷାକର, ୫-ସର୍ବାର୍ଥସାଧକ, ୬- ସର୍ବସୌଭାଗ୍ୟଦାୟକ. ୭- ସର୍ବସଂକ୍ଷୋମୟ, ୮-ସର୍ବଶାପ ପରିପୂରକ ଏବଂ ୯-ତ୍ରୈଲୋକ୍ୟମୋହନ । ପ୍ରଥମ ତ୍ରୟଚକ୍ର ବାକ୍‌ଭବ କୂଟ, ଦ୍ୱିତୀୟ ତ୍ରୟଚକ୍ର କାମରାଜ କୂଟ ଏବଂ ଶେଷ ତ୍ରୟ ଚକ୍ରକୁ କହନ୍ତି ଶକ୍ତିକୂଟ ।

'ଚୈତନ୍ୟ ଚନ୍ଦ୍ରୋଦୟ'ରେ ବର୍ଣ୍ଣିତ ଏହି ନବଚକ୍ରଙ୍କ ନବ ଅଧିଷ୍ଠାତ୍ରୀ, ୧-ମହାତ୍ରିପୁର ସୁନ୍ଦରୀ, ୨- ତ୍ରିପୁର ସିଦ୍ଧା, ୩-ତ୍ରିପୁର ମାଳିନୀ, ୪- ତ୍ରିପୁରାଶ୍ରୀ, ୫- ତ୍ରିପୁରବାସିନୀ, ୬-ତ୍ରିପୁର ସୁନ୍ଦରୀ, ୭-ତ୍ରିପୁରେଶୀ, ୮-ତ୍ରିପୁରା ପ୍ରଭୃତି । ଶ୍ରୀ ବିଦ୍ୟା ପଦରେ ଶ୍ରୀମହା ତ୍ରିପୁର ସୁନ୍ଦରୀ ଅଟନ୍ତି ବୋଧକ । ବିଦ୍ୟା ବୋଧକ ଓ ବିଦ୍ୟା ରାଜ୍ଞୀ କାଳୀ । ଶ୍ରୀଯନ୍ତ୍ର ରୂପରେ ଶ୍ରୀସୁନ୍ଦରୀଙ୍କ ମୁଖ ବାକ୍‌ଭବ କୂଟ ଓ କଣ୍ଠଠାରୁ କଟି ପର୍ଯ୍ୟନ୍ତ କାମରାଜ କୂଟ ଏବଂ କଟିଠାରୁ ପଦଭାଗ ପର୍ଯ୍ୟନ୍ତ ଶକ୍ତିକୂଟ ।

ମୂଳ ଏକ । ଏକରୁ ସେ ତିନି ଏବଂ ତିନିରୁ ନଅ ମହାବିଦ୍ୟା ନିଷ୍ପନ୍ନ । ଏକ ପୂରକ ବିଦ୍ୟା ଯୋଗରେ ଦଶ ମହାବିଦ୍ୟାର ହୋଇଛି ପରିକଳ୍ପନା । ବ୍ରହ୍ମମୟୀ ପରମା ଶକ୍ତିଙ୍କ ନଅ ରୂପ । ସଗୁଣ ସାଧନା ଭୂମିରେ ସେମାନେ ନବଦୁର୍ଗା । ସେମାନଙ୍କ ଶକ୍ତି ସୂର୍ଯ୍ୟଙ୍କ ମୁଖ୍ୟ ନଅଟି ରଶ୍ମିରେ ବିଦ୍ୟମାନ । ଯାହା ଶରୀରରେ ରସ, ରକ୍ତମାଂସ ଓ ମଜ୍ଜାଦି କରେ ଗଠିତ । ପୁନଶ୍ଚ ମହାଶକ୍ତିଙ୍କ ନବରୂପ, ନବଦୁର୍ଗା ନବ ଚକ୍ରାତ୍ମକ ଶ୍ରୀଯନ୍ତ୍ର । ଶ୍ରୀ ନାରାୟଣଙ୍କ ପ୍ରତ୍ୟେକ



Source: Author, Digitized by PPRACHIN, SOA

ଅବତାର ଜାଗତିକ ଭୂମିରେ ଏକ ଏକ ମହାବିଦ୍ୟାଙ୍କ ଘଟିଛି ଆବିର୍ଭାବ । ଅନ୍ତିମ ବା ଦଶମ ମହାବିଦ୍ୟା କଳାତ୍ମିକା ଅଟନ୍ତି, ସିଏ ଷୋଡ଼ଶୀ ମହାତ୍ରିପୁର ସୁନ୍ଦରୀ ପର୍ଯ୍ୟାୟର ବୋଲି ଗ୍ରହଣ କରା ଯାଇଛି ।

ବିଦ୍ୟାମାନଙ୍କର ଅବତାର ତନ୍ତ୍ରଶାସ୍ତ୍ରରେ ନିମ୍ନ ପ୍ରକାର ବର୍ଣ୍ଣିତ-

କୃଷ୍ଣ ରୂପା କାଳିକା ସ୍ୟାଦ୍ ରାମ ରୂପା ଚ ତାରିଣୀ<br>
ବଗଳା କୂର୍ମ ମୂର୍ତ୍ତିଃ ସ୍ୟାନ୍ମୀନୋ ଧୂମାବତୀ ଭବେତ୍ ।<br>
ଛିନ୍ନମସ୍ତା ନୃସିଂହଃ ସ୍ୟାଦ୍ ବରାହ ଶ୍ଚୈବ ଭୈରବୀ<br>
ସୁନ୍ଦରୀ ଜାମଦଗ୍ନ୍ୟଃ ସ୍ୟାଦ୍ ବାମନୋ ଭୁବନେଶ୍ୱରୀ ।<br>
କମଳା ବୁଦ୍ଧରୂପା ସ୍ୟାଦ୍ ଦୁର୍ଗା ସ୍ୟାତ୍ କଲ୍‌କି ରୂପିଣୀ<br>
ସ୍ୱୟଂ ଭଗବତୀ କାଳୀ କୃଷ୍ଣସ୍ତୁ ଭଗବାନ ସ୍ୱୟଂ<br>
ସ୍ୱୟଂ ଚ ଭଗବାନ କୃଷ୍ଣଃ କାଳୀ ରୂପୋଽଭବଦ୍ ବ୍ରଜେ ।

କୃଷ୍ଣ ରୂପା ଭଗବତୀ କାଳିକା, ଦେବୀ ତାରିଣୀ ଶ୍ରୀରାମ ସ୍ୱରୂପ । ବଗଳା ମୁଖୀ ଦେବୀ କୂର୍ମାବତାର ମୂର୍ତ୍ତି । ଧୂମାବତୀ ମୀନାବତାର, ଛିନ୍ନମସ୍ତା ନୃସିଂହ ଏବଂ ଭୈରବୀ ବରାହାବତାର । ସୁନ୍ଦରୀ ଦେବୀ ପର୍ଶୁରାମ । ଭୁବନେଶ୍ୱରୀ ବାମନ ସ୍ୱରୂପଭୂତା ଓ ଭଗବତୀ କମଳା ବୁଦ୍ଧରୂପା, ତଥା ଦୁର୍ଗା କଲ୍‌କୀ ରୂପିଣୀ ଅଟନ୍ତି । ଶ୍ରୀକୃଷ୍ଣ ଷୋଳ କଳାପୂର୍ଣ୍ଣ ଶ୍ରୀଭଗବାନ । କାଳୀ ରୂପୀ ସ୍ୱୟଂ ଶ୍ରୀକୃଷ୍ଣ ହିଁ ବ୍ରଜରେ ହୋଇଥିଲେ ପ୍ରକଟ ।

ଶୈଳପୁତ୍ରୀ, ବ୍ରହ୍ମ ଚାରିଣୀ, ଚନ୍ଦ୍ରଘଣ୍ଟା, କୃଷ୍ମାଣ୍ଡା, ସ୍କଂଦମାତା, କାତ୍ୟାୟନୀ, କାଳରାତ୍ରୀ, ମହାଗୌରୀ ଓ ସିଦ୍ଧଦାତ୍ରୀ ନବଦୁର୍ଗା ଅଟନ୍ତି । ସେହିପରି ଦଶ ମହାବିଦ୍ୟା-

କାଳୀ ତାରା ମହାବିଦ୍ୟା ଷୋଡ଼ଶୀ ଭୁବନେଶ୍ୱରୀ<br>
ଭୈରବୀ ଛିନ୍ନମସ୍ତା ଚ ବିଦ୍ୟା ଧୂମାବତୀ ତଥା ।<br>
ବଗଳା ସିଦ୍ଧବିଦ୍ୟା ଚ ମାତଙ୍ଗୀ କମଳାତ୍ମିକା<br>
ଏତା ଦଶମହାବିଦ୍ୟାଃ ସିଦ୍ଧବିଦ୍ୟାଃ ପ୍ରକୀର୍ତ୍ତିତା ।

'ତାରା ରହସ୍ୟ' ରେ ସାଧକ କହନ୍ତି, ଏକ ଲକ୍ଷ କୋଡ଼ିଏ ହଜାର ଗ୍ରନ୍ଥ ଗମିଲିଣି, ଦେବୀ ମା' ! ତଥାପି ମୁଁ କହିପାରୁନାହିଁ, କ'ଣ କଳାତତ୍ତ୍ୱ ! ହେ ସୁରେଶ୍ୱରୀ, ସେହି କଳା ଯୋଗ ସହିତ ତୁମେ ମୋର କରିଦିଅ ସଂଯୋଗ ! କଳା ତତ୍ତ୍ୱାନୁଯାୟୀ 'ବିଦ୍ୟା' ନିଜେ କଳା । 'ମହାକାଳ ସଂହିତା' (ଦକ୍ଷିଣ ଖଣ୍ଡ)ରେ ବର୍ଣ୍ଣିତ— ଶ୍ରୀମହା ସୁନ୍ଦରୀ ରୂପଂ ବିଭ୍ରତୀ ପରମଃ କଳାଃ । ପ୍ରଣବଃ ସୁନ୍ଦରୀ ରୂପଃ କଳା ସପ୍ତକ ସଂଯୁକ୍ତ । ଅର୍ଥାତ୍-ଭଗବତୀଙ୍କ ଦିବ୍ୟ ମାନସିକ ଆତ୍ମରମଣ ଆନନ୍ଦରୁ ହୁଏ ବିନ୍ଦୁର ଉଦ୍ଭବ, ଯିଏ ଶ୍ରୀବିଦ୍ୟା ରୂପିଣୀ ଏବଂ



Source: Author, Digitized by PPRACHIN, SOA

କଳା ସପ୍ତକରେ ସଂଯୁକ୍ତ ହୋଇ ହୋଇଛନ୍ତି ପ୍ରଣବ ରୂପ । ସେହି ସପ୍ତକଳାଙ୍କୁ ସାଧକଙ୍କୁ ନିମ୍ନ ରୂପେ କରାଯାଇଛି ସିଦ୍ଧଙ୍କ ଦ୍ୱାରା ପରିଚିତ—

ଆଦୌ ପରା ବିନିର୍ଦ୍ଦିଷ୍ଟା ତତ୍ଶ୍ଚୈବ ପରାପ୍ୱରା
ତଦତୀତା ତୃତୀୟା ସ୍ୟାଞ୍ଚିତ୍ ପରା ଚ ଚତୁର୍ଥିକା ।
ତତ୍ପରା ପଞ୍ଚମୀ ଜ୍ଞେୟା ତଦତୀତା ରସାଭିଧା
ସର୍ବତୀତା ସପ୍ତମୀ ସ୍ୟାଦେବଂ ସପ୍ତବିଧା କଳା ।

ସେହି ସପ୍ତକଳା ହେଲେ ପରା, ପରାପ୍ୱରା, ପରାତୀତା, ଚିତ୍‌ପରା, ଚିତ୍ ପରାପ୍ୱରା, ଚିଦ୍‌ତୀତା ଓ ସର୍ବାତୀତା; ସେମାନେ ଓଁକାରରେ ନିବିଷ୍ଟ । ସିଏ 'ବାଙ୍‌ମାୟା' ସରସ୍ୱତୀ; ତାଙ୍କ ବୀଜମନ୍ତ୍ର ଏଂ (ବାକ୍) ଓ ହ୍ରୀଂ (ମାୟା), ସଦ୍ରୂପିଣୀ ଓ ଚିତ୍ରୂପିଣୀ । ନିଶ୍ଚିତ ସିଏ ଦୁର୍ବିଜ୍ଞେୟା ଦୁର୍ଗମା ମାତୃକା ଦେବୀ ।

'ଶାରଦା ତିଳକ' (ରାଘବଭଟ୍ଟ ଟୀକା, ପୃଷ୍ଠା ୬୦) ବର୍ଣ୍ଣନା କରିଛନ୍ତି, ତତ୍ ତ୍ରିଭେଦ ସମୁଦ୍‌ଭୂତା ଅଷ୍ଟତ୍ରିଂଶତ୍ କଳା ମତାଃ । ସୌର, ସୌମ୍ୟ ଓ ଆଗ୍ନେୟ ଭେଦରେ ସେମାନେ ଅଠତିରିଶ କଳା । ଆଦି ଶଙ୍କରାଚାର୍ଯ୍ୟ ଦିଗ୍‌ବିଜୟ ଗସ୍ତ କାଳରେ ମୂକାମ୍ବିକା ମନ୍ଦିରରେ ଦେବୀ ମୂକାମ୍ବିକାଙ୍କୁ କରିଥିଲେ ସ୍ତୁତି:

ଅଷ୍ଟୋତ୍ତର ତ୍ରିଂଶତି ଯାଃ କଳାସ୍ତାସ୍ୱର୍ଦ୍ଧ୍ୟାଃ କଳାଃ ପଞ୍ଚନିବୃତ୍ତି ମୁଖ୍ୟାଃ ।
ତାସାମୁପର୍ଯ୍ୟସ୍ୱ ତବାଙ୍ଘ୍ରିଂ ପଦଂ ବିଦ୍ୟୋତମାନଂ ବିବୁଧା ଭଜନ୍ତେ ।

'ଶ୍ରୀଦେବ୍ୟଥର୍ବଶୀର୍ଷ' ତାହାଙ୍କୁ ସୁସ୍ପଷ୍ଟ ରୂପେ କରିଛନ୍ତି ବ୍ୟକ୍ତ ଓ କରାଇଛନ୍ତି ପରିଚିତ, 'ଦେବୀଂବାଚମ୍', ସିଏ ଜନନୀ ବାକ୍; 'ର୍ବାଗସ୍ମାନୁପ ସୁଷ୍ଟୁତୈତୁ', ବାକ୍ ରୂପା ଭଗବତୀ ଉତ୍ତମ ସ୍ତୁତିରେ ସନ୍ତୁଷ୍ଟ ହୋଇ ଆମ୍ଭ ନିକଟକୁ ଆଗମନ କରନ୍ତୁ, ବୋଲି ପ୍ରାର୍ଥନା କରାଯାଇଛି । ଭାରତୀୟ ଦର୍ଶନରେ ଅନାତ୍ମ ବସ୍ତୁରେ ଆତ୍ମଖ୍ୟାତିକୁ କୁହାଯାଏ ଅବିଦ୍ୟା । ଅବିଦ୍ୟା ବିଷୟ ଭେଦରେ ଆଠ ପ୍ରକାର । ପ୍ରକୃତି, ବୁଦ୍ଧି ଅହଂକାର ଓ ପଞ୍ଚତନ୍ମାତ୍ର (ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ) ସେହି ଅଷ୍ଟ । ଏହି ଅଷ୍ଟ ପ୍ରକାର ବିଷୟ ଅନାତ୍ମାରେ ଆତ୍ମବୁଦ୍ଧି ଜନ୍ମାଏ ବୋଲି ଅବିଦ୍ୟା ନାମରେ ଅଭିହିତ । 'ଦେହୋଽହଂ ଇତି ଯା ବୁଦ୍ଧି ଅବିଦ୍ୟା ସା ପ୍ରକୀର୍ତ୍ତିତା'-ଏହି ଦେହୋଽହଂ ବୁଦ୍ଧି ହିଁ ଅବିଦ୍ୟା । 'ନାହଂ ଦେହଃ ଚିଦାତ୍ମେତି', ମୁଁ ଦେହ ନୁହେଁ ଚିଦାତ୍ମା-ଏହା ଅଟେ ବିଦ୍ୟା ବା ଜ୍ଞାନ ।

ତାନ୍ତ୍ରିକ ସଂସ୍କୃତି ଠାରୁ ବୈଦିକ ସଂସ୍କୃତିର ପାର୍ଥକ୍ୟ ପ୍ରବଳ । ବୈଦିକ ଧର୍ମ, ଦର୍ଶନ ଓ ସଂସ୍କୃତି-ଏଠାରୁ ଶକ୍ତିତତ୍ତ୍ୱ ଆତ୍ମପ୍ରକାଶ ଓ ବିକାଶ ଲାଭ କରିଅଛି । କିନ୍ତୁ ଶକ୍ତି ବା ଦେବୀ ନୁହଁନ୍ତି ବିଦ୍ୟା । ଶ୍ୱେତାଶ୍ୱତରୋପନିଷଦ ପଞ୍ଚମ ଅଧ୍ୟାୟ ପ୍ରଥମ ମନ୍ତ୍ର ବର୍ଣ୍ଣନା କରିଛନ୍ତି,



Source: Author, Digitized by PPRACHIN, SOA

ଦ୍ୱେ ଅକ୍ଷରେ ବ୍ରହ୍ମପରେ ତ୍ୱନନ୍ତେ
ବିଦ୍ୟାବିଦ୍ୟେ ନିହିତେ ଯତ୍ର ଗୂଢ଼େ ।
କ୍ଷରଂ ତ୍ୱବିଦ୍ୟାହ୍ୟମୃତଂ ତୁ ବିଦ୍ୟା
ବିଦ୍ୟାବିଦ୍ୟେ ଈଶତେ ଯସ୍ତୁ ସୋଽନ୍ୟଃ ।

ଏହାର ସଂକ୍ଷିପ୍ତ ଭାବ ଚିତ୍ତ ରଂଜନ ଦାସ କରିଛନ୍ତି ଉଲ୍ଲେଖ, ବିଦ୍ୟା ଓ ଅବିଦ୍ୟା ଦୁଇଟି ଯାକ ଅନନ୍ତ ପରଂବ୍ରହ୍ମଙ୍କ ମଧ୍ୟରେ ଗୂଢ଼ ରୂପେ ନିହିତ ହୋଇ ରହିଛି । ମାତ୍ର ଅବିଦ୍ୟା ହେଉଛି କ୍ଷର, ତାହାର ବିନାଶ ଅଛି । ବିଦ୍ୟା ହେଉଛି ଅମୃତ । ପୁଣି ଏହା ବ୍ୟତୀତ ଆହୁରି ଅନ୍ୟ ଜଣେ ଅଛନ୍ତି, ଯିଏ କି ବିଦ୍ୟା ତଥା ଅବିଦ୍ୟା ଉଭୟର ପ୍ରଭୁହୋଇ ରହିଛନ୍ତି ।

ଦ୍ୱେ ବିଦ୍ୟାବିଦ୍ୟେ, ଅର୍ଥାତ୍ ଦୁଇ ବିଦ୍ୟା ଓ ଅବିଦ୍ୟା; ବ୍ରହ୍ମପରେ ଗୂଢ଼େ ଅନନ୍ତେ, ଅର୍ଥାତ୍-ବ୍ରହ୍ମ ଠାରୁ ମଧ୍ୟ ଶ୍ରେଷ୍ଠ ଲୁଚି ରହିଥିବା ଅସୀମ 'ଅକ୍ଷରେ', ପରମ ଅକ୍ଷର ପରମାତ୍ମାରେ 'ନିହିତେ' ଥାନ୍ତିସ୍ଥିତ । କ୍ଷରମ୍=ବିନାଶଶୀଳ ଜଡ଼ବର୍ଗ, 'ଅବିଦ୍ୟା'=ଅବିଦ୍ୟା ବୋଲି କୁହାଯାଇଛି । ତୁ=ଆଉ, 'ଅମୃତମ' 'ବିଦ୍ୟା', ଯଃ=ଯିଏ, ବିଦ୍ୟାବିଦ୍ୟେ ଈଶତେ, ଅର୍ଥାତ୍ ଉପଯୁକ୍ତ ବିଦ୍ୟା ଓ ଅବିଦ୍ୟା ଉପରେ କରନ୍ତି ଶାସନ, ସଃ=ସିଏ, ଅନ୍ୟଃ=ଉକ୍ତ ଦୁଇ ବିଦ୍ୟା ଓ ଅବିଦ୍ୟା ଠାରୁ ଅଟନ୍ତି ଭିନ୍ନ ।

ଚତୁର୍ଥ ଅଧ୍ୟାୟରେ ରହିଛି ଗୋଟିଏ ପଂକ୍ତି, ମାୟାଂ ତୁ ପ୍ରକୃତିଂ ବିଦ୍ୟାନ୍ ମାୟିନଂ ତୁ ମହେଶ୍ୱରମ୍ । ଅର୍ଥାତ୍ ପ୍ରକୃତି ମାୟା, 'ମାୟିନମ'= ମାୟାପତି ବିଦ୍ୟା, 'ତୁ'=ଆଉ ବା ଏବଂ 'ମହେଶ୍ୱରମ୍' । ଋକ୍‌ବେଦ (୭/୬୦/୫)ରେ ଗୋଟିଏ ପଂକ୍ତି ରହିଛି, ଅନୃତସ୍ୟ ଭୂରେଃ, ଅର୍ଥାତ୍-ସତ୍ୟ ବଡ଼ ବିକୃତ ହୋଇ ରହିଛି । ଶବ୍‌ଦାର୍ଥରେ ନାହିଁ ସତ୍ୟ, ସତ୍ୟ ଦ୍ୱାରା ଆବୃତ୍ତ ସତ୍ୟ, ଅପ୍ରକେତଂ ସଲିଳଂ=ନିଶ୍ଚେତନାର ସମୁଦ୍ରରୁ ଆପଣାର ଅମିତ ଶକ୍ତି ବଳରେ ସେହି ଅଦ୍ୱିତୀୟ ଜ୍ୟୋତିକୁ ଜାତ କରାଇବାକୁ ହେବ ! ତାହା କଳ୍ପନା କିମ୍ବା ନୁହେଁ ଶବ୍‌ଦ୍, ତାହା ଅଦ୍ୱିତୀୟ, ତାହା ସତ୍ୟ, ଉଚ୍ଚତର ତତ୍ତ୍ୱ । ଶ୍ରୀ ଅରବିନ୍ଦ ତାଙ୍କ 'ଲାଇଫ୍ ଡ଼ିଭାଇନ୍' ଗ୍ରନ୍ଥରେ ସ୍ଥାନୀତ କରିଛନ୍ତି ଗୋଟିଏ ପ୍ରବନ୍ଧ 'ବିଦ୍ୟା ଓ ଅବିଦ୍ୟା' । ତହିଁରେ ସିଏ ସୂଚିତ କରିଛନ୍ତି, କେବଳ ଏତିକି ଜାଣିଲେ ହିଁ ଯଥେଷ୍ଟ । ମାୟା ସହିତ ଅବିଦ୍ୟା ବା ଭ୍ରମ ରୂପୀ ଏହାର ମୂଳ ତତ୍ତ୍ୱଟି ମଧ୍ୟ ରହିଛି । ବ୍ରହ୍ମର ଏହି ସାମର୍ଥଟି ଭିତରେ ବିଦ୍ୟା ଓ ଅବିଦ୍ୟା ଦୁଇଟି ଯାକ ଶକ୍ତି ଅନ୍ତର୍ନିହିତ ରହିଛି । ଆମେ କେବଳ ଏହାକୁ ସତ୍ୟ ବୋଲି ସ୍ୱୀକାର କରିନେବା ଏବଂ ବିଦ୍ୟା ମଧ୍ୟ ଦେଇ ଅବିଦ୍ୟା ଭିତରୁ ମୁକୁଳିବାର ଏକ ଉପାୟ ଖୋଜି ବାହାର କରିବା । ଯାହା ବିଦ୍ୟା ଏବଂ ଅବିଦ୍ୟା ଉଭୟର ଅତୀତ...।



Source: Author, Digitized by PPRACHIN, SOA

ବିଦ୍ୟା ଓ ଅବିଦ୍ୟାର ପାର୍ଥକ୍ୟ ଋକ୍‌ବେଦର ସ୍ତୋତ୍ରରୁ ସିଏ ଦେଖାଇଛନ୍ତି । ବିଦ୍ୟା କହିଲେ ପରମ ସତ୍ୟର ଏକ ଚେତନା, 'ସତ୍ୟଂ ଋତଂ' କୁ ବୁଝାଇ ଥାଏ । ଅବିଦ୍ୟା ସତ୍ୟ ଓ ଋତର ଏକ ଅଚେତନା ବା 'ଅଚିତ୍ତି' । 'ଅଚିତ୍ତି ହେଉଛି ବିଦ୍ୟା ଏବଂ ଜ୍ଞାନ ଚିତ୍ତି ହେଉଛି ତାହାର ବିପରୀତ; ଜ୍ଞାନ ହେଉଛି ସତ୍ୟର ଅନୁଭୂତି, ସତ୍ୟ ଚେତନାର ଦୃଷ୍ଟି' ।

ଏହି ଆଲୋଚନାରେ ଶ୍ରୀ ଅରବିନ୍ଦ ଦୃଢ଼ୀକରଣ କରିଛନ୍ତି, ଉପନିଷଦର ବେଦାନ୍ତ ବିଚାରରେ ଆମେ ମୂଳ ବୈଦିକ ଚିତ୍ତି ଓ ଅଚିତ୍ତି ସ୍ଥାନରେ ଆମ ପରିଚିତ ବିରୋଧୀ ଶବ୍ଦ ଦୁଇଟି,- ବିଦ୍ୟା ଓ ଅବିଦ୍ୟା ବ୍ୟବହୃତ ହୋଇଥିବାର ଦେଖିବାକୁ ପାଉ । (ଦିବ୍ୟଜୀବନ, ଦ୍ୱିତୀୟ ଖଣ୍ଡ ପୂର୍ବାର୍ଦ୍ଧ, ପୃଷ୍ଠା ୩୩୪, ଅନୁ. ଚିତ୍ତ ରଂଜନ ଦାସ ।)

ଶ୍ୱେତାଶ୍ୱତରୋପନିଷଦ ପଞ୍ଚମ ଅଧ୍ୟାୟ ଶେଷ ମନ୍ତ୍ରର ଶେଷ ପାଦ, କଳା ସର୍ଗକରଂ ଦେବଂ ଯେ ବିଦୁସ୍ତେ ଜହୁସ୍ତନୁମ୍, ଅର୍ଥାତ୍- 'କଳାସର୍ଗକରଂ'= ଷୋହଳ କଳାଙ୍କ ରଚନା କର୍ତ୍ତା, 'ଦେବମ'=ପରମ ଦେବ ପରମେଶ୍ୱରଙ୍କୁ, 'ଯେ'=ଯେଉଁ ସାଧକ, 'ବିଦୁଃ'= ଜାଣିଯାଏ, ସେ 'ତନୁଂ ଜହୁଃ', ଶରୀର ତ୍ୟାଗ କରେ, ଅର୍ଥାତ୍ ଆଉ ସେହି ପବିତ୍ର ଆତ୍ମା ଶରୀର ଧାରଣ କରି ନଥାଏ ବା ଜନ୍ମମୃତ୍ୟୁ ଚକ୍ରରୁ ମୁକ୍ତ ହୋଇ ରହେ । ଷୋହଳ କଳା ରଚନା କର୍ତ୍ତା ଦେବତା କିଏ ? ଆମେ ଜାଣିଛୁ ସିଏ ସ୍ୱୟଂ ପରଂବ୍ରହ୍ମ ! ଜଗନ୍ନାଥ ଯେ ଷୋଳକଳା / ତହୁଁ କଳାଏ ନନ୍ଦ ବଳା ! ଯଦିଓ ଦୁର୍ଗମ ସଂସାରରେ, କଳିଳସ୍ୟ ମଧ୍ୟେ, ଅନାଦ୍ୟନନ୍ତଂ ସ୍ରଷ୍ଟାରମନେକ ରୂପମ୍ । କିନ୍ତୁ-ବିଶ୍ୱସ୍ୟ ଏକଂ ପରିବେଷ୍ଟିତାରଂ ଜ୍ଞାତ୍ୱା ଦେବଂ ସର୍ବ ପାଶୈଃ ମୁଚ୍ୟତେ । ସମଗ୍ର ସଂସରକୁ ଘେରି ରହିଥିବା ସେହି ଦେବ, ପରମେଶ୍ୱର ପରଂବ୍ରହ୍ମଙ୍କୁ 'ଜ୍ଞାତ୍ୱା', ଜାଣି, ସମସ୍ତ ପ୍ରକାର ବନ୍ଧନରୁ ବିମୁକ୍ତ ହୋଇ ଯାଇଥାଏ ଜୀବ ।

ଅବିଦ୍ୟା ଭିତରେ ଆମେ ଜୀବନ ଧାରଣ କରି ରହି ଅଛୁ । କିନ୍ତୁ ଆମ ଭିତରେ ଅଛନ୍ତି 'ଏଷ'...ସେଇ; 'ରସୟିତା', କର୍ତ୍ତା, ବିଜ୍ଞନାତ୍ମା, 'ପୁରୁଷଃ' । ସେଇ ବିଜ୍ଞନାତ୍ମା ପୁରୁଷ ହିଁ କର୍ତ୍ତା ରୂପେ ଆମ ଭିତରେ ଅବସ୍ଥିତ ରହିଛନ୍ତି (ପ୍ରଶ୍ନୋପନିଷଦ, ୪/୯୬) । ବିଦ୍ୟା ଓ ଅବିଦ୍ୟା ଦୁଇଟି ଯାକ ଏକ ବ୍ରହ୍ମଙ୍କ ରୂପ କିନ୍ତୁ ଏକ ଅନ୍ୟର ବିପରୀତ ଏବଂ 'ଯସ୍ତୁ, ସୋଽନ୍ୟଃ', ସିଏ ଅନନ୍ତ ପରଂବ୍ରହ୍ମ, ବିଦ୍ୟା ଓ ଅବିଦ୍ୟାଙ୍କ ଈଶ୍ୱର, ସିଏ ଅନ୍ୟ ! 'ପ୍ରଶ୍ନୋପନିଷଦ'ରେ ସେହି 'ଅନ୍ୟ' 'ପୁରୁଷ' ବୋଲି କରାଯାଇଛି ପ୍ରତିପାଦିତ । 'ଷୋଡ଼ଶକଳଂ ଭାରଦ୍ୱାଜ ପୁରୁଷଂ ବେତ୍‌ଥ' ! କୋଶଳ ଦେଶ ରାଜକୁମାର ସୁକେଶା ଋଷିଙ୍କୁ ପ୍ରଶ୍ନ କରିଛି, ହେ ଭାରଦ୍ୱାଜ, ଆପଣ ଷୋହଳ କଳାଯୁକ୍ତ ପୁରୁଷଙ୍କୁ ଜାଣନ୍ତି ? ମୁଁ ମିଥ୍ୟା କହିବି ନାହିଁ, ତେଣୁ ଚୁପ୍ ରହିଲି । ରଥାରୋହଣ କରି ସେହି ରାଜକୁମାର ହିରଣ୍ୟନାଭ ନୀରବରେ ଲେଉଟି ଗଲେ । ଏହା ଶ୍ରବଣ କରି ମହର୍ଷି ପିପ୍‌ପଳାଦ୍ କହିଛନ୍ତି,



Source: Author, Digitized by PPRACHIN, SOA

"ସ ହୋବାଚ । ଇହୈବାନ୍ତଃ ଶରୀରେ ସୋମ୍ୟ ସ ପୁରୁଷୋ ଯସ୍ମିନ୍ନେତାଃ ଷୋଡ଼ଶ କଳାଃ ପ୍ରଭବନ୍ତିତି ।' ଅର୍ଥାତ୍ ହେ ପ୍ରିୟ ସୁକେଶା ! ଯେଉଁ ପରମେଶ୍ୱରଙ୍କ ଠାରୁ ଷୋହଳ କଳା ସମୁଦାୟ ସଂପୂର୍ଣ୍ଣ ଜଗଦ୍ରୂପ ତାହାଙ୍କ ବିରାଟ ଶରୀର ଉତ୍ପନ୍ନ ହୋଇଛି, ସେହି ପରମପୁରୁଷ ଆମ ଏହି ଶରୀର ଭିତରେ ବିରାଜମାନ ଅଛନ୍ତି । ଅସ୍ୟ ପରିଦ୍ରଷ୍ଟୁରିମାଃ ଷୋଡ଼ଶ କଳାଃ ପୁରୁଷାୟଣାଃ ପୁରୁଷଂ ପ୍ରାପ୍ୟାସ୍ତଂ ଗଚ୍ଛନ୍ତି; ଅର୍ଥାତ୍-ଆସ୍ୟ ପରିଦ୍ରଷ୍ଟୁଃ ଇମାଃ, ସମସ୍ତ ଦିଗରୁ ଦେଖିବାକୁ ପୂର୍ଣ୍ଣତମ ପରମେଶ୍ୱରଙ୍କ ଏହି 'ଷୋଡ଼ଶକଳାଃ' ପରମାଧାର ଓ ପରମଗତି ଅଟେ ପୌରୁଷ । ପୁରୁଷମ୍ ପ୍ରାପ୍ୟ = (ପ୍ରଳୟକାଳରେ) ପରମ ପୁରୁଷ ପରମାତ୍ମାଙ୍କୁ ପ୍ରାପ୍ତ ହୋଇ ଅସ୍ତମ୍ ଗଚ୍ଛନ୍ତି=ତହିଁରେ ବିଲୀନ ହୋଇଯାନ୍ତି ।

'ପରମାର୍ଥ ପୟୋଧି' (ପ୍ରଥମ ଖଣ୍ଡ) ରେ ରାଧାମୋହନ ରାଜେନ୍ଦ୍ର ଦେବ ଦର୍ଶାଇଛନ୍ତି ପୁରୁଷର ଷୋହଳ କଳାଗୁଡ଼ିକୁ; ସେଗୁଡ଼ିକ-୧-ପ୍ରାଣ, ୨-ଶ୍ରଦ୍ଧା, ୩-ଆକାଶ, ୪-ବାୟୁ, ୫-ଜ୍ୟୋତିଃ, ୬-ଆପଃ, ୭-ପୃଥିବୀ, ୮-ଇନ୍ଦ୍ରିୟ, ୯-ମନ, ୧୦-ଅନ୍ନ, ୧୧-ବୀର୍ଯ୍ୟ, ୧୨-ତପଃ, ୧୩-ମନ୍ତ୍ରଃ, ୧୪-କର୍ମ, ୧୫-ଲୋକ ଏବଂ ୧୬-ନାମ ।

ଷଷ୍ଠ ପ୍ରଶ୍ନର ଚତୁର୍ଥ ମନ୍ତ୍ର, ପୁରୁଷ ସର୍ଜନା କଲେ- ସ ପ୍ରାଣମସୃଜତ ପ୍ରାଣାଚ୍ଛ୍ରଦ୍ଧାଂ ଖଂ ବାୟୁର୍ଜ୍ୟୋତିରାପଃ ପୃଥିବୀନ୍ଦ୍ରିୟଂ ମନୋଽନ୍ନମନ୍ନାଦ୍ୱୀର୍ଯଂ ତପୋ ମନ୍ତ୍ରାଃ କର୍ମଲୋକା ଲୋକେଷୁ ଚ ନାମ ଚ । ଷୋଡ଼ଶ କଳା ସିଏ ସର୍ଜନା କଲେ, ହେଲେ ନାମ ରୂପେ ପୁରୁଷ । କିନ୍ତୁ ସେ-ସ ଏଷୋଽକଳୋଽମୃତୋ ଭବତି, ଅକଳା ଓ ଅମୃତ (ଅମର) ଅଟନ୍ତି ! 'ଯସ୍ତୁ ସୋଽନ୍ୟଃ' ବୋଲି ପୂର୍ବରୁ କଥିତ !

ଷଷ୍ଠ ମନ୍ତ୍ରରେ ଗୋଟିଏ ଦୃଷ୍ଟାନ୍ତ ପ୍ରଦାନ କରାଯାଇଛି, ଅରା ଇବ ରଥନାଭୌ କଳା ଯସ୍ମିନ୍ ପ୍ରତିଷ୍ଠିତ । ରଥଚକ ନାଭିର ଆଧାର, ଅରାଃ ଇବ= ଯେଉଁ ପ୍ରକାର ଅର ! ଯସ୍ମିନ୍=ଯାହାଙ୍କ ଠାରେ, କଳାଃ ପ୍ରତିଷ୍ଠିତାଃ; କଳାମାନ ପ୍ରତିଷ୍ଠିତ; 'ତଂ ବେଦ୍ୟଂ ପୁରୁଷମ୍.... !' 'ପୁରୁଷ' ବୋଲି ଜାଣ ତାଙ୍କୁ ।

ସେହି ପୁରୁଷଙ୍କୁ ଜାଣିଲେ, ମୃତ୍ୟୁଃ ମା ପରିବ୍ୟଥା ଇତି=ମୃତ୍ୟୁ ପ୍ରଦାନ କରି ପାରିବ ନାହିଁ ଦୁଃଖ ! କଳା ବ୍ୟତୀତ ସର୍ଜନା ଅସମ୍ଭବ । କଳା ନିଜେ ରୂପ ଓ ନାମ, ପ୍ରାଣ ଦ୍ୱାରା ସଂଜୀବୀତ । କଳା ରସ ! ସୃଷ୍ଟିର ନଦୀ, ବୋହି ଚାଲିଛି, ଇମାଃ ନଦ୍ୟଃ ସ୍ୟଂଦ୍ୟମାନାଃ ସମୁଦ୍ରାୟଣାଃ, ସମୁଦ୍ର ତା' ଲକ୍ଷ୍ୟ, ଲକ୍ଷ୍ୟ ପ୍ରାପ୍ତି ପରେ ନଦୀର ନାମ ଓ ରୂପ 'ସମୁଦ୍ର ଇତି ଏବମ୍' ! ଆଉ ନଦୀ ନୁହେଁ ସିଏ, ସିଏ ସମୁଦ୍ର ହୋଇ ଯାଇଥାଏ; ଯସ୍ତୁ ସୋଽନ୍ୟଃ ! ଅର ରଥର ଚକ ଏବେ ! 'ବ୍ରହ୍ମସୂତ୍ର'ର ତୃତୀୟ ଅଧ୍ୟାୟ ଚତୁର୍ଥ ପାଦ ଅଟେ ବିଦ୍ୟାତତ୍ତ୍ୱ । ପୁରୁଷାର୍ଥୋ ଶବ୍ଦାଦିତି ବାଦରାୟଣ, ଆରମ୍ଭ ସୂତ୍ର; ଦର୍ଶିତ କରେ ବିଦ୍ୟାରୁ ପୁରୁଷାର୍ଥ ହୁଏ



Source: Author, Digitized by PPRACHIN, SOA

ପ୍ରାପ୍ତି, ଭଗବାନ ବାଦରାୟଣ କହନ୍ତି । ବିଦ୍ୟାରୁ ଯେଉଁ ଫଳ ଶ୍ରବଣ କରାଯାଏ ତାହା କର୍ମଫଳ, କହନ୍ତି ଜୈମିନି । ସୁତରାଂ ସେହି ଫଳ ପୁରୁଷାକାର ଫଳ ଏବଂ କର୍ମରେ ବିଦ୍ୟାର ଶେଷ । ପୁରୁଷାକାରରୁ ଫଳର ଉତ୍ପତ୍ତି, ଫଳଶ୍ରୁତି ପୁରୁଷାର୍ଥବାଦ ! ବିଦ୍ୟା କର୍ମର ଅଙ୍ଗ ଏବଂ ବିଦ୍ୟାର କର୍ମାଙ୍ଗତ୍ୱ ଉପନିଷଦରୁ ଶ୍ରୁତ । ପଞ୍ଚମ ସୂତ୍ରରେ ବ୍ୟକ୍ତ- 'ସମନ୍ୱୟାରମ୍ଭାତ୍' ଅର୍ଥାତ୍ -ବିଦ୍ୟା ଓ କର୍ମର ସଂଯୁକ୍ତି ବ୍ୟତୀତ ଫଳ ଦୃଷ୍ଟ ହୁଏ ନାହିଁ, ଅତଏବ କର୍ମ ଅନୁମେୟ ଏବଂ ବିଦ୍ୟା ତାହାର ଅଙ୍ଗ । କିନ୍ତୁ ବାଦରାୟଣଙ୍କ ମତରେ କର୍ମ ଅପେକ୍ଷା ବିଦ୍ୟା ଶ୍ରେଷ୍ଠ । ଷୋଡ଼ଶ ସୂତ୍ରରେ କଥିତ ଯେ ସ୍ମୃତିଙ୍କ ମାନେ ବିଦ୍ୟା ଦ୍ୱାରା କି ସଂଚିତ, କି ପ୍ରାରବ୍ଧ, ସମସ୍ତ କର୍ମର କ୍ଷୟ ପ୍ରଦର୍ଶନ କରନ୍ତି, ସୁତରାଂ ବିଦ୍ୟାର ଅତିଶଯ୍ୟ ହୁଏ ପରିଲକ୍ଷିତ ।

ଏହି ବିଦ୍ୟା ଧର୍ମାନୁଷ୍ଠାନ ଦ୍ୱାରା ହୁଏ ଲବ୍ଧ ଏବଂ ଏହା ବ୍ରହ୍ମବିଦ୍ୟା (୨୩ତମ ସୂତ୍ର) । ଆଶ୍ରମ ଧର୍ମରେ ଥିଲେ ସୁଦ୍ଧା ସ୍ୱତଃ ବିରକ୍ତ ବ୍ୟକ୍ତିଙ୍କର ପୂର୍ବ ଜନ୍ମାର୍ଜିତ ଧର୍ମ ଓ ଯମ ନିୟମାଦିର ଅନୁଷ୍ଠାନର ପରିଶୁଦ୍ଧତ୍ୱ ହେତୁ ହୁଏ ବିଦ୍ୟାର ଉଦୟ (ସୂତ୍ର ୩୬) । ନିରାଶ୍ରମ ଧର୍ମ ବିଦ୍ୟାର ଶ୍ରେଷ୍ଠ ସାଧନ । ଜୀବର ପ୍ରବୃତ୍ତିର ସଂକୋଚ ପାଇଁ ଆଶ୍ରମ ବ୍ୟବସ୍ଥା । ଯେଉଁମାନଙ୍କ ପ୍ରବୃତ୍ତି କ୍ଷୟ ଯାଇଛି ସେମାନଙ୍କ ପକ୍ଷରେ ଆଶ୍ରମରେ କୌଣସି ଫଳ ଦୃଷ୍ଟ ହୁଏ ନାହିଁ ।

ବିଦ୍ୟାତତ୍ତ୍ୱର ସୂକ୍ଷ୍ମାତିସୂକ୍ଷ୍ମ ଦିଗ ଆଲୋକିତ କରିବା ସହିତ ବ୍ୟାସଙ୍କ ଉପସଂହାର ଏବଂ ମନ୍ତବ୍ୟ-ଅନାବିଷ୍କୁର୍ବନ୍ନନ୍ୱୟାତ (ସୂତ୍ର ୫୦) । ଅର୍ଥାତ୍, ବିଦ୍ୟା ଅତି ରହସ୍ୟାତ୍ମକ ବିଷୟ ଶ୍ରୁତିରେ ଉଲ୍ଲେଖ ଅଛି । ଏଣୁ ତାହା ସର୍ବତ୍ର ପ୍ରକାଶ କରିବ ନାହିଁ । ପୁଣି-ପ୍ରତିବନ୍ଧ ଅଭାବରେ ଇହ ଜନ୍ମରେ ହିଁ ବିଦ୍ୟା ଲାଭ ହୁଏ । ବିଦ୍ୟା ଉଦୟ ହେଲେ କର୍ମ ଫଳୋତ୍ପାଦନ ଅନ୍ତ ହୋଇ ହୁଏ ନିବୃତ୍ତ । ବିଦ୍ୟାକୁ ପ୍ରବନ୍ଧରେ ବିଚାର କଲେ ହୁଏ ନାହିଁ ତାହାର ଉଦୟ ! ହୃଦୟପଦ୍ମ ବା ବ୍ରହ୍ମପୁରରେ ଥାଏ ବିଦ୍ୟା, ଯେମିତି ଗୋଟିଏ ବୃକ୍ଷ ଗଣ୍ଡି ଭିତରେ ଥାଏ ଖଣ୍ଡିଏ ଚୌକୀ ବା ଟେବୁଲ୍ ! ଉପାସନା ଦ୍ୱାରା ତାହା ହୋଇଥାଏ ପ୍ରକାଶିତ । ଚତୁର୍ଥ ଅଧ୍ୟାୟ ଦ୍ୱିତୀୟ ପାଦଃ, ବିଦ୍ୟା କିପରି ହୁଏ ଉଦୟ ଓ ତାହାର ଫଳ କ'ଣ, ଅତି ବିଦ୍‌ବତାର ସହିତ ହୋଇଛି ନିରୂପିତ । ପୂର୍ବରୁ ସୂଚିତ ବିଦ୍ୟା ପୁରୁଷାର୍ଥ ପ୍ରାପ୍ତିର ପଥ । ପୁରୁଷାର୍ଥ, ଯାହା ବ୍ରହ୍ମତତ୍ତ୍ୱ । ତେଣୁ ବିଦ୍ୟା ବ୍ରହ୍ମ ଓ ବ୍ରହ୍ମ ବିଦ୍ୟା ଅଟନ୍ତି ।





Source: Author, Digitized by PPRACHIN, SOA

# ଶାସ୍ତ୍ରୀୟ କଳା ପର୍ଯ୍ୟାବରଣରେ ଆଦି କଳାର ସ୍ୱରୂପ

(କ)

ରସଶ୍ରେଷ୍ଠ ଶୃଙ୍ଗାର ଦୁଇ ପ୍ରକାର ! ସମ୍ଭୋଗ ଓ ବିପ୍ରଲମ୍ଭ । ନାୟକ ବା ନାୟିକାର ବିଯୋଗ ସ୍ଥିତିରେ ହୁଏ ବିପ୍ରଲମ୍ଭ ଏବଂ ନାୟିକା ସହିତ ନାୟକର ସଂଯୋଗରେ ଘଟିଥାଏ ସମ୍ଭୋଗ ଶୃଙ୍ଗାର । ସଂଯୋଗର ରହିଛି ସପ୍ତ ଅବସ୍ଥା । ତହିଁରେ ଭାରତୀୟ ପ୍ରେମ ଦର୍ଶନର ହୋଇଛି ବ୍ୟାଖ୍ୟା:

ପ୍ରେକ୍ଷା ଦିଦୃକ୍ଷା ରମ୍ୟେଷୁ ତିଚ୍ଚିନ୍ତା ତ୍ୱମିଳାଷକ ।<br>
ରାଗ ସ୍ତତ୍ସଙ୍ଗ ବୁଦ୍ଧିଃ ସ୍ୟାତ୍ ସ୍ନେହ ସ୍ତତ୍ ପ୍ରବଣ କ୍ରିୟା ॥<br>
ତଦ୍ଵିଯୋଗାଃସହଂ ପ୍ରେମ ରତିସ୍ତତ୍ ସହବର୍ତ୍ତନମ୍ ।<br>
ଶୃଙ୍ଗାରସ୍ତରତ ସମଂକ୍ରୀଡ଼ା ସଂଯୋଗ ସପ୍ତଧାକ୍ରମାତ୍ ॥ (ରସ ରତ୍ନାକର)

ଅର୍ଥାତ୍ ସୁନ୍ଦର ପଦାର୍ଥ ଦେଖିବା ଇଚ୍ଛାକୁ କହନ୍ତି 'ପ୍ରେକ୍ଷା' । ସେହି ପ୍ରକାର ସୁନ୍ଦର ପଦାର୍ଥକୁ ପ୍ରାପ୍ତ ହେବାକୁ ଯେଉଁ ଚିନ୍ତା ଜାଗ୍ରତ ହୁଏ ତାହା 'ଅଭିଳାଷ' । ସୁନ୍ଦର ପଦାର୍ଥ ସହିତ ସଂସର୍ଗ ବୃଦ୍ଧି ଅଟେ 'ରାଗ' । ସେଥିପାଇଁ କରିବା ଚେଷ୍ଟାକୁ କହନ୍ତି 'ସ୍ନେହ' । ସେହି ପଦାର୍ଥ ସହିତ ହେବା ବିଯୋଗକୁ ନ ସହିବାକୁ କହନ୍ତି 'ପ୍ରେମ' । ଅଭୀଷ୍ଟ ପଦାର୍ଥ ସହିତ ରହିବାକୁ କହନ୍ତି 'ରତି' ଏବଂ ତାହା ସହିତ କ୍ରୀଡ଼ାକୁ 'ଶୃଙ୍ଗାର' ବୋଲି ଆଖ୍ୟା ଦିଆ ଯାଇଛି । ଖ୍ରୀଷ୍ଟିୟାନ୍ ଦୃଷ୍ଟିକୋଣରୁ 'ଲଭ୍ ହ୍ୟୁମ୍ୟାନ୍ ଏଣ୍ଡ୍ ଲଭ୍ ଡିଭାଇନ୍' ଅଧ୍ୟାୟରେ ନଳିନୀ କାନ୍ତ ଗୁପ୍ତ ଦର୍ଶାଇଛନ୍ତି, A most simple primal and primaval lyric love will most suit Satan's purpose. Hence the Margaret episode, Love=Passion=Lust=Hell; that is the inevitable equation sequence, and through which runs the magic thread of infatuation !

ଭାରତୀୟ ରସତତ୍ତ୍ୱବିଦ୍ କହନ୍ତି, ରସର ଉନ୍ମୀଳନ ତଥା ରୂପ ହୃଦୟଙ୍ଗମ ପାଇଁ ନିଜ ହୃଦୟର ଭାବକୁ ଚିହ୍ନିବାକୁ ହୁଏ । ଭାବ ମାନସ ଜଗତର ଅର୍ଦ୍ଧଚେତନ ବା ଅଚେତନ ମଧ୍ୟରେ ରହିଥାଏ ଛପି । ଏହି ଭାବ ଦୁଇ ପ୍ରକାର କାରଣରୁ ହୋଇଥାଏ ଉତ୍ପନ୍ନ ।



Source: Author, Digitized by PPRACHIN, SOA

ପୂର୍ବଜନ୍ମ ସଂସ୍କାର କାରଣରୁ ନିଜ ସତ୍ତା ଏହା ତିଆରି କରି ରଖିଥାଏ । ପୁଣି ବହୁ ଭାବ ମାନବର ଲୌକିକ ଜୀବନ ତଥା ବ୍ୟବହାରିକ ଆଚରଣରୁ ହୋଇଥାଏ ଉତ୍ପନ୍ନ ।

'ଭାବ' ସହଯୋଗରେ 'ରସ' ରୂପରେହୁଏ ପରିଣତ । ପୁନଶ୍ଚ-ଭାବ ମଧ୍ୟ ଦୁଇ ଭାଗରେ ବିଭକ୍ତ । ସ୍ଥାୟୀ ଭାବ ଓ ବ୍ୟଭିଚାରୀ ଭାବ । ସ୍ଥାୟୀଭାବ ନଅ ପ୍ରକାର ଏବଂ ତାହାକୁ ନଅ ରସରେ କରାଯାଇ ଥାଏ ଅଭିବ୍ୟକ୍ତ । ସ୍ଥାୟୀ ଭାବ ପ୍ରାରମ୍ଭରେ ରହିଛି 'ରତି' । ଏହାକୁ ଶୃଙ୍ଗାର କରିଥାଏ ଅଭିବ୍ୟକ୍ତି । ବ୍ୟଭିଚାରୀ ଭାବ ତ୍ରେତିଶ ପ୍ରକାର । ଭାବ ହୃଦୟର ଏକ ବିକାର । ପୂର୍ବ ଜନ୍ମ ସଂସ୍କାରରୁ ହୁଏ ପ୍ରେମ ଭାବ ଉତ୍ପନ୍ନ । ଏହାର ଅନ୍ୟ ଏକ ପ୍ରମାଣ-ପୂର୍ବ ଜନ୍ମୋଂ ମେ କିୟେ ଗୟେ ଆପନେ କର୍ମୋକେ କାରଣ ହୀ ବର୍ତ୍ତମାନ ମେଂ ଜନ୍ମ ମେଂ ହମ୍ ଏକ ଦୁସରେକେ ନିକଟ ଆତେ ହେଁ । ୟହ ଆକର୍ଷଣ ଔର ନିକଟତା ବାସ୍ତବ ମେଂ ପୂର୍ବ ଜନ୍ମୋ କା ପରିଣାମ ହେଁ । ଇସମେଂ ସେ କୁଛ କେ ହମ୍ ଋଣୀ ହୋତେ ହେଁ ଅଉର୍ କୁଛ୍ ହମାରେ ଋଣୀ ହୋତେ ହେଁ । ....ପୂର୍ବ ଜନ୍ମୋଂ ମେ କିୟେ ଗୟେ ଅପନେ କର୍ମୋଂ କେ ଫଳ ସ୍ୱରୂପ ହୀ ଏକ ଦୁସରେ କେ ପ୍ରତି ଆକର୍ଷିତ ହୋତେ ହେଁ । (କାରଣ ପାତ୍ର, ପୃଷ୍ଠା ୧୮୯, ପଣ୍ଡିତ ଅରୁଣ କୁମାର ଶର୍ମା, ବିଶ୍ୱବିଦ୍ୟାଳୟ ପ୍ରକାଶନ, ବାରଣାସୀ ।)

ଆଦ୍ୟା ରଙ୍ଗାଚାର୍ଯ୍ୟ ତାଙ୍କ ସଂଦର୍ଭ 'ସେକ୍ସ ଏଣ୍ଡ୍ ଇଣ୍ଡିଆନ୍ ଲିଟିରେଚର'ରେ 'ରତି' କ'ଣ, ଦର୍ଶାଇଛନ୍ତି- In Indian literature, sex experience, called 'Rati', has been recognised by rhetoricians as the king of rasas (rasa being the enjoyment or involvement of the reader in what he reads). It is not the physical pleasure of the sexual act but the total catharsis, ଉଚ୍ଚ ପଦରେ ଅଧିଷ୍ଠିତ କଳାରେ ଦର୍ଶକ ଓ ଶ୍ରୋତାଙ୍କ ଭାବ ପ୍ରବଣତା କରିଥାଏ ମୋଚନ ଯାହା, ତାହା 'ରତି' । 'ରତି' ସହବାସ ବି ! ଆଗକୁ 'ରସ'ର ଭାବ ସୂଚିତ କରିଛନ୍ତି, 'Rasa' as the quality of 'losing oneself' in the enjoyment ! ତାହା ଯଥାର୍ଥ ଭାବେ ଏକ୍ ଅନୁଭବ, ସଂଭ୍ରାନ୍ତ ଯୌନ ସଂପର୍କୀୟ ଅନୁଭବ (distinguishes sexual experience) । ପ୍ରେମ ରସ ଶୃଙ୍ଗାର, 'Called the king of all the Rasas' ! ଶୃଙ୍ଗାରର ବ୍ୟାଖ୍ୟା କରିଛନ୍ତି – Shringara Rasa is described as of two Kinds-Viz . SAMBHOGA-enjoyment (the same word also means copulation') and VIPRALAMBHA-separation or non -fulfilment; ବିଚ୍ଛେଦ ବା ଅପୂର୍ଣ୍ଣ ତୃଷା ବର୍ଣ୍ଣନା ବିପ୍ରଲମ୍ଭ ହେବା ବେଳେ 'ସମ୍ଭୋଗ' ଅର୍ଥ ସହବାସ ମଧ୍ୟ ! ଆଦ୍ୟା ରଙ୍ଗାଚାର୍ଯ୍ୟ 'ଅନଙ୍ଗରଙ୍ଗ' ପ୍ରଣେତା ଚତୁର୍ଦ୍ଦଶ ଶତକ କବି କଲ୍ୟାଣ ମଲ୍ଲଙ୍କ ଉକ୍ତିକୁ କରିଛନ୍ତି



Source: Author, Digitized by PPRACHIN, SOA

ସ୍ମରଣ, ପୁରୁଷଟି ପାଇଁ ସ୍ତ୍ରୀଟିଏ ଏବଂ ସ୍ତ୍ରୀଟି ପାଇଁ ପୁରୁଷଟିଏ ପଶୁହୋଇ ରହିଯିବ ! ଯଦି ଭାବ ଓ ରସ ସହିତ ତାହାର ସଂପର୍କ ଓ ପରିଚୟ ନଥିବ ! ପଶୁ ପାଇଁ ପ୍ରେମ ସହବାସ, ମାନବ ପାଇଁ ପ୍ରେମ ଜୀବନର ସର୍ବସ୍ୱ ! ପ୍ରେମ ସୃଷ୍ଟିର ସର୍ବସ୍ୱ, ସଂସ୍କାର ତିଷ୍ଠିରହିବା ପାଇଁ ପରମ ଉତ୍ସ ! ସାମାଜିକ ଶାନ୍ତି ଓ ସୌହାର୍ଦ୍ଦ ପାଇଁ ସହବାସକୁ 'ପ୍ରେମ'ରେ ନିୟନ୍ତ୍ରିତ କରାଯାଇଛି ।

ସାହିତ୍ୟ ଲାଙ୍ଗୁଏଜ୍ ଅଫ୍ ସିଭିଲାଇଜେସନ୍ ! ପାଶବିକ ମୈଥୁନକୁ ମଝି ରାତ୍ରୀରେ ଅଟକାଇ ଦିଆଯାଇଛି । ମାନବିକତାର ଔଜଲ୍ୟ ତାହାକୁ ପ୍ରେମରୂପେ ଆରାଧନା କରିଛି ଓ କରିଛି ତାହାର ଗୁଣଗାନ । ତାହାର ସ୍ୱର୍ଗୀୟ ସୁଖ, ଗୁଣ ଓ ଗୌରବକୁ ସର୍ବଜନ ମଧ୍ୟରେ କରାଯାଇଛି ଉଚ୍ଚାରଣ । ପ୍ରେମ ନୁହେଁ ମଧ୍ୟରାତ୍ରୀର ନିଷିଦ୍ଧ କର୍ମ । କ୍ରିଷ୍ଣ ଚୈତନ୍ୟ 'ଭର୍ତ୍ତୃହରି' ଆଲୋଚନାରେ କରିଛନ୍ତି ବ୍ୟକ୍ତ, ପ୍ରେମ ଏକ ପ୍ରାକୃତିକ ସ୍ପନ୍ଦନ । ଏହି ସ୍ପନ୍ଦନ ବ୍ୟତୀତ ହୋଇ ପାରେ ନାହିଁ କିଛି ଆନନ୍ଦମୟ ଓ ଶୋଭାଯୁକ୍ତ । ଚେତନାର ଉପକୂଳ ପ୍ରେମ ବ୍ୟତୀତ ହୋଇ ପାରେ ନାହିଁ ଆଲୋକିତ ! Love could flower on sex and could turn in to love of all things beautiful. (Indian Literature, July-August 1991, Page-120) ସୃଷ୍ଟିର ବସନ୍ତ ଋତୁ ପ୍ରେମ, ଫୁଟାଏ ପୁଷ୍ପ ଏବଂ ଦିଗ୍‌ବିଦିଗକରେ ସୌନ୍ଦର୍ଯ୍ୟମୟ । ପ୍ରେମର ଆତ୍ମା ସୌନ୍ଦର୍ଯ୍ୟ ଏବଂ ଏହାର ପରିଣତି ଆନନ୍ଦ, ଏ ଆନନ୍ଦ ଅନିର୍ବଚନୀୟ ! ଉପନିଷଦ ଶବ୍ଦ ତାହା, ତାହା ଚିହ୍ନା ସୁଖ ନୁହେଁ, ଅନ୍ତର୍ଚେତନାରୁ କ୍ଷରିତ ନିର୍ଝର । ବ୍ରହ୍ମାନଂଦ ସହୋଦର !

(ଖ)

ପ୍ଲାଟୋଙ୍କ 'ସିମ୍ପୋଜିୟମ୍'ର ବିଷୟ ଥିଲା ପ୍ରେମ । 'ସିମ୍ପୋଜିୟମ୍'ର ସଂଳାପରୁ ସୃଷ୍ଟି 'ପ୍ଲାଟୋନିକ ଲଭ୍' । ପ୍ରେମିକ ଚାହେଁ ନାହିଁ ପ୍ରେମିକାର ଦେହ, ସିଏ ଚାହେଁ ତା' ହୃଦୟ, ଏହା ହେଉଛି ତାର ପ୍ଲାଟୋନିକ୍ ଲଭ୍ । ଆବେଗମୟ ପ୍ରାଣର ବ୍ୟାକୁଳତା, ଯାହା ରୋମାଣ୍ଟିକ୍ କବିତାରୁ ମିଳେ ! ସକ୍ରେଟିସ୍‌ଙ୍କ ମତ ନିଜ ସୃଷ୍ଟି ମଧ୍ୟରେ ଅମରତ୍ୱ ଲାଭ କରିବାର ବ୍ୟାକୁଳତା ହେଉଛି ପ୍ରେମ । ସୌନ୍ଦର୍ଯ୍ୟ ପ୍ରତି ଆକର୍ଷଣ ନୁହେଁ ପ୍ରେମ, ସୌନ୍ଦର୍ଯ୍ୟ ମାଧ୍ୟମରେ ସୃଷ୍ଟି କରିବାର କାମନା ଅଟେ ପ୍ରେମ । ସୌନ୍ଦର୍ଯ୍ୟ ମାଧ୍ୟମରେ ସୃଷ୍ଟି କରିବାକୁ ଏକାନ୍ତ ଭାବେ କାମନା କରୁଥିବା ବ୍ୟକ୍ତି ହିଁ ଅଟେ ପ୍ରେମିକ ! ପ୍ରେମିକ ଯୁବତୀର ଦୈହିକ ସୌନ୍ଦର୍ଯ୍ୟ ପ୍ରତି ଆକୃଷ୍ଟ ହୋଇ ହୁଏ ପ୍ରାରମ୍ଭରେ ପ୍ରେମ ପଥିକ । ତା' ସହିତ ତାକୁ ସୁଖ ଲାଗିଲା ଭଳି ବଡ ବଡ କଥା ଗପିବା ଏବଂ ସ୍ୱପ୍ନ ଦେଖାଇବାରେ ରହେ ରତ । ପ୍ରେମିକା ସୌନ୍ଦର୍ଯ୍ୟରେ ସାଦୃଶ୍ୟ ଥିବା ସୁନ୍ଦର ବସ୍ତୁମାନଙ୍କୁ ଦେଖିହୁଏ ଆନନ୍ଦିତ । ସେହି ଆନନ୍ଦ ଓ



Source: Author, Digitized by PPRACHIN, SOA

ପ୍ରେମିକା ସୌନ୍ଦର୍ଯ୍ୟ ଦିନେ ତା' ପାଇଁ ଖୋଲିଦିଏ ପାର୍ଥିବ ସୌନ୍ଦର୍ଯ୍ୟର ଦ୍ୱାର । ତାହା ପରବର୍ତ୍ତୀ ସୋପାନ, ଦେହିକ ଓ ପାର୍ଥିବ ଜଗତର ଊର୍ଦ୍ଧ୍ୱସ୍ଥ ଆତ୍ମାର ସୌନ୍ଦର୍ଯ୍ୟ ପ୍ରତି ଆକର୍ଷିତ ପ୍ରେମ ! ବିଶାଳ ସୌନ୍ଦର୍ଯ୍ୟ ସମୁଦ୍ର କ୍ରମଶଃ ହୁଏ ତାହା ସମ୍ମୁଖରେ ଆବିର୍ଭୁତ । ଏକାଗ୍ର ଚିତ୍ତ ଓ କଠୋର ପରିଶ୍ରମ କରି ସୌନ୍ଦର୍ଯ୍ୟ ସମୁଦ୍ରକୁ ଉପଭୋଗ କରୁକରୁ ଅପ୍ରତ୍ୟାଶିତ ଭାବେ ଦିନେ ଉଦ୍ଭାସିତ ହୁଏ ଅଦ୍ଭୁତ ଅପରୂପ ସ୍ୱୟଂ ସୌନ୍ଦର୍ଯ୍ୟ, ଯାହା ପ୍ରେମର ଶେଷ ପାବଚ୍ଛ । ସକ୍ରେଟିସ୍‌ଙ୍କ ଦୃଷ୍ଟିରେ ସେହି ଅପରୂପ ଶାଶ୍ୱତ ସୌନ୍ଦର୍ଯ୍ୟ ହିଁ ପ୍ରେମିକର ପ୍ରେମିକା । ତାଙ୍କୁ ନ ଭେଟିବା ପର୍ଯ୍ୟନ୍ତ ପ୍ରଶମିତ ହୋଇ ନଥାଏ ମାନବ ପ୍ରାଣର ତୃଷ୍ଣା ଓ ବ୍ୟାକୁଳତା ।

ପୂର୍ବରୁ କୁହାଯାଇଛି ନିଜ ସୃଷ୍ଟି ମଧ୍ୟରେ ଅମରତ୍ୱ ଲାଭ କରିବା ବ୍ୟାକୁଳତା ଅଟେ ପ୍ରେମ । 'ସୃଷ୍ଟି' ଅର୍ଥ ସାଧାରଣ ଲୋକଙ୍କ ପାଇଁ ସନ୍ତାନ ସୃଷ୍ଟି, ପୁତ୍ର, ପୌତ୍ର ଓ ପ୍ରପୌତ୍ରମାନଙ୍କ ସୃଷ୍ଟିଦ୍ୱାରା ନିଜକୁ ମୃତ୍ୟୁଞ୍ଜୟୀ କରିବା ଅକାଂକ୍ଷା । ଏହା ତାହାର 'ମଙ୍ଗଳ' ଏବଂ 'ମଙ୍ଗଳ' ଲାଭ ପାଇଁ ଗ୍ରହଣ କରିଥିବା ନିର୍ଦ୍ଦିଷ୍ଟ ପନ୍ଥାଟି ଅଟେ ପ୍ରେମ ଓ ସେହି ବ୍ୟକ୍ତିଟି ପ୍ରେମିକ ବୋଲି ସକ୍ରେଟିସ୍‌ଙ୍କଦ୍ୱାରା ହୋଇଛି ନିର୍ଣ୍ଣୀତ ।

ପ୍ରେମ ଜୀବଧର୍ମ । ଜୀବଧର୍ମ ଅର୍ଥ ଯୌନ ସଂପର୍କ । ଯୌନ ସଂପର୍କ କାମନା ଆଭିମୁଖ୍ୟ ପ୍ରେମିକଟିକୁ ଅଶ୍ଳୀଳ ବୋଲି କରାଯାଇଛି ଅଭିହିତ । 'ପ୍ରକୃତ ପ୍ରେମିକର ପ୍ରେମ ଗ୍ରହଣ କରିବା ପ୍ରଶଂସନୀୟ ଓ ଅଶ୍ଳୀଳ ପ୍ରେମିକ ସହିତ ସଂପର୍କ ରଖିବା ନୀଚତା ବୋଲି କହିଛନ୍ତି ପୌସାନିଅସ୍ ।' (ସକ୍ରେଟିସ୍ ଓ ପ୍ଲେଟୋ, ପୃଷ୍ଠା ୩୧୧ / ଶରତ କୁମାର ମହାନ୍ତି ।)

ପ୍ରେମ ଅଶ୍ଳୀଳ ଓ ସ୍ୱର୍ଗୀୟ । ସ୍ୱର୍ଗୀୟ ପ୍ରେମ ପ୍ରଶଂସନୀୟ । ଯେଉଁଠି କେବଳ ଦେହ କାମନା ରହେ ତାହା ଯୌନ ଓ ଅଶ୍ଳୀଳ । ତେଣୁ ପୌସାନିଅସ୍ କହନ୍ତି, ଅଶ୍ଳୀଳ ପ୍ରେମିକ କେବଳ ଦେହ କାମନା କରେ । ପ୍ରେମିକା ନିର୍ବୋଧ ହେଲେ ତାକୁ ଭୁଲାଇବା ସହଜ । ଏହି କାରଣରୁ ଅଶ୍ଳୀଳ ପ୍ରେମିକ ଚାହେଁ ଯେ ତା'ର ପ୍ରେମିକା ନିର୍ବୋଧ ହେଉ । (ସକ୍ରେଟିସ୍ ଓ ପ୍ଲେଟୋ, ପୃଷ୍ଠା ୩୧୦/ ଶରତ କୁମାର ମହାନ୍ତି) ।

ଗ୍ରୀକ୍ ଦେବତା 'ଏରସ୍' ସୃଜନକାରୀ ଦେବତା ଏବଂ ସୃଜନ ଆକାଂକ୍ଷା ଅଟେ ପ୍ରେମ, ଗ୍ରହଣ କରି ଥିଲେ ପ୍ଲାଟୋ । 'ଏରସ୍'ଙ୍କ ହେଲେ କୃପା ମନୁଷ୍ୟ ପ୍ରାପ୍ତ ହୋଇଥାଏ ପ୍ରେମ । ପୁଣି ସେହି 'ଏରସ୍' କବିଗୁରୁ । ଅତି ଶୁଷ୍କ ଓ ନୀରସ ବ୍ୟକ୍ତି ପ୍ରେମରେ ପଡ଼ିଲେ ହୋଇଯାଏ କବି । ଏରସ୍ ଏହି କବିତ୍ୱ ଦାନ କରନ୍ତି । କେବଳ କାବ୍ୟ-କବିତା ନୁହେଁ, ସିଏ ସମସ୍ତ କଳାର ଦେବତା ! ତେଣୁ କବିତା ଓ ପ୍ରେମ ଏକ କଥା ! ପୁଷ୍ପରେ ସୁବାସପରି ଦୁଇଟି ଯାକରେ ପ୍ରଚ୍ଛନ୍ନ ସୌନ୍ଦର୍ଯ୍ୟ ପ୍ରଦାନ କରିଥାଏ ଆନନ୍ଦ ।



Source: Author, Digitized by PPRACHIN, SOA

ଆରିଷ୍ଟୋଫେନ୍ସ ତାଙ୍କ ଭାଷଣରେ ଦର୍ଶାଇଛନ୍ତି, 'ସୃଷ୍ଟିଦିନ ଠାରୁ ମନୁଷ୍ୟ ତା'ର ଅର୍ଦ୍ଧାଙ୍ଗକୁ ଖୋଜି ଆସୁଛି । ମନୁଷ୍ୟ ଯେପରି ବ୍ୟାକୁଳ ଭାବେ ନିଜର ଅର୍ଦ୍ଧାଙ୍ଗକୁ ପାଇବାକୁ ଇଚ୍ଛା କରେ ତାହା ହିଁ ପ୍ରେମ । ଯେଉଁ ମଣିଷର ପ୍ରେମ ଅଭିଯାନ ସଫଳ ହୋଇଛି, ଯିଏ ତା'ର ଅର୍ଦ୍ଧାଙ୍ଗକୁ ଖୋଜି ପାଇଛି, ତାହାଠାରୁ ଅଧିକ ସୁଖୀ ନାହିଁ କେହି ।'

ସୃଷ୍ଟି ଆଦ୍ୟରେ ଥିଲେ ବର୍ତ୍ତୁଳାକାର ଜୀବ । ଗୋଟିଏ ମୁଣ୍ଡ କିନ୍ତୁ ଦୁଇଟି ମୁହଁ, ଚାରିହସ୍ତ ଓ ଚାରି ପାଦ । ଦୁଇଟି ମନୁଷ୍ୟ ପରସ୍ପର ପିଠିକୁ ଆଉଜି ବିପରୀତ ଦିଗକୁ ମୁହଁମାନ ଥିଲେ । ଏମାନେ ଦ୍ୱିଲିଙ୍ଗ ବିଶିଷ୍ଟ । ଶକ୍ତିଶାଳୀ ହୋଇ ସ୍ୱର୍ଗ ଆକ୍ରମଣ କରିବାକୁ ଉଦ୍ୟମ କରିବାରୁ ଜିଅସ୍ ମଝିରୁ କାଟି ସମାନ ଦୁଇ ଭାଗରେ ସେମାନଙ୍କୁ କରିଦେଲେ ବିଭକ୍ତ । ଦ୍ୱିଲିଙ୍ଗ ବିଶିଷ୍ଟ ଜୀବଟି ସ୍ତ୍ରୀ ପୁରୁଷ, ଦୁହେଁ ମିଳିତ ହେଲେ ହୁଅନ୍ତି ଏକ ଏବଂ ଜଣେ ଅନ୍ୟଜଣଙ୍କର ଅର୍ଦ୍ଧାଂଶ । ପୁରୁଷର ସ୍ତ୍ରୀ ଅର୍ଦ୍ଧାଙ୍ଗିନୀ ହେବା ବେଳେ ସ୍ତ୍ରୀର ପୁରୁଷ ଅର୍ଦ୍ଧାଙ୍ଗ ।

ଖଣ୍ଡିତ ଅର୍ଦ୍ଧାଂଶ ଜୀବ ନିଜର ସଠିକ୍ ଅର୍ଦ୍ଧାଙ୍ଗକୁ ଏକାକାର ହେବାର ପ୍ରବଳ ଇଚ୍ଛା ହେତୁ ଖୋଜିବ ଏବଂ ଆଦୌ ତାହାକୁ ପ୍ରାପ୍ତ ହେବ ନାହିଁ । ମୃତ୍ୟୁ ଓ ଜନ୍ମ ଚକ୍ର ଗତି କରୁଥିବ, ସିଏ ଖୋଜୁଥିବ । ତେଣୁ ଆରିଷ୍ଟୋଫେନ୍ସ କହନ୍ତି, ନିଜ ଅର୍ଦ୍ଧାଙ୍ଗକୁ ଖୋଜି ପାଇବା ଏକ ଆଦର୍ଶ ଓ ତାହା ସର୍ବଶ୍ରେଷ୍ଠ ପ୍ରେମ । ମନୁଷ୍ୟ ନିଜ ପ୍ରକୃତି ସହିତ ଖାପ ଖାଉଥିବା ଯୋଗ୍ୟ ସାଥିଟିଏ ବାଛି ବୈବାହିକ ବନ୍ଧନରେ ତା' ସହିତ ସାରା ଜୀବନ ବାନ୍ଧି ହୋଇ ରହି ସଫଳ ଓ ସୁଖୀ କାଳାତି ପାତ କରୁଅଛି । ପ୍ରେମ ଏକ ସୃଜନ ଆକାଂକ୍ଷା, ସନ୍ତାନ ସୃଷ୍ଟି ମାଧ୍ୟମରେ ତା' ବ୍ୟାକୁଳତାକୁ କରାଉ ଅଛି ପ୍ରଶମିତ । ମାନବର ମୃତ୍ୟୁଂଜୟୀ ହେବା ମଂଗଳ ଆକାଂକ୍ଷା ବା କଲ୍ୟାଣ ଲାଭ ଆକାଂକ୍ଷା ହେଉଛି ଚରିତାର୍ଥ ।

(ଗ)

ଇସ୍ତାହାର-୯, 'ମୋ ଲେଖା ମୋ ଅନୁଭୂତି', ନିତ୍ୟାନନ୍ଦ ମହାପାତ୍ର ଲେଖିଛନ୍ତି, 'ସୃଷ୍ଟି ଦ୍ୱିବିଧ । ଗୋଟିଏ ଇନ୍ଦ୍ରିୟାନୁଗ । ଆଉ ଗୋଟିଏ ଇନ୍ଦ୍ରିୟାତୀତ । ଉଭୟ ମୂଳରେ ଗୋଟାଏ ସ୍ୱାଭାବିକ ବା ସହଜାତ ଆକର୍ଷଣ ଥାଏ । ସେ ଆକର୍ଷଣ ବିନା ସୃଷ୍ଟି ମଧ୍ୟ ସାଧ୍ୟ ନୁହେଁ । ସେ ଆକର୍ଷଣ ମଧ୍ୟ ସୃଷ୍ଟି ଭେଦରେ ଦ୍ୱିବିଧ । ତାକୁ ଶାସ୍ତ୍ରକାରମାନେ 'କାମ' ଓ 'ପ୍ରେମ' ନାମରେ ଅଭିହିତ କରିଛନ୍ତି । କାମ, ଇନ୍ଦ୍ରିୟାନୁଗ । ସମସ୍ତ ଇନ୍ଦ୍ରିୟକୁ ସ୍ୱୀକାର କରି ଯେଉଁ ଆକର୍ଷଣ ସ୍ତ୍ରୀ ଓ ପୁରୁଷଙ୍କୁ ସୃଷ୍ଟି କ୍ରିୟାରେ ପ୍ରବୃତ୍ତ କରେ ତାହା କାମ । ଏହା କାମନା ନୁହେଁ । ଖାଲି ଏକାଙ୍ଗିଆ କାମ । ଯାହାର ନାମାନ୍ତର ମଦନ ମନ୍ମଥ ମାର ପ୍ରଦ୍ୟୁମ୍ନ ମୀନକେତନ ଇତ୍ୟାଦି । ଆମେ ଗ୍ରାମ୍ୟ ବା ପଲ୍ଲୀଭାଷାରେ ତାକୁ 'ସୁଖ ପାଇବା' କହୁଥିଲୁଁ ।'



Source: Author, Digitized by PPRACHIN, SOA

'ଭଲପାଇବା' ଉତ୍ପତ୍ତିର ମୂଳ ଏହି 'ସୁଖ ପାଇବା' ଅନୁଭବ । ତାଙ୍କ ସାଂସ୍କୃତିକ ଦୃଷ୍ଟିରେ 'ଆମ ଇଂରାଜୀ ପଢୁଆମାନେ ବଙ୍ଗଳା ମାଧ୍ୟମରେ ପାଠ ପଢୁଥିଲା ବେଳେ 'ବଙ୍ଗଳା'ର 'ଭାଲବାସା' କୁ ଭଲ ପାଇ 'ଭଲପାଇବା' କହିଲେ । ଏବେ ବହୁ ପ୍ରେମ ପତ୍ରରେ ଏହି 'ଭଲ ପାଇବା' ଅବିର୍ଭୂତ ।' ଆକର୍ଷଣର ଘନୀଭୂତ ରୂପ ଏଇ ଭଲ ପାଇବା ନିର୍ଭର କରୁଛି ପ୍ରତି ଇନ୍ଦ୍ରିୟର ପୁଷ୍ଟି ଉପରେ, ଦର୍ଶାଇବା ସହିତ ନିତ୍ୟାନନ୍ଦ ମହାପାତ୍ର ବର୍ଣ୍ଣନା କରିଛନ୍ତି, 'ସମସ୍ତ ଇନ୍ଦ୍ରିୟ ଗ୍ରାମଗ୍ରାହ୍ୟ ଖାଲି ଗୋଟାଏ ଶିଶ୍ନ ପରାୟଣତା ନୁହେଁ । ଇନ୍ଦ୍ରିୟମାନଙ୍କ ମଧ୍ୟରେ ମୁଖ୍ୟ ସ୍ଥାନ ଏ ସ୍ଥଳରେ ଗ୍ରହଣ କରିଥାନ୍ତି ଦୁଇଟି ଅସ୍ଥିହୀନ ଇନ୍ଦ୍ରିୟ-ଜିହ୍ୱା ଓ ଜନନେନ୍ଦ୍ରିୟ । ଶୃଙ୍ଗାରର ସର୍ବଶ୍ରେଷ୍ଠ ପରିପୋଷକ ଅଧର ଓ ଜିହ୍ୱା । ମାତ୍ର ଅନ୍ୟାନ୍ୟ ଇନ୍ଦ୍ରିୟମାନଙ୍କ ଭଳି ଏମାନେ ନିଜେନିଜେ ସୃଷ୍ଟିଶୀଳ ନୁହଁନ୍ତି ।' ସୃଷ୍ଟିରେ ଦୁହେଁ ପରୋକ୍ଷ ସହାୟତା କରନ୍ତି କିନ୍ତୁ ଏମାନଙ୍କର କ୍ରିୟାଶୀଳତା ଜନନେନ୍ଦ୍ରିୟ ପରି ନୁହେଁ ପ୍ରତ୍ୟକ୍ଷ । ଜନନେନ୍ଦ୍ରିୟର ଭୋଗ ସହାୟକ ଏମାନେ ଏବଂ ଭୋଗର ଭାଗୀଦାର । ପ୍ରତ୍ୟେକ ଇନ୍ଦ୍ରିୟ ମନ ମାଧ୍ୟମରେ ହିଁ ଭୋଗରେ ବସାନ୍ତି ଭାଗ । ଯେଣୁ ମାନବ ମନ ସମସ୍ତ ଇନ୍ଦ୍ରିୟଙ୍କ ସ୍ୱାମୀ !

ନିତ୍ୟାନନ୍ଦ ମହାପାତ୍ର ଲକ୍ଷ୍ୟ କରିଛନ୍ତି- ପ୍ରତ୍ୟେକ ଶ୍ରେଷ୍ଠ ଇନ୍ଦ୍ରିୟ ଅନଙ୍ଗ ମନ ମାଧ୍ୟମରେ ଅଂଶ ଗ୍ରହଣ କରନ୍ତି ଏବଂ ଲିଙ୍ଗ ହିଁ ତାର କାରଣ !

'ଲିଙ୍ଗର ଅର୍ଥ କାରଣ, ଲିଙ୍ଗର ଅର୍ଥ ପ୍ରତୀକ । ପଞ୍ଚ ଭୌତିକ ଶରୀରର ପ୍ରତୀକ ଏଇ ଲିଙ୍ଗ । ପୁଣି ନବ ପଞ୍ଚ ଜ୍ଞାନେ ପଞ୍ଚ ଭୌତିକ ସୃଷ୍ଟିର ହେତୁ ସେହି ଲିଙ୍ଗ । ନବସୃଷ୍ଟିରେ ମନ ଓ ଅନ୍ୟ ପଞ୍ଚଜ୍ଞାନେନ୍ଦ୍ରିୟର ଗୁଣ ବାୟୁରେ ବାଷ୍ପର ସଞ୍ଚାରଭଳି ଅବଶ୍ୟ ସଂଚାରିତ ହୁଏ, ଶାସ୍ତ୍ରୀୟ ମତ । ଏହି ସମୂହ ସୃଷ୍ଟିର ହେତୁ ହିଁ ଔରସ ବା Gene' । ଏଇଠି ସ୍ମରଣ ରଖିବାକୁ ହେବ ଯେ ସାହିତ୍ୟ ଏକ ସୃଷ୍ଟି ଏବଂ ସୃଷ୍ଟି ଦ୍ୱିବିଧ । ଇନ୍ଦ୍ରିୟାନୁଗ ଓ ଅନ୍ୟଟି ଇନ୍ଦ୍ରିୟାତୀତ । ଇନ୍ଦ୍ରିୟ ରାଜ ମନର ଆଧିପତ୍ୟକୁ ସ୍ୱୀକାର କରି ନିତ୍ୟାନନ୍ଦ ମହାପାତ୍ର ବର୍ଣ୍ଣନା କରିଛନ୍ତି, 'ଚାକ୍ଷୁସ ଦୁଇଟି ଇନ୍ଦ୍ରିୟ ମଧ୍ୟରୁ ଅନ୍ୟତମ ଇନ୍ଦ୍ରିୟ ଅଧରୋଷ୍ଠ ଓ ଜିହ୍ୱାର କ୍ରିୟା କିନ୍ତୁ ଦ୍ୱିବିଧ । ଏହା ଉଭୟ କାମ ଓ ପ୍ରେମ ସହାୟକ । ଏହି ଜିହ୍ୱା ହିଁ ଶୃଙ୍ଗାରକୁ ନୂତନ ରୂପ ପ୍ରଦାନ କରିବାକୁ ସମର୍ଥ ହୁଏ, ତାର ଭାଷା ନୈପୁଣ୍ୟରେ, କାମକୁ ପ୍ରେମରେ ପରିଣତ କରେ ତାର କାବ୍ୟିକ ବର୍ଣ୍ଣନା ଚାତୁରୀରେ । 'କବ୍' ଧାତୁରୁ ନିଷ୍ପନ୍ନ ପଦ କବିତା ବର୍ଣ୍ଣନାତ୍ମକ ତାହା ମଦନକୁ ମାଦନର ରୂପ ଦିଏ ।'

ମଦନ ମହାଦେବଙ୍କ ଦ୍ୱାରା ଭସ୍ମିଭୂତ ହୋଇ ହୁଏ ଅନଙ୍ଗ, ଫଳତଃ ଏହା ତାହା ପାଇଁ ହେଲା ଆଶୀର୍ବାଦ ଏବଂ ସର୍ବ ହୃଦୟରେ ସଂଚାରିତ ହେବାକୁ ଲାଭ କଲା ସୁଯୋଗ ।



Source: Author, Digitized by PPRACHIN, SOA

ଶ୍ରୀକୃଷ୍ଣ ମନର ବାହକ ମନ୍ମଥକୁ ମଥିତ କରି କାମାର୍ତ୍ତା ଗୋପିକା ହୃଦୟରେ ଯେଉଁ ଅପ୍ରାକୃତିକ ପ୍ରେମ କଲେ ସଂଚାର ତାହାର ବର୍ଣ୍ଣନା ହେଲା ବ୍ୟାସଙ୍କ 'ରାସ ପଞ୍ଚଧ୍ୟାୟୀ' । ନିତ୍ୟାନନ୍ଦ ମହାପାତ୍ର ତାହାକୁ ଜାଗତିକ ଦୃଷ୍ଟିରେ ଚିତ୍ତ ଅନର୍ପିତଚରୀ ପ୍ରେମତତ୍ତ୍ୱର ବୀଜ ମନ୍ତ୍ର ବୋଲି କରିଛନ୍ତି ବ୍ୟକ୍ତ । ତାଙ୍କ ମତରେ-ସାହିତ୍ୟ ତେଣୁ ସହଜସାଧ୍ୟ ଏକ ଯୋଗ । ଈଶ୍ୱରଙ୍କ ସହ ଜୀବନର ଯୋଗ ! ଯେଉଁ ସାହିତ୍ୟ ଈଶ୍ୱର ଅଭିମୁଖୀ ନ କରି ଆମକୁ ଭୌତିକ ସୁଖ ସିକ୍ତ କରେ, ଯେଉଁ ସାହିତ୍ୟ ପ୍ରେମର ପରିପୂରକ ନ ହୋଇ କାମର ସେବା ପରାୟଣ ହୁଏ, ତାହା ସାହିତ୍ୟ ନୁହେଁ ଅସାହିତ୍ୟ ।

ସାହିତ୍ୟ ତେଣୁ କେବଳ ଭାଷା ବା ଶୈଳୀର ଅନୁଗତ ନୁହେଁ; କେବଳ ବୁଦ୍ଧି ବିଚକ୍ଷଣତାର ପରିପ୍ରକାଶ ନୁହେଁ, ଉଭୟ ଦ୍ୱାରା ପରିପୁଷ୍ଟ ଭାବର ବାହକ । ଭାବ ଶାବଲ୍ୟରେ ସାହିତ୍ୟର ସୃଷ୍ଟି— ଭାବ ଦୌର୍ବଲ୍ୟରେ ନୁହେଁ । ଯାହା ପରିଣାମଶୀଳ ତାହା କାମ । ଯାହା ଉତ୍ତରୋତ୍ତର ଗତିଶୀଳ ତାହା ପ୍ରେମ ସାହିତ୍ୟ କାମରେ କ୍ଳିଷ୍ଟ ହୁଏ, ପ୍ରେମରେ ଶ୍ରେଷ୍ଠ । (ଇସ୍ତାହାର-୯, ପୃଷ୍ଠା ୫୬) ।

(ଘ)

ଅସଂଖ୍ୟ ମହାପୁରୁଷ ସଂସାରକୁ ଆସିଛନ୍ତି ଅନେକ ବର୍ଣ୍ଣର ବାର୍ତ୍ତା ଦେଇ ମାନବ ସଭ୍ୟତା ଓ ସଂସ୍କୃତିକୁ କରିଛନ୍ତି ଦୀର୍ଘାୟୁ । ଆଚାର୍ଯ୍ୟ ରଜନୀଶ ବାର୍ତ୍ତା ଦେଇ ନାହାନ୍ତି; ତାଙ୍କ ଦୃଷ୍ଟିରେ ବାର୍ତ୍ତା ଶବ୍ଦ ଅଟେ, ନୁହେଁ ଅନୁଭବ । 'ନିରିଗୁଣ କା ବିସ୍ରାମ'ରେ ତାହାଙ୍କ ଦୃଷ୍ଟିକୋଣ, ବେଦ ତ ଭାଷା ଅଟେ ! ବେଦ ତ ଶବ୍ଦ ଅଟେ ! ବେଦ ତ ସିଦ୍ଧାନ୍ତ ଅଟେ ! ବେଦ ତ ରଚନା କରାଯାଇଛି ଏବଂ ସେହି ଅଲେଖକୁ କିଏ କେବେ ଲେଖି ପାରିବ ? ଠିକ୍ ସେମିତି ତାଙ୍କ "Be still and know" ରେ ପରାମର୍ଶ, Learn how to be love ! ଯେମିତି Breathing is life for the body, love is the life of the soul, ଦେହର ଜୀବନ ପ୍ରଶ୍ୱାସ, ଠିକ୍ ସେମିତି ପ୍ରାଣର ଜୀବନ ପ୍ରେମ ! ରାଜନୀଶଙ୍କ ଦୃଷ୍ଟିରେ Love is the real thing. God is the name given by theologians, ତେଣୁ ସେ କହନ୍ତି, Love is God! ମାତ୍ର ଖ୍ରୀଷ୍ଟଙ୍କ ଦୃଷ୍ଟିରେ ଥିଲା God is love ! ଆମେ ଯାହାକୁ କହୁଛୁ ପ୍ରେମ ବା ଭଲ ପାଇବା, ରଜନୀଶଙ୍କ ଦୃଷ୍ଟିରେ ତାହା -You are looking for romantic, poetic ideas. xxx You have been fed on foolish poetry which has no relationship with reality. ପୁନଶ୍ଚ Poets are the last people from whom you can learn about love-the last person. (Philosaphia pernnis/ Osho) କବିତା ସେମାନଙ୍କ ସ୍ୱପ୍ନ, ନୁହେଁ, ବାସ୍ତବିକତା, ନୁହେଁ ଅନୁଭୂତି । ତେଣୁ Poetry



Source: Author, Digitized by PPRACHIN, SOA

is sick x x x It triggers your imagination, it gives you fantasies. ଅବାସ୍ତବ କଳ୍ପନା, ଭାସି ଯାଅ ନାହିଁ! ସାଧାରଣତଃ ଆମେ ଯାହାକୁ କହୁଛୁ ପ୍ରେମ, ତାହା ଏକ ପ୍ରକାର 'Dependency' ! ଝିଅଟିର ପ୍ରଣୟ ପାଇବା ପାଇଁ ପୁଅଟିଏ କିମ୍ୱା ପୁଅଟିଏର ପ୍ରଣୟ ପ୍ରାପ୍ତି ପାଇଁ ଝିଅଟିଏ ନିର୍ଭର କରୁଛି, ନ ପାଇଲେ ଅନୁଭବ କରୁଛି ନିଃସଂଗତା। ପ୍ରକୃତରେ ତାହା – 'You are simple finding somebody to cling to; otherwish you feel very lonly.' 'Cling' ଦୃଢ଼ ଭାବରେ ଧରିବା, ଯାହା ବିଶୁଦ୍ଧ Possessiveness। କିନ୍ତୁ ପ୍ରେମ ବା ଭଲ ପାଇବା ଅଟେ ଜଣେ ଅନ୍ୟ ଜଣକ ଆଡ଼କୁ ବୋହି ଯିବା ! ପର ମୁହୂର୍ତ୍ତରେ ଘଟିବ କ'ଣ କେହି ଜାଣି ନଥିବେ ! 'Only losers can win in this Game' ରେ ରଜନୀଶ ବର୍ଣ୍ଣନା କରିଛନ୍ତି, If you have enjoyed love with a women, really ejnoyed, and the love has been a great fulfillment to you, once the women is gone you will fall in love with another woman, immediately-because now you know what beauty is love. Than you will always remain in love.ପ୍ରକୃତ ପ୍ରେମରୁ ମୁକୁଳିବା ମୁସ୍କିଲ !

ମଣିଷ ଭିତରେ ଥିବା Inner black hole ବା Emptiness ପୂରଣ ପାଇଁ ସିଏ ଖୋଜେ somebody to cling him or her ! ଏହା ଦ୍ୱାରା ତରଳି କେହି କୁଆଡ଼େ ବୋହିଯାଆନ୍ତି ନାହିଁ । ପ୍ରେମର ସୁବାସିତ ପୁଷ୍ପଟି ଫୁଟେ ନାହିଁ, ଯାହା ବାସେ ତାହା କାମନାର ଆମିଷ ! ଚିହ୍ନା ପଡ଼ିଯାଏ, You want somebody to cling to you. That will give a very good food for your ego a woman clinging to you. ଯେତେବେଳେ ଜଣେ ପ୍ରେମରେ ପଡ଼େ, ସିଏ ସମଗ୍ର ଭାବେ ହୋଇଯାଏ ବିଲୀନ, ତରଳିଯାଏ ତା' ସମଗ୍ର ଅସ୍ତିତ୍ୱ, cosmos ସହିତ ହୋଇଯାଏ ସମାହିତ ! ଅସ୍ତିତ୍ୱରେ ଅସ୍ତିତ୍ୱର ସେହି ବିଲୀନ ସ୍ଥିତି ପ୍ରେମ। ବିଶ୍ୱ ଅସ୍ତିତ୍ୱ ଓ ବ୍ୟକ୍ତି ଅସ୍ତିତ୍ୱ, ପୌରାଣିକ ଶିବ ଓ ଶକ୍ତି ପ୍ରତୀକ, ପରସ୍ପରର ବିପରୀତ । ଏହା ସୃଷ୍ଟିର ଲକ୍ଷ୍ୟ, ତେଣୁ ଉଚ୍ଚାରିତ କରିଛନ୍ତି ଆଚାର୍ଯ୍ୟ ରଜନୀଶ 'ସମ୍ଭୋଗରୁ ସମାଧି' ଘଟେ। ସମାଧି ଆନନ୍ଦମୟ ଏକ ତଲ୍ଲୀନ ସ୍ଥିତି। କେବଳ ଧ୍ୟାନରୁ ଏହି କ୍ଷୀରନୀର ସ୍ଥିତି ହୋଇ ନଥାଏ ସୃଷ୍ଟି, ପ୍ରେମରୁ ଏହାର ମଧ୍ୟ ଘଟିଥାଏ ପ୍ରାପ୍ତି !

ଆଚାର୍ଯ୍ୟ ରଜନୀଶଙ୍କ ବିଚାରରେ ରହିଛି ଚମତ୍କାରିତା । 'ଦି ବୁକ୍ ଅଫ୍ ସିକ୍ରେଟସ୍'ରେ ସୂଚିତ କରିଛନ୍ତି। Sex is sex, brahmacharya is brahmacharya... simple facts; no values are attached to them, x x x Tantra accecpts things as they are. Why ? Just to creat a unit...! ପ୍ରେମର ଅଲଗା ଅଲଗା



Source: Author, Digitized by PPRACHIN, SOA

ଦୁଇଟି ଅର୍ଥ, ସିଏ 'The hidden splendor' ରେ କରିଛନ୍ତି ବର୍ଣ୍ଣିତ । ଗୋଟିଏ Love as relationship, ସଂପର୍କଶୀଳ ପ୍ରେମ ଏବଂ ଅନ୍ୟଟି Love as a state of being । ଯେତେବେଳେ ପ୍ରେମ ଏକ ସଂପର୍କ ହୁଏ ଆସେ ଦାସତ୍ୱ, ଆସେ ପ୍ରତ୍ୟାଶା ଏବଂ ଦାବୀ । ଦାବୀ ଅପୂରଣରୁ ନୈରାଶ୍ୟ (Frustrations), Love as a state of beings ଅଟେ simple loving ପ୍ରେମ ଏକ ସୁବାସିତ ସୁବାସ ! ପରସ୍ପରକୁ ବିତରୁଥିବେ, ମଝିରେ ନ ଥିବ ଦାବୀ । When love become like a fragrance to you, then it has tremendous beauty. ପ୍ରେମରେ ସୌନ୍ଦର୍ଯ୍ୟ ଥାଏ ବୋଲି ସମସ୍ତେ ବିହ୍ୱଳିତ ହୁଅନ୍ତି । ସେହି ସୌନ୍ଦର୍ଯ୍ୟର ଆକର୍ଷଣରେ ହିଁ ପ୍ରେମରେ ପଡନ୍ତି । ଗୋଟିଏ ଗୋଲାପ ଫୁଲର ମାନେ କ'ଣ ? ଏକ ନିଶ୍ଚିତ ବିଶେଷତ୍ୱ ! ଠିକ୍ ସେମିତି ପ୍ରେମ ! Meaning is intellectual, significance is existential. There is no meaning in love; but great significance;....great splendour. ପ୍ରେମ ବ୍ୟତୀତ ଜୀବିତ ରହି ପାରେ ନାହିଁ ବ୍ୟକ୍ତି । ଯେମିତି ସ୍ୱପ୍ନ ବ୍ୟତୀତ ଆସେ ନାହିଁ ନିଦ୍ରା ! କାରଣ ନିଦ୍ରାର ଆତ୍ମା ସ୍ୱପ୍ନ । ସ୍ୱପ୍ନ ଅସଂପୂର୍ଣ୍ଣତ୍ୱକୁ ସଂପୂର୍ଣ୍ଣ କରିବାରେ କରିଥାଏ ସାହାଯ୍ୟ । ଠିକ୍ ସେମିତି ବ୍ୟକ୍ତିତ୍ୱକୁ ପୂର୍ଣ୍ଣାଙ୍ଗ ଓ ସୃଜନଶୀଳ କରିଥାଏ ପ୍ରେମ । ଜୀବନକୁ ସୌନ୍ଦର୍ଯ୍ୟମୟ ଓ ସମ୍ଭାବନାମୟ କରିଥାଏ ପ୍ରେମ । ଯଦିଓ ଆମ ଚାରିପାଖର ସମଗ୍ର ପର୍ଯ୍ୟାବରଣ ସର୍ଜନଶୀଳତାରେ ଜୀବନ୍ତ, ସୌନ୍ଦର୍ଯ୍ୟ ଚାରିଆଡ଼ ପ୍ରବାହିତ, ତାହାକୁ ଅନୁଭବ କରିଥାଏ ଜଣେ ପ୍ରେମିକ କିମ୍ବା ଭକ୍ତ ! ପ୍ରେମ ଗୋଟିଏ ବିଷୟ ନୁହେଁ, ପ୍ରେମ ଏକ ଅନୁପମ ଅନୁଭବ । ସେ ଅନୁଭବଟି ସହବାସରୁ ଆସେ ନାହିଁ, ଆସିଥାଏ ନିଃସର୍ତ୍ତ ସମର୍ପଣରୁ ! ରଜନୀଶ ଲେଖିଛନ୍ତି, Surrender is the highest form of love, the purest form of love. (The Book of wisdom) ।

ସମର୍ପଣ କରାଯାଏ ନାହିଁ, ଏହା ଘଟେ । ଏହା ଏକ କୃତ୍ୟ ନୁହେଁ, It is not a doing. How can you do surrender ? ସମର୍ପଣର ସ୍ୱାଦ ଅନେକ । ମୁଖ୍ୟତଃ ଜଣେ ତରଳି ହୋଇ ଯାଏ ବିଲୀନ । Surrender happens; the door is not found. You simple find yourself melting in to somebody, in to something. ଯେତେବେଳେ ପ୍ରେମ ଘଟୁଛି ବା ପ୍ରେମର ସୁବର୍ଣ୍ଣ ରାଗ ପ୍ରାଣର ଚକ୍ରବାଳସାରା ଉଦୟରାଗପରି ବିଛୁଡ଼ି ପଡୁଛି ! 'Om Shantih Shantih Shantih' ରେ ରଜନୀଶ ବ୍ୟକ୍ତ କରିଛନ୍ତି And relationship is not love at all; it means love has ended and relationship has begun.ସଂପର୍କ ଆରମ୍ଭ ହେଲା, ସହବାସ ଚାଲିଲା, ଥରକୁ ଥର, ତମାମ ଜୀବନ ! ଯେଉଁ ମହୁ ତୃଷାରେ ଦୁଇଟି ଦେହ ଖୁବ୍ ବାଡ଼େଇ କଚାଡ଼ି



Source: Author, Digitized by PPRACHIN, SOA

ହୋଇଛନ୍ତି, ଦଳା ମକଚା ହୋଇଛନ୍ତି, କାମୁଡ଼ା କାମୁଡ଼ି ଓ ଚୋଷାଚୋଷି ହୋଇଛନ୍ତି ତାହା ପାଇ ନାହାନ୍ତି । ଯାହା ପାଇଛନ୍ତି ତାହା ମୈଥୁନ ଜନିତ କ୍ଲାନ୍ତି । ନିଜନିଜ ଚର୍ମରୁ ଲୁଣି ସ୍ୱାଦ । ପଶୁତ୍ୱର ଜୀବନ୍ତ ଅନୁଭବ । ପ୍ରେମ ତ ମଧୁ । ମଧୁକୋଷରୁ ଟପ୍‌ଟାପ୍ ଝରି ଆସିବା ବୁନ୍ଦାବୁନ୍ଦା ଅମୃତର ବିନ୍ଦୁ । ପ୍ରେମକୁ ଗଣିତ ବୋଲି ଆମେ କଷି ଚାଲିଛେ, ଅତଏବ ଉତ୍ତର ମିଳୁ ନାହିଁ । କେମିତି ଯେ ମିଳିବ, ତାହା କ'ଣ ଖଣ୍ଡେ ଗଣିତ ?

(ଙ)

ହୃଦୟ ଚକ୍ରରୁ ବାହାରି ଥାଏ ପ୍ରେମ ସମ୍ବନ୍ଧ । ଆକର୍ଷଣ କେନ୍ଦ୍ର ସ୍ତ୍ରୀ ହୃଦୟ । ମାନବ ହୃଦୟ ଭାବ କେନ୍ଦ୍ର । ଗର୍ଭବତୀ ନାରୀ ନାଭିରୁ ଗର୍ଭସ୍ଥ ଶିଶୁ ନାଭିକୁ ଅବିରତ ପ୍ରବାହିତ ହେଉଥାଏ ଗୋଟିଏ ଅଚିହ୍ନା ବିଦ୍ୟୁତ୍ ଧାରା, ତାହାକୁ ଯୋଗୀ କହନ୍ତି ପ୍ରେମ । ଜୀବନ ଅମୃତ ତାହା ଦ୍ୱାରା ହୋଇଥାଏ ଅନୁଭବ । ଏହି ଅଜ୍ଞାତ ରହସ୍ୟମୟୀ ବିଦ୍ୟୁତ୍ ଧାରା ସ୍ତ୍ରୀ ଓ ପୁରୁଷଙ୍କ ସହଜାତୀୟ ହେଲେ ସୃଷ୍ଟି ହୁଏ ଆକର୍ଷଣ । ଜଣେ ଅନ୍ୟ ଜଣକୁ କରେ ପ୍ରେମ । ସହଜାତୀୟ ନ ହୋଇ ଯଦି ତାହା ବିଜାତୀୟ ହୁଏ, ସୃଷ୍ଟି ହୁଏ ବିକର୍ଷଣ । କଳହ, ଅଶାନ୍ତି, ଅତୃପ୍ତି ଓ ପରସ୍ପରଙ୍କ ମଧ୍ୟରେ ଘଟେ ଅମେଳ । ମନୋମାଳିନ୍ୟରୁ ଭାଙ୍ଗିଯାଏ ଘର । ଶାରୀରିକ ଓ ମାନସିକ ସୁଖ ସମ୍ଭୋଗ ଅଟେ କାମୁକତା, ନୁହେଁ କାମ । କାମ ପୁରୁଷାର୍ଥ । ଶାସ୍ତ୍ରୀୟ ଶୃଙ୍ଗାରିକ ଭାବନା କାମ । କାମ ଅର୍ଥ ଶିବ ଓ କଳା ଅର୍ଥ ଶକ୍ତି । ଦୁହିଁଙ୍କ ଅର୍ଦ୍ଧ ନାରୀଶ୍ୱର ସ୍ୱରୂପ କାମକଳା ଅଟନ୍ତି । କଳା ଷୋହଳ ପ୍ରକାର, 'ଷୋଡ଼ଶୀ' ଓ 'ବିଦ୍ୟା' ବୋଲି ସେମାନଙ୍କୁ ତନ୍ତ୍ର ପରିଚିତ କରାଇଛନ୍ତି ।

କାମକେନ୍ଦ୍ରର ମୁଖ୍ୟ ବିନ୍ଦୁ ମୂଳାଧାର ଚକ୍ର । ସୂକ୍ଷ୍ମ ଶରୀରରେ ମୂଳାଧାର ଜାଗ୍ରତ ଓ ଚୈତନ୍ୟ ହେଲେ ସ୍ଥୁଳ ଶରୀରରେ କାମ ବାସନା ଜନ୍ମେ । କାମୋତେଜନା ହୁଏ ଉତ୍ପନ୍ନ । ଏକ ପ୍ରକାର କଂପନ ବା ହୁଏ ସ୍ପଂଦନ । ମୂଳାଧାର ଚକ୍ର ଜାଗରଣ ପ୍ରଭାବରେ ସ୍ୱାଧିଷ୍ଠାନ ଚକ୍ର ହୁଏ ସକ୍ରିୟ, ଯାହା ପ୍ରଭାବରେ ସଙ୍ଗମରତ ହୋଇଥାଏ ମାନବ ।

କାମକେନ୍ଦ୍ରର ଶୁକ୍ରାଣୁ ଶ୍ୱେତବିନ୍ଦୁ, ମୂଳାଧାରରେ ଲାଲ୍‌ବିନ୍ଦୁ ସହିତ ସଂଯୋଗ ହେଲେ ଆକର୍ଷଣ ଶକ୍ତି ହୁଏ ଉତ୍ପନ୍ନ ଏବଂ ଚେତନାକୁ କରେ ଆକର୍ଷିତ । ବିନ୍ଦୁଙ୍କ ଚେତନାକୁ ଆକର୍ଷଣର ନାମ 'କାମ' । ତାହା ଅର୍ଦ୍ଧନାରୀଶ୍ୱର ବିମ୍ବ ! ପରାବାକ୍ ସ୍ଥିତି ତାହା ଗତି ବଦଳାଇ ପଶ୍ୟନ୍ତି, ମଧ୍ୟମା ଓ ବୈଖରୀ ହୋଇ ପ୍ରକାଶିତ ହୁଅନ୍ତି । ସୃଷ୍ଟିହୁଏ ଶବ୍ଦ କଳା । କାମ ଶକ୍ତି ସୃଜନୀ ଶକ୍ତି । ସାରସ୍ୱତ ସୃଷ୍ଟିରେ ଯାଏ ମାତି । ବିନ୍ଦୁରୁ ଅକ୍ଷରତତ୍ତ୍ୱ ଏବଂ ନାଦରୁ ଧ୍ୱନିତତ୍ତ୍ୱର ଜନ୍ମ । ସାହିତ୍ୟ ଅକ୍ଷର ବସାଣ ଶିଳ୍ପ ହେଲେ ଧ୍ୱନି ତାହାର ଉଚ୍ଚାରଣ । ଚୌ ପୁରୁଷାର୍ଥ ମଧ୍ୟରେ କାମ ତୃତୀୟ ପୁରୁଷାର୍ଥ । ଶେଷ ପୁରୁଷାର୍ଥ ମୋକ୍ଷ । ଏହାଦ୍ୱାରା ସିଦ୍ଧ



Source: Author, Digitized by PPRACHIN, SOA

ହେଉଛି ଯେ କାମ ଦ୍ୱାରା ମୋକ୍ଷ ଉପଲବ୍ଧି ସମ୍ଭବ । ଏଣୁ କାମକୁ ସର୍ବଶ୍ରେଷ୍ଠ ପୁରୁଷାର୍ଥ ରୂପେ ଗ୍ରହଣ କରାଯାଇଛି । ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି-ଉତ୍ପତ୍ତିର ହେତୁ ମୁଁ କାମଦେବ । ଜଗତର ସମସ୍ତ ଉତ୍ପତ୍ତିର ମୂଳ କାମ ! ସୃଜନର ଏକମାତ୍ର ସୂତ୍ର, ତାହା କାମ ! କାମ ଦ୍ୱାରା କେବଳ ସନ୍ତାନ ହୋଇ ନଥାଏ ଉତ୍ପନ୍ନ ! କାମ ଶକ୍ତିରୁ କବିତାର ମଧ୍ୟ ହୋଇଥାଏ ଜନ୍ମ ! ହୁଏ ପ୍ରତିଭା ତିଆରି ! ମୂର୍ତ୍ତି ଗଠିତ ହୁଏ ! କଳାର ଉତ୍ପତ୍ତି ହୋଇଅଛି ଏବଂ ସଂଗୀତର ଆବିର୍ଭାବ ମଧ୍ୟ ଘଟିଅଛି । ଯେଉଁଠି ଯାହା ସୃଜନ ହେଉଅଛି ସେଠାରେ କାମଶକ୍ତିର ଅସ୍ତିତ୍ୱ ବିଦ୍ୟମାନ । ଉତ୍ପତ୍ତି ଅଥବା ସୃଜନ ଅର୍ଥ ହିଁ ଅଟେ କାମ ! ସୃଷ୍ଟିର ଆଦିତତ୍ତ୍ୱ !

ମାନବ ଶରୀରରେ କ୍ରିୟାଶୀଳ ଗୋଟିଏ ଉର୍ଜା, ଆତ୍ମ ଉର୍ଜା । ଯଦି ତାହା ନିମ୍ନକୁ ପ୍ରବାହିତ ହୁଏ କାମ ବାସନା ରୂପ ନିଏ, ଯଦି ଉର୍ଦ୍ଧ୍ୱକୁ ଉଠେ ଆଧ୍ୟାତ୍ମିକ ଶକ୍ତି ରୂପରେ ହୋଇଥାଏ ପରିବର୍ତ୍ତିତ । ଭାରତୀୟ ମନୀଷା ଦୃଷ୍ଟିରେ ସୌନ୍ଦର୍ଯ୍ୟ, ପ୍ରେମ ଓ ଆନନ୍ଦ-ସତ୍ ଚିତ୍ ଓ ଆନନ୍ଦ ଅଟେ । ସତ୍ ଅର୍ଥ ସତ୍ୟଶକ୍ତି, ଚିତ୍ ଅର୍ଥ ଚେତନା, ଯେଉଁଠି ଏହି ଦୁହିଁଙ୍କ ଅସ୍ତିତ୍ୱ ରହିଛି, ସେଠାରେ ରହିଛି ଆନନ୍ଦ । ପରମାତ୍ମା ସତ୍, ଚିତ୍ ଓ ଆନନ୍ଦ ସ୍ୱରୂପ, ଏଣୁ ସଚ୍ଚିଦାନନ୍ଦ । ଯେଉଁଠି ସୌନ୍ଦର୍ଯ୍ୟ ଅଛି ସତ୍ୟ ସେଠାରେ ରହିଅଛି ଏବଂ ଯେଉଁଠି ପ୍ରେମ ଅଛି ସେଠାରେ ରହିଛି ଚେତନା । ଯେଉଁଠି ଏହି ଦୁହିଁଙ୍କ ବୋଧ ରହିଛି-ରହିଛି ସେଠାରେ ଆନନ୍ଦ !

ସୌନ୍ଦର୍ଯ୍ୟ, ପ୍ରେମ ଓ ଆନନ୍ଦ-ଏହି ତ୍ରୟ ଅପରିଭାଷେୟ, ଏମାନଙ୍କ ନାହିଁ ପରିଭାଷା । ଏମାନଙ୍କର ହୁଏ ଅନୁଭୂତି କେବଳ । ସୌନ୍ଦର୍ଯ୍ୟ କ'ଣ ? ପ୍ଲାଟୋଙ୍କ ଠାରୁ ରସେଲ୍‌ଙ୍କ ପର୍ଯ୍ୟନ୍ତ ଅନେକ ଚିନ୍ତା କରିକରି ନିର୍ଣ୍ଣୟ କରି ପାରିନାହାନ୍ତି । ସେହିପରି ପ୍ରେମ କ'ଣ ? ଜର୍ଜମୂର୍ ତାଙ୍କର ରଚିତ 'ପ୍ରିନ୍‌ସିପିଆ ଇଥିକା'ରେ ଅନୁଶୀଳନ କରିଛନ୍ତି, What is good, ଗୁଡ୍ ଇଜ୍ ଇନ୍‌ଡ଼ିଫାଇନେବ୍ଲ୍ । ଯେମିତି ହ୍ୱାଟ୍ ଇଜ୍ ୟେଲୋ ? ୟେଲୋ ଇଜ୍ ୟେଲୋ ! ଦି ଟୋଟାଲିଟୀ ଅଫ୍ ଦି ଇନ୍‌ଡ଼ିଫାଇନେବ୍‌ଲ୍ସ ଇଜ୍ ଗୁଡ୍ ।

'ଯଜ୍' ଧାତୁରୁ ନିଷ୍ପନ୍ନ ଶବ୍ଦ 'ଯୋଗ' ଅର୍ଥ ଯୋଡ଼ିହେବା, ଯୁକ୍ତ କରିବା ବା ମିଳନ କରିବା । ପୁରୁଷତତ୍ତ୍ୱ ଆକର୍ଷିତ ହୋଇ ସ୍ତ୍ରୀ ତତ୍ତ୍ୱରେ ହେବ ମିଳିତ । ଶାମ୍ଭବୀ 'ଯୋଗିନୀ'ରେ ଲେଖିଛନ୍ତି, Spirituality is a love affair- a Love affair with existence: ପୁନଶ୍ଚ- all real love is based on the search for the inner spirit. ପଣ୍ଡିତ ଅରୁଣ କୁମାର ଶର୍ମା ତାଙ୍କ 'ତିସ୍‌ରାନେତ୍ର' ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି, ଶିବ ଆକର୍ଷିତ ହୋଇ ଶକ୍ତିରେ ପ୍ରବେଶ କଲେ ହୁଏ ବିନ୍ଦୁ ଉତ୍ପନ୍ନ । ଶକ୍ତି ଆକର୍ଷିତ ହୋଇ



Source: Author, Digitized by PPRACHIN, SOA

ଶିବରେ ପ୍ରବେଶ କଲେ ହୁଏ ନାଦ ଉତ୍ପନ୍ନ । ବିନ୍ଦୁ ଓ ନାଦରୁ କାମର ଆବିର୍ଭାବ ! ଯାହାର ପରିଣାମ ମୈଥୁନ ଏବଂ ମୈଥୁନ ପରିଣାମ ଅଟେ ସୃଷ୍ଟି । କାମ ପରଂପରା ବିଚାର ଧାରାରୁ ଆସେ ସୁଖାନୁଭୂତି । ସୁଖାନୁଭୂତି ଅଭିବ୍ୟକ୍ତି ପାଇଁ ରସ ସିଦ୍ଧାନ୍ତ ଜନ୍ମ ନେଇଛି । ସୌନ୍ଦର୍ଯ୍ୟ ସୁଖର ଉଦ୍ଦୀପକ, ତେଣୁ ସୌନ୍ଦର୍ଯ୍ୟଶାସ୍ତ୍ର ମଧ୍ୟ କାମ ପରମ୍ପରା ଅନ୍ତର୍ଗତ । ସୌନ୍ଦର୍ଯ୍ୟ ସୁଖର ଆଧାର, ଏହା ରସ ସିଦ୍ଧାନ୍ତ । ଏହି ଦୃଷ୍ଟିରୁ ରସ ମାନବ ମସ୍ତିଷ୍କରେ ନିହିତ ଭାବ ପ୍ରକାର ସହିତ ସଂପୃକ୍ତ । ରସରୁ ଉତ୍ପନ୍ନ ସୁଖାନୁଭୂତି ମାନବ ମସ୍ତିଷ୍କର ବସ୍ତୁ । ଏଥିପାଇଁ ବ୍ୟକ୍ତିକୁ ହେବାକୁ ହୁଏ ରସିକ । ସୌନ୍ଦର୍ଯ୍ୟ ସୁଖ ଜୀବନର ଏକ ଅଂଶ ।

(ଚ)

ଯୁବ ଦମ୍ପତିଙ୍କ ଯାହା ଜୀବନଚର୍ଯ୍ୟାର ଅଂଶ, ତାହା ଅବିବାହିତ ବା ନାବାଳକଙ୍କ ପାଇଁ ନିଷିଦ୍ଧ କର୍ମ । ସ୍ୱାମୀ-ସ୍ତ୍ରୀଙ୍କ ସଂପର୍କ-ସୁଖ ସ୍ୱାମୀ-ସ୍ତ୍ରୀଙ୍କ ଏକାନ୍ତ ବ୍ୟକ୍ତିଗତ । ଏହା ଦର୍ଶନ ଅନ୍ୟ ପାଇଁ ଅଶ୍ଳୀଳ । ଯେଉଁମାନେ ପୁରୁଖା ସେମାନେ ଜାଣନ୍ତି ଏହା ସୃଜନ କ୍ରିୟା ଏବଂ ଭଗବାନ ଶ୍ରୀ ବିଷ୍ଣୁଙ୍କ ପବିତ୍ର ସହସ୍ର ନାମରୁ ଗୋଟିଏ 'ବଂଶବର୍ଦ୍ଧନ' । ସୃଷ୍ଟିକ୍ରିୟାରେ ଲିପ୍ତ ହେବା ଜୀବନ ଚର୍ଯ୍ୟାର ପବିତ୍ର ଅଂଶ ଓ ମୁଖ୍ୟ ଆଭିମୁଖ୍ୟ । ତା ନହେଲେ ସ୍ତ୍ରୀ ପୁରୁଷ କାହିଁକି ମିଳିତ ହେବେ ! ମିଳନ କ୍ରିୟାର ଅପବ୍ୟବହାର ଅଶ୍ଳୀଳ ଓ ନିଷେଧ ।

ଭାରତୀୟ ତାନ୍ତ୍ରିକ ଦର୍ଶନରେ ଜନ୍ମାନ୍ତର ବାଦର କାରଣ-ଏକ ମାତ୍ର ପ୍ରେମ ! ପ୍ରକୃତ ପ୍ରେମ ପ୍ରାପ୍ତ ନ ହେବା ପର୍ଯ୍ୟନ୍ତ ଥରଥର ହୋଇ ଜନ୍ମ ଗ୍ରହଣ କରି ଚାଲିଥିବ । ଭାରତୀୟ ତନ୍ତ୍ର ଦର୍ଶନ ଗୂଢ଼ ଓ ଗୋପନୀୟ । ତାନ୍ତ୍ରିକ ବିଚାର ନୁହେଁ ସାମାଜିକ ସୁଲଭ । ଯୋଗ-ତାନ୍ତ୍ରିକ ସଂସ୍କୃତିରେ ସେହି ସୃଷ୍ଟିକ୍ରିୟା ଏବଂ ମୋକ୍ଷକ୍ରିୟା, ଯାହା ଜୀବ ସୃଷ୍ଟିର ଆଭିମୁଖ୍ୟ, ରସତତ୍ତ୍ୱ ବା କାମତତ୍ତ୍ୱ, ତାହା କଳା ପର୍ଯ୍ୟାବରଣର ଏକ ସ୍ୱୟଂ ସିଦ୍ଧ ସ୍ୱରୂପ । 'କୁଣ୍ଡଳିନୀ ଶକ୍ତି' ସଂଦର୍ଭରେ ପଣ୍ଡିତ ଅରୁଣ ଶର୍ମାତତ୍ତ୍ୱଟି କରିଛନ୍ତି ଆଲୋଚନା ।

କାମ ଦୁଇ ଖଣ୍ଡରେ ବିଭକ୍ତ । ବହିର୍ମୁଖୀ କାମ ଓ ଅନ୍ତର୍ମୁଖୀ କାମ । ବହିର୍ମୁଖୀ କାମ ମନ ପ୍ରଧାନ ଏବଂ ଅର୍ନ୍ତମୁଖୀ କାମର ଆଧାର ଆତ୍ମା । ଦୈହିକ ଭୋଗ 'ଯୌନ' । ତନ୍ତ୍ରର 'ମୋକ୍ଷ' ସ୍ଥାନରେ ରହେ 'ସାମରସ୍ୟ' ବା 'ମିଳନ' । ଆକର୍ଷଣ ଶକ୍ତିକୁ କୁହାଯାଏ 'କାମଶକ୍ତି' । ଆକର୍ଷଣ ସ୍ତ୍ରୀ ପୁରୁଷ ସଂଯୋଗରେ ପର୍ଯ୍ୟବେସିତ । ଯେଉଁଠି ଆକର୍ଷଣ ସେଇଠି 'ମିଥୁନ' ଭାବର ଜନ୍ମ । 'ମିଥୁନ' ଅର୍ଥ ଦୁଇ ବିପରୀତ ତତ୍ତ୍ୱଙ୍କ ଏକାକାର ବା ସାମରସ୍ୟ' ହେବା କର୍ମ । ଏହାର ପରିଣାମକୁ କହନ୍ତି 'ଆନନ୍ଦ' । 'କାମ'ର ଅର୍ଥ ସହଚରୀ ବା ସହଚରଟିର କାମନା । ଏହି କାମନା ବିଶ୍ୱବାସନାର ଅଂଶ । ଶିବ ଓ ଶକ୍ତିଙ୍କ ଆକର୍ଷଣ ଆଧାର ଯେଉଁ ସାମରସ୍ୟ, ତାହା 'ଆଦି ମୈଥୁନ' ! ସମସ୍ତ ସୃଷ୍ଟି ଉତ୍ପତ୍ତିର ମୂଳ । ତହିଁରୁ



Source: Author, Digitized by PPRACHIN, SOA

ସୃଷ୍ଟି ଆନନ୍ଦ 'ପରମାନନ୍ଦ' । 'ପରମାନନ୍ଦ' ହିଁ ଈଶ୍ୱରଙ୍କ ଏକମାତ୍ର ସ୍ୱରୂପ । ସମସ୍ତ କର୍ମ ପରିଚାଳନାର ପ୍ରେରଣା ଶକ୍ତି 'ଆନନ୍ଦ ।' ଏହାର ସ୍ଥୂଳ ଓ ପ୍ରତ୍ୟକ୍ଷ ଅନୁଭବ ମୈଥୁନରୁ ହୁଏ । ମୈଥୁନ ଆନନ୍ଦ ସାଂସାରିକ ଜୀବନରେ ପରାକାଷ୍ଠାର ଆନନ୍ଦ । କବିର କବିତା ଓ କଳାଶକ୍ତି ପ୍ରଭୃତି ସମସ୍ତ ବିଶ୍ୱ-ବାସନା ।

ମାଧ୍ୟାକର୍ଷଣ ଶକ୍ତିପରି ବ୍ରହ୍ମାଣ୍ଡରେ ସର୍ବତ୍ର ସମଭାବରେ ପରିବ୍ୟାପ୍ତ ଏକ ବିଶେଷ ଆକର୍ଷଣ ଶକ୍ତି, ତାହା 'ପରମା' । ପରିବ୍ୟାପ୍ତ ପ୍ରାଣବାୟୁ 'ପରା' ଶକ୍ତି । ଦୁହିଁଙ୍କ ବିକାରର ନାମ 'ପ୍ରକୃତି', ତାହା 'ପରା-ପରା' ବା 'ଅପରା' ଅଟନ୍ତି । ମନ, ପ୍ରାଣ ଓ ବାକ୍‌ଶକ୍ତି; କିମ୍ବା ଇଚ୍ଛା, ଜ୍ଞାନ ଓ କ୍ରିୟାଶକ୍ତି ଏହା । ଏହି ଶକ୍ତି ତ୍ରୟଙ୍କ ଆୟତକୁ କୁହାଯାଇଛି 'ତାନ୍ତ୍ରିକସାଧନା' । ଏହା ଆକର୍ଷଣାତ୍ମକ ଓ ମିଥୁନାତ୍ମକ ବିଶ୍ୱ-ବାସନା । ଏକ ପ୍ରାକୃତିକ ନିୟମ । ଶେଷ ପୁରୁଷାର୍ଥ 'ମୋକ୍ଷ ସାଧନା' ଏକ ମାତ୍ର 'କାମ' ଦ୍ୱାରା ହୁଏ । କାମ ଅଭିବ୍ୟକ୍ତି ମାର୍ଗର ନାମ 'ଏଷଣା' । ସାଧନା ମାର୍ଗରେ କାମାଭିବ୍ୟକ୍ତି 'ମୋକ୍ଷୈଷଣା', ବାସନା ପାଇଁ କାମାଭିବ୍ୟକ୍ତି 'ଭୋଗୈଷଣା' ଏବଂ ସଂସାର ମାର୍ଗାଭିବ୍ୟକ୍ତି କାମ 'ଲୋକୈଷଣା' । ମୂଳ ପରମ ତତ୍ତ୍ୱ, ତାହାର ଦୁଇଟି ରୂପ, ପ୍ରଥମ ପରମାତ୍ମା ଏବଂ ଦ୍ୱିତୀୟ ଆତ୍ମା । ଆତ୍ମା ଦୁଇ ଖଣ୍ଡରେ ବିଭକ୍ତ । ପ୍ରଥମ ଖଣ୍ଡ ପୁରୁଷତତ୍ତ୍ୱ ଏବଂ ଦ୍ୱିତୀୟ ଖଣ୍ଡ ସ୍ତ୍ରୀ-ତତ୍ତ୍ୱ । କାଳର ପ୍ରବାହରେ ଦୁଇ ତତ୍ତ୍ୱ ପରସ୍ପର ଠାରୁ ବିଯୁକ୍ତ ଏବଂ ମିଳିତ ହେବାକୁ ଜନ୍ମ ଗ୍ରହଣ କରି ଚାଲିଛନ୍ତି । ଦୁହେଁ ସର୍ବଦା ବ୍ୟାକୁଳ, ଯେତେ ପ୍ରାପ୍ତ ହେଲେ ବି ମିଳନ ତୃଷ୍ଣା ଅପ୍ରଶମିତ । ଯେତେ ପ୍ରେମ ପାଇଲେ ବି ଦରକାର ଥାଏ ଆହୁରି । ଏହି ତୃଷ୍ଣା ସୃଷ୍ଟି କରୁଥାଏ 'କାମ' ।

କାଳଚକ୍ର ପ୍ରବାହରେ ଗୋଟିଏ ଖଣ୍ଡ ଆତ୍ମା, ତାହାର ବିପରୀତ ସଠିକ୍ ଖଣ୍ଡରେ ଯେତେବେଳେ ହୋଇଯାଏ ମିଳିତ, ଘଟିଥାଏ 'ଯୋଗ' ଏବଂ ମିଳିଯାଏ 'ମୁକ୍ତି' । କାଳଖଣ୍ଡର ସେହି ପ୍ରବାହ ସହଜରେ ଶରୀର ଧାରି ଆତ୍ମାଖଣ୍ଡକୁ ମିଶାଇ ଦେଇ ନଥାଏ । ଦୁଇ ଖଣ୍ଡଙ୍କ ମିଳନ ନାମ 'ପ୍ରେମ' । ପ୍ରେମ ଆତ୍ମାର ସ୍ୱାଭାବିକ ଗୁଣ । ଆମେ ଯାହାକୁ କହୁଛୁ 'ପ୍ରେମ' ତାହା ବାସନାଜନ୍ୟ 'ଯୌନ' । ଥରେ 'ପ୍ରେମ' ହୋଇ ଗଲେ ଘଟିଥାଏ 'ଭବମୁକ୍ତି' । 'ଯୋଗ' କାଳଖଣ୍ଡରେ ଫସି ଯାଇଥିବା ଆତ୍ମା ଦୁଇ ଖଣ୍ଡଙ୍କ ମିଳନର ନାମ । ଯୌନକର୍ମ ପ୍ରତ୍ୟେକ ରାତ୍ରୀହୁଏ, ପ୍ରେମ କ'ଣ ମିଳିଥାଏ ? ବରଂ ତୃଷ୍ଣା ବଢ଼ିଥାଏ । ବାସନା ବଢ଼ିଥାଏ । ଭବ ବନ୍ଧନ ବଢ଼ି ଚାଲିଥାଏ । ଉଦାସୀ ଓ ଶୂନ୍ୟତା ଆହୁରି ବେଶୀ ବେଶୀ କବଳିତ କରିଥାଏ । ଜଳରୁ ଛଣା ମତ୍ସ୍ୟପରି ସଂଯୋଗ କ୍ଷୁଧିତ ଆତ୍ମା କରୁଣ ଚିତ୍କାର କରି ଭବସିନ୍ଧୁ ସିକତା ଶଯ୍ୟାରେ ହେଉଥାଏ ଛଟପଟ । କାଳର କଳା ଧିବର ଆତ୍ମାର ଏହି କରୁଣ ଦଶା ଦର୍ଶନ କରି କୁରୁଳୁ ଥାଏ । କାରଣ-ତାହାର ଭବଲୀଳା ଲମ୍ବୁଅଛି । ଆନନ୍ଦ ବ୍ୟାପୁଅଛି ।





Source: Author, Digitized by PPRACHIN, SOA

# ସହାୟକ ଗ୍ରନ୍ଥ:


| | ପ୍ରଣେତା | ପୁସ୍ତକ | ପ୍ରକାଶକ |
|---|---|---|---|
| ୧. | Sri Aurovindo | Hymns to the mystic Fire | Sri Aurovinda Ashram, Pondicherry, 1972 |
| ୨. | Do | The Secret of the Veda, | Do |
| ୩. | Kapalisastry, T.V. | Lights on Ancients, | Sri Aurovindo Library 369 Esplanade, Madras, 1954. |
| ୪. | Woodroffe, Sri John (Avalon, Arthur) | Principles of Tanlra, Vol.II, | Ganesh & Co. Madras, 1991 |
| ୫. | Do | The Serpent Power, | Do 1964 |
| ୬. | Do | The Garland of Letters, | Do 1974 |
| ୭. | Paramahansa, Swami Muktananda | Play of Consciousnoss, | Chitshakti Publication, Chnnai, 1995 |
| ୮. | Do | Secret of The Siddhas, | Chitshakti Publication, Ganesh pur, Thane, 1984 |
| ୯. | Svoboda, Robert E. | Aghora II: Kundalini, | Rupa & Co. 1994 |
| ୧୦. | Saraswati, Swami Satya Nanda | Kundalini Tantra, | Yoga publication Trust, Munger, 2012 |
| ୧୧. | Krishna, Gopi | Kundalini: The Evolutionary Energy in Man, | Shambhalla publication, Boulder, 1971 |
| ୧୨. | White. J.(Ed.) | Kundalini, Evolution and Enlightenmant, | Anchor Double day, New York, 1979 |




Source: Author, Digitized by PPRACHIN, SOA

## ସହାୟକ ଗ୍ରନ୍ଥ:


| ପ୍ରଣେତା | ପୁସ୍ତକ | ପ୍ରକାଶକ |
|---|---|---|
| ୧୩. କବିରାଜ, ମ.ମ.ପଣ୍ଡିତ ଗୋପୀନାଥ | ଶକ୍ତି ଜାଗରଣ ଅଉର୍ କୁଣ୍ଡଳିନୀ (ହିନ୍ଦୀ) | ବିଶ୍ୱବିଦ୍ୟାଳୟ ପ୍ରକାଶନ, ବାରଣାସୀ, ୨୦୧୦ |
| ୧୪. ଶର୍ମା, ଅରୁଣ କୁମାର | କୁଣ୍ଡଳିନୀ ଶକ୍ତି, (ହିନ୍ଦୀ) | ସୁରଭାରତୀ, ଚୌଖମ୍ବା, ବାରଣାସୀ, ୨୦୦୪ |
| ୧୫. ରାଜେନ୍ଦ୍ର ଦେବ, ରାଧାମୋହନ | ପରମାର୍ଥ ପୟୋଧି ୧ମ ଓ ୨ୟ ଖଣ୍ଡ (ଓଡ଼ିଆ) | ବୈଦିକ ଇଜୁକେଶନ ଟାଲେଣ୍ଟରିସର୍ଚ୍ଚ ସେଣ୍ଟର, ଭୁବନେଶ୍ୱର ୨୦୧୦ |
| ୧୬. ଶ୍ରୀ ଅରବିନ୍ଦ | ଦିବ୍ୟ ଜୀବନ, ୨ୟ ଖଣ୍ଡ, ପୂର୍ବାର୍ଦ୍ଧ ଓ ଉତ୍ତରାର୍ଦ୍ଧ, (ଅନୁ.ଶ୍ରୀ ଚିତ୍ତରଂଜନ ଦାସ) | ଶ୍ରୀ ଅରବିନ୍ଦ ଆଶ୍ରମ, ପଣ୍ଡିଚେରୀ |
| ୧୭. | ଋଗ୍‌ବେଦ- | ୧୯୭୨,ସଂସ୍କୃତି ସଂସ୍ଥାନ, ବରେଲୀ, |
| ୧୮. | ୧୦୮ ଉପନିଷଦ | ୧୯୮୧, ସଂସ୍କୃତି ସଂସ୍ଥାନ, ବରେଲୀ, |
| ୧୯. ମହର୍ଷି ବେଦବ୍ୟାସ | ବ୍ରହ୍ମସୂତ୍ର | ଗୀତାପ୍ରେସ୍ ଗୋରେଖପୁର |


□□□



Source: Author, Digitized by PPRACHIN, SOA

# ଅଧଃ ସମାସ

# ଓଡ଼ିଆ ଭାଷା ସୃଷ୍ଟି କଳା

ଓଡ଼ିଆ ଭାଷାତତ୍ତ୍ୱ — ପ. ଗୋପୀନାଥ ନନ୍ଦଶର୍ମା
ଓଡ଼ିଆ ଭାଷାତାତ୍ତ୍ୱିକ ପ୍ରସଙ୍ଗ — ଡ. କୃଷ୍ଣ ପ୍ରସାଦ ମହାପାତ୍ର
ଓଡ଼ିଆ ଭାଷା ଓ ଭାଷାବିଜ୍ଞାନ — ଡ. ଦେବୀ ପ୍ରସନ୍ନ ପଟ୍ଟନାୟକ



Source: Author, Digitized by PPRACHIN, SOA

# ଉଡ୍‌ଡୀୟାନରୁ କେଂଦୁବିଲ୍ୱ

ଓଡ଼ିଶା ଜଗନ୍ନାଥଙ୍କ ଦେଶ । ଶ୍ରୀଜଗନ୍ନାଥ ଓଡ଼ିଶାର ଜାତୀୟ ଦେବତା । ଓଡ଼ିଆ ଜଗନ୍ନାଥଙ୍କ ଭାଷା । ଆର୍ଯ୍ୟ ସଂସ୍କୃତଠୁ ଭିନ୍ନ (ଦ୍ରାବିଡ଼ୌଡ୍ର ଜାଃ ହୀନା ବନଚରଣାଂଚ ବିଭାଷା, ନାଟ୍ୟଶାସ୍ତ୍ର, ୧୭/୪୯),ଏହି ମାଟି ପୁତ୍ରର ମୂଳ ପ୍ରାକୃତିକ କଥିତ ଭାଷା । ଏହା ବିଶ୍ୱାବସୁ କିମ୍ବା ତାହା ପୂର୍ବ ପୁରୁଷ ଜାରା ଶବରର ଅରଣ୍ୟରେ ଭାବ ବିନିମୟ ପାଇଁ ବ୍ୟବହୃତ ଭାଷା । କିନ୍ତୁ ସାହିତ୍ୟିକ ସଂସ୍କୃତ ଏହି ମାଟିରେ ସେତେବେଳେ ମଧ୍ୟ ଥିଲା ଜୀବିତ । ସମ୍ବଲପୁର ରାଜା ଇନ୍ଦ୍ରଭୂତିଙ୍କ ଗୁରୁ ସିଦ୍ଧାଚାର୍ଯ୍ୟ ଅନଙ୍ଗବଜ୍ର 'ପ୍ରଜ୍ଞୋପାୟ ବିନିଶ୍ଚୟସିଦ୍ଧି' ରେ ସର୍ବାର୍ଥ ସିଦ୍ଧିଦ ଶ୍ରୀଜଗନ୍ନାଥଙ୍କୁ ଗୁରୁ ରୂପେ କରିଛନ୍ତି ଉପାସନା:

ସଦା ପରହିତ ସୈ୍ୟବ ଚର୍ଯ୍ୟୟାଽକମ୍ପ୍ୟ ଚେତସା ।
ପର୍ଯ୍ୟୁପାସ୍ୟୋ ଜଗନ୍ନାଥୋ ଗୁରୁଃ ସର୍ବାର୍ଥ ସିଦ୍ଧିଦଃ ।।

ଏହି ଗ୍ରନ୍ଥରେ ରାଜା ଶୁଭକରଙ୍କ ନାମ ଅନ୍ୟ ଏକ ଶ୍ଲୋକରୁ (ଗୁରୁ ଚରଣାମ୍ବୁଜ ସେବାବିଡ଼ମ୍ବିତମମୃତଂ ଶୁଭାକରାଖ୍ୟେନ । ପ୍ର.ବି.ସି., ପୃଷ୍ଠା ୫୪) ଦେଖିବାକୁ ମିଳେ । ଶୁଭକର କେଶରୀ ୭୯୫ ଖ୍ରୀଷ୍ଟାବ୍ଦ, ଥିଲେ ଓଡ଼ିଶାର ରାଜା । L.A.Wadel ତାଙ୍କ ରଚିତ 'Lamaism' ପୁସ୍ତକ (ପୃଷ୍ଠା ୩୮୦-୩୮୨)-ରେ କରିଛନ୍ତି ଉଲ୍ଲେଖ, ଉଡ୍‌ଡୀୟାନ ଥିଲା ଦୁଇଟି ରାଜ୍ୟରେ ବିଭକ୍ତ । ଗୋଟିଏ 'ସମ୍ବଳକ', ଏଠାରେ ରାଜତ୍ୱ କରୁଥିଲେ ଇନ୍ଦ୍ରଭୂତି ଏବଂ ଅନ୍ୟଟିର ନାମ 'ଲଙ୍କାପୁରୀ', ସେଠାରେ 'ଜଳେଂଦ୍ର' ଥିଲେ ରାଜା । ଜଳେଂଦ୍ରଙ୍କ ପୁତ୍ର ଇଂଦ୍ରଭୂତିଙ୍କ ଭଗ୍ନୀ ରାଜଜେମା ଲକ୍ଷ୍ମୀଙ୍କରାଙ୍କୁ କରିଥିଲେ ବିବାହ । ଲକ୍ଷ୍ମୀଙ୍କରାଙ୍କୁ ବଜ୍ରଯାନ ଧର୍ମରେ ଦୀକ୍ଷିତା କରି ପୁତ୍ରହସ୍ତରେ ରାଜ୍ୟ ଅର୍ପଣ କରି ଇନ୍ଦ୍ରଭୂତି ଗ୍ରହଣ କରିଥିଲେ ସନ୍ନ୍ୟାସ ଏବଂ ଲକ୍ଷ୍ମୀଙ୍କରା ସିଦ୍ଧି ପ୍ରାପ୍ତ ହୋଇ ସହଜଯାନ ନାମରେ ଗୋଟିଏ ନୂତନ ଧର୍ମ କରିଥିଲେ ପ୍ରସାରିତ ।

ସିଦ୍ଧାଚାର୍ଯ୍ୟ ଅନଙ୍ଗବଜ୍ର ରଚନା କରିଛନ୍ତି ଛଅଟି ପୁସ୍ତକ । ଇନ୍ଦ୍ରଭୂତି ଙ୍କ ରଚିତ ପୁସ୍ତକ ସଂଖ୍ୟା ତେଇଶି । ବରୋଦାରୁ ପ୍ରକାଶିତ ତାଙ୍କ ପୁସ୍ତକ 'ଜ୍ଞାନସିଦ୍ଧି' । ଏହି ପୁସ୍ତକରେ ସର୍ବ ପ୍ରଥମେ ସିଏ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧ ରୂପରେ କରିଛନ୍ତି ପ୍ରଣିପାତ ।



Source: Author, Digitized by PPRACHIN, SOA

ପ୍ରଣିପତ୍ୟଂ ଜଗନ୍ନାଥଂ ସର୍ବଜିନ ବରୋର୍ଚ୍ଚିତମ୍ ।
ସର୍ବ ବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମମ୍ ।।
ସର୍ବଦଂ ସର୍ବସତ୍ତ୍ୱେଭ୍ୟୋଃ ସର୍ବଜ୍ଞ ବରବଜ୍ରିଣମ୍ ।
ଭକ୍ତ୍ୟାଽହଂ ସର୍ବ ଭାବେନ ବକ୍ଷ୍ୟେ ତତ୍ ସାଧନଂ ପରମ୍ ।।

(Two Vajrayana Works, Page 31, Ed. By Dr. B.Bhattacharya)

ପରବର୍ତ୍ତୀ ପଞ୍ଚଦଶ ଶତକ ବେଳକୁ ଅଷ୍ଟମଶତକର କାହ୍ନୁପା, ଶବରପା ଓ ଲୁଇପାଙ୍କ ପ୍ରାକୃତିକ ବିଭାଷା ଉଡ୍ରଭାଷା ଶୁଦ୍ଧ ଓ ବିକଶିତ ହୋଇ ଏ ମାଟିର ମହାକବି ସାରଳାଙ୍କ ପରି ଶ୍ରେଷ୍ଠ ପ୍ରତିଭାଙ୍କ ଦ୍ୱାରା ସର୍ବପ୍ରଥମ ଭାରତୀୟ ପ୍ରାଦେଶିକ / ଆଞ୍ଚଳିକ ଭାଷାରେ କରାଯାଇଛି ଆଲୋଚିତ ଓ ଲୋକାର୍ପିତ । ମହାଭାରତର ସଭାପର୍ବରେ ସାରଳା ଇନ୍ଦ୍ରଭୂତିଙ୍କ ଶ୍ରୀଜଗନ୍ନାଥ ବୌଦ୍ଧବତାର ମତକୁ କରିଛନ୍ତି ଗୃହୀତ: ବଉଦ୍ଧ ରୂପରେ କଳି କାଳାନ୍ତକ ସାଧି / କୃତାନ୍ତକ ଦର୍ପ ଗଂଜନ ଅଟ କୃପାନିଧି । ପଞ୍ଚସଖା ଯୁଗ 'ଦେଉଳତୋଳା'ରେ ଜଗନ୍ନାଥ ଦାସ ମଧ୍ୟ କରିଛନ୍ତି ଉଲ୍ଲେଖ: ଠାକୁରେ  ବୋଇଲେ ରାଜା ହୋଇଲୁ କି ବାଇ ? କଳିଯୁଗେ ବସିବୁ ବଉଦ୍ଧ ରୂପ ହୋଇ ।

ଲାମାତାରାନାଥ ଚୌରାଅଶୀ ସିଦ୍ଧଙ୍କ ଇତିହାସ ବର୍ଣ୍ଣନା କଲାବେଳେ ଉଡୀୟାନ ଦେଶର ପରିଚୟ ଦେଇ ଉଲ୍ଲେଖ କରିଛନ୍ତି, ଉଡୀୟାନରେ ଥିଲା ୫୦୦-୬୦୦ ନଗର । ସଂଭ୍ରାନ୍ତ ସଂସ୍କୃତ ଭାଷା ସେହି ନଗରମାନଙ୍କରେ ପ୍ରଚଳିତ ଥିଲା ନିଶ୍ଚିତ । 'Pag Sam Jon Zang' ରେ ଉଲ୍ଲେଖ ରହିଛି, ବୌଦ୍ଧତାନ୍ତ୍ରିକ ମତ ଉଦ୍‌ଭବ ଓ ବିକାଶର ପୀଠ ଉଡ୍‌ଡୀୟନ । 'ଉଡ୍‌ଡୀୟାନ୍' ଶବ୍ଦ ଉଦ୍+ଡୀ ଧାତୁର ନିଷ୍ପନ୍ନ । ଉଡ୍‌ଡୀୟାନ୍ ହଠଯୋଗର ଗୋଟିଏ ବନ୍ଧ । ଯୋଗ କୁଣ୍ଡଳିନୀରେ ରହିଛି, ଯତୋ ପ୍ରାଣଃ ଉଡ୍‌ଡୀୟତେ । ସୁଷୁମ୍ନାରେ ପ୍ରାଣ ଉଡ଼ିଥାଏ ବୋଲି ସେହି ବନ୍ଧକୁ କହନ୍ତି ଉଡ୍‌ଡୀୟାନ । ଏହା ପ୍ରାଣକୁ ଉଡ଼ାଇବା ସାଧନା । ଉଡ୍‌ଡୀୟାନ ଓ ପୂର୍ଣ୍ଣଗିରି ଏହି ସାଧନାର ଦୁଇଟି ଥିଲା ପ୍ରଧାନ ପୀଠ । 'ଯୋଗ ଚିନ୍ତାମଣି'ରେ ବର୍ଣ୍ଣିତ ଅଛି :

ତତ୍ରୋଡଡୀୟାନ ପୀଠେ ତୁ ତଂ ଧାତ୍ୱା କର୍ଷୟେତ୍ ଜଗତ୍ ।
ତୃତୀୟଂ ଯନ୍ତ୍ରାଭିଚକ୍ରଂ ସ୍ୟାତ୍ତନ୍ମଧ୍ୟେ ଭୂଜଗୀ ସ୍ଥିତା ।।
ତନ୍ମଧ୍ୟେ ଓଡ଼ିୟାନ ପୀଠଂ ତ୍ରିକୋଣମ୍...।

ମହା ମହୋପାଧ୍ୟାୟ ହର ପ୍ରସାଦ ଶାସ୍ତ୍ରୀ ମତ ଦିଅନ୍ତି, ଉଡ୍‌ଡୀୟାନ୍ ଓଡ଼ିଶାରେ ଅବସ୍ଥିତ । ଡି.ବି. ଭଟାଚାର୍ଯ୍ୟ ଓ ଏମ୍. ସିଲଭାନ୍ ଲୋଭୀ ପ୍ରଭୃତି ଐତିହାସିକ ଉଡ୍‌ଡୀୟାନ ପୀଠ ଓଡ଼ିଶାରେ ଅବସ୍ଥିତ ବୋଲି କରିଛନ୍ତି ବର୍ଣ୍ଣିତ । ଯେଉଁ ପୀଠରେ, ଜଗନ୍ନାଥସ୍ତୁ ଭୈରବଃ



Source: Author, Digitized by PPRACHIN, SOA

ବିମଳାସ୍ତୁ ମହାଦେବୀ, ସେହି ପୀଠ, ଉଡ୍‌ଡୀୟାନଂ ଧ୍ୟାୟେତ୍, ଶ୍ରୀକ୍ଷେତ୍ର ନିଶ୍ଚିତ ! ପୂର୍ବରୁ ଅନଙ୍ଗବଜ୍ରଙ୍କ 'ଜଗନ୍ନାଥୋ ଗୁରୁଃ' ଏବଂ ଇନ୍ଦ୍ରଭୂତିଙ୍କ 'ଜଗନ୍ନାଥଂ ସାଧନଂ ପରମ୍' ଉଦ୍ଧୃତ କରାଯାଇ ଅଛି ।

ସାଧନା ଓ ସାହିତ୍ୟ ଥିଲା ସଂସ୍କୃତ ଆଶ୍ରିତ । କିନ୍ତୁ କେନ୍ଦ୍ରରେ ବିଶ୍ୱାବସୁର ସେଇ ଦାରୁବ୍ରହ୍ମ ପୂଜା ! ସପ୍ତମ ଶତାବ୍ଦୀ ସିଦ୍ଧଚାର୍ଯ୍ୟ ମଂଜୁବଜ୍ରଙ୍କ ଠାରୁ ଦୀକ୍ଷା ଗ୍ରହଣ କରିଥିବା କେନ୍ଦୁଝରର ଭୁସୁକୁରାଉତ ବା ଭୁସୁକ ପାଦ ଓଡ଼ିଆ ଭାଷୀ କବି ! ନିମ୍ନରେ ତାଙ୍କର ଗୋଟିଏ 'ଚର୍ଯ୍ୟା'ରୁ କେତୋଟି ଧାଡ଼ି:

କାହାରେ ଘିଣି ମେଲି ଅଚ୍ଛୁହୁ କୀସ
ବେଢ଼ିଲା ହାକ ପଡ଼ଅ ଚୌଦୀସ
ଅପଣା ମାଂସେ ହରିଣା ବୈରୀ
ଖଣହ ନ ଛାଡ଼ଅ ଭୁସୁକୁ ଅହେରି
ତିଣ ନ ଛପ୍‌ପଇ ହରିଣା ପିବଇ ନ ପାଣୀ
ହରିଣା ହରିଣୀର ନିଲଅ ନ ଜାଣି । (ଚର୍ଯ୍ୟ-୬)

ଇନ୍ଦ୍ରଭୂତିଙ୍କ ଜଣେ ପୁତ୍ର ଥିଲେ, ତାଙ୍କ ନାମ ପଦ୍ମ ସମ୍ଭବ । ରାଜ୍ୟରେ କେତେକ ପ୍ରଜାଙ୍କୁ ହତ୍ୟା କରିବାରୁ ଇନ୍ଦ୍ରଭୂତି ନରହତ୍ୟା ଅପରାଧରେ ତାଙ୍କୁ କରିଥିଲେ ନିର୍ବାସିତ । ସିଏ ନିକଟ 'Zohar' ରାଜ୍ୟକୁ ଯାଇ ରାଜା ଶାନ୍ତିରକ୍ଷିତଙ୍କ ଭଗ୍ନୀଙ୍କୁ କରିଥିଲେ ବିବାହ । ସେଇ 'Zohar' ରାଜ୍ୟ କେନ୍ଦୁଝର । ପରେ ପଦ୍ମ ସମ୍ଭବ ଓ ଶାନ୍ତି ରକ୍ଷିତ ଧର୍ମ ପ୍ରଚାର ପାଇଁ ଗମନ କରିଥିଲେ ତିବ୍‌ବତ । ଶାନ୍ତି ରକ୍ଷିତ ଥିଲେ ପ୍ରଚଣ୍ଡ ନ୍ୟାୟିକ । ନାଳଂଦା ବିଶ୍ୱବିଦ୍ୟାଳୟରେ ସିଏ କିଛି ଦିନ ଥିଲେ ପ୍ରଧାନ ପୁରୋଧା ଓ ଶିକ୍ଷକ । ବୌଦ୍ଧ ଓ ଅବୌଦ୍ଧ ଦାର୍ଶନିକ ମତସମୂହ ଉପରେ ଆଧାରିତ ସଂସ୍କୃତରେ ରଚିତ ତାଙ୍କ ଖଣ୍ଡିଏ ପୁସ୍ତକର ଟୀକା ରଚନା କରିଥିଲେ 'କାମଶୀଳ' ନାମକ ତାହାଙ୍କ ଜନୈକଶିଷ୍ୟ । ତାଙ୍କର ପ୍ରସିଦ୍ଧ ଅନ୍ୟ ଦୁଇଟି ପୁସ୍ତକ- ୧-ବାଦନ୍ୟାୟ ବୃତ୍ତିବିପଞ୍ଚିତାର୍ଥ ଓ ୨- ମଧ୍ୟମିକାଳଙ୍କାରକାରିକା । ଶାନ୍ତି ରକ୍ଷିତ ହୁଏତ 'ସନ୍ତେଇ' ପାହାଡ଼ର ସାଧକ ସେଇ ଶାନ୍ତିଦେବ ! ତାହାଙ୍କ ଭଣିତା ଦୁଇଟି ଚର୍ଯ୍ୟା ଗୀତିକା । (୧୫ ଓ ୨୬ ସଂଖ୍ୟକ) ରହିଅଛି । ଡ଼. କରୁଣାକର କର ଲେଖିଛନ୍ତି ତିବ୍‌ବତର ୮୪ ସିଦ୍ଧାଚାର୍ଯ୍ୟଙ୍କ ତାଲିକାରେ ଶାନ୍ତି ଦେବଙ୍କୁ ଭୁସୁକୁ ବୋଲି କୁହାଯାଇଛି । ବୌଦ୍ଧଗାନ ଓ ଦୋହାର ମୁଖବନ୍ଧରେ (ପୃଷ୍ଠା-୧୨) ଉଲ୍ଲେଖ ରହିଛି ଶାନ୍ତିଦେବଙ୍କ ଅନ୍ୟ ଖଣ୍ଡିଏ ପୁସ୍ତକରେ ନାମ 'ଶ୍ରୀଗୁହ୍ୟସମ ମହାଯୋଗ ତନ୍ତ୍ରବଳିବିଧି' ଏଥିରେ ତାଙ୍କ ଘର Zohar 'ଝର' ବୋଲି ଉଲ୍ଲେଖ ରହିଛି । ଏଠାରେ ଗୋଟିଏ କଥା



Source: Author, Digitized by PPRACHIN, SOA

ସ୍ପଷ୍ଟ ହେଉଛି ଯେ ଓଡ଼ିଆ ଭାଷା ବିକାଶ ହେବା ବେଳକୁ ସଂସ୍କୃତ ଭାଷା ମଧ୍ୟାହ୍ନର ସୂର୍ଯ୍ୟ ପରି ଓଡ଼ିଆ ଜନଜୀବନରେ ଚିକ୍‌ଚିକ୍ ହେଉଥିଲା ।

'An Introduction to Buddhist Esoterism', ପୃଷ୍ଠା ୬୩ ଡକ୍ଟର ବି. ଭଟ୍ଟାଚାର୍ଯ୍ୟ ଗୁରୁଶିଷ୍ୟ ପରଂପରା ଅନୁଯାୟୀ ଉଲ୍ଲେଖ କରିଛନ୍ତି ନିମ୍ନ ଗୁରୁ ଓ ଶିଷ୍ୟଙ୍କ ସମୟ ଯଥାକ୍ରମେ :

୧-ପଦ୍ମ ବଜ୍ର ୬୯୩ ଖ୍ରୀ:ଅ, 'ସାଧନାମାଳା' ପରଂପରା ଅନୁସାରେ ୬୩୩ ଖ୍ରୀ.ଅ. ।

୨- ଅନଙ୍ଗ ବଜ୍ର ୭୦୫ ଖ୍ରୀ:ଅ

୩- ଇନ୍ଦ୍ରଭୂତି ୭୧୭ ଖ୍ରୀ:ଅ

ଏବଂ ୪-ଭଗବତୀ ଲକ୍ଷ୍ମୀଙ୍କରା ୭୨୯ ଖ୍ରୀ:

ପଦ୍ମବଜ୍ର ବା ବଜ୍ରପଦ୍ମଙ୍କ ନାମ 'ସରହ' ଏବଂ ସେ ହିଁ ପ୍ରଥମ ଓଡ଼ିଆ କବି । ୨୫ଟି ତାଂତ୍ରିକ ଗ୍ରନ୍ଥ ରଚନା କରିଛନ୍ତି । ଏହାଙ୍କ ପୂର୍ବାଶ୍ରମ ନାମ ରାହୁଲ ଭଦ୍ର ଏବଂ ସେ କିଛି କାଳ ନାଳଂଦାରେ ଥିଲେ ଅଧ୍ୟାପକ, ଉଲ୍ଲେଖ କରିଛନ୍ତି ଲାମାତାରା ନାଥ ।

ଲକ୍ଷ୍ମୀଙ୍କରା ବଜ୍ରଯାନର ସିଦ୍ଧ ସାଧିକା ଏବଂ ଗୋଟିଏ ନୂତନ ଧର୍ମ ସହଜଯାନ ଧର୍ମତତ୍ତ୍ୱ ପ୍ରଚାରିକା । ସିଏ କେବଳ ସୁନପୁରର ରାଜବଧୂ ବା ରାଣୀ ନୁହଁନ୍ତି, ସଂସ୍କୃତ ଭାଷାର ପ୍ରଚଣ୍ଡ ବିଦୁଷୀ । ତାଙ୍କ ରଚିତ ଗ୍ରନ୍ଥ 'ଅଦ୍ୱୟ ସିଦ୍ଧି' । ବୋଧହୁଏ ଲକ୍ଷ୍ମୀଙ୍କରା ଓଡ଼ିଶାର ପ୍ରଥମ କବୟିତ୍ରୀ । ତାଙ୍କ 'ଅଦ୍ୱୟସିଦ୍ଧି'ରୁ ନିମ୍ନ ଶ୍ଳୋକ ଉଦ୍ଧୃତ କରାଯାଉଛି !

ନ କଷ୍ଟ କଳ୍ପନାଂ କୁର୍ଯ୍ୟାତ୍ ନୋପବାସ୍ନା ନ ଚ କିୟାମ୍ ।
ସ୍ନାନଂ ଶୌଚଂ ନ ଚୈବାତ୍ର ଗ୍ରାମଧର୍ମ ବିବର୍ଜନମ୍ ।
ନ ଚାପି ବଂଦୟେଦ୍ ର୍ଦ୍ଦେବାନ୍ କାଷ୍ଠ ପାଷାଣ ମୃଣ୍ମୟାନ୍ ।
ପୂଜାମସ୍ୟୈବ କାୟସ୍ୟକୁର୍ଯ୍ୟାନ୍ନିତ୍ୟଂ ସମାହିତଃ ।

ଅର୍ଥାତ୍, ଜପ, ତପ, ପୂଜା, ଧ୍ୟାନ ପ୍ରଭୃତିର ଆବଶ୍ୟକତା ନାହିଁ । ସ୍ନାନ ଶୌଚ ପ୍ରଭୃତି କୌଣସି ବିଧି ବ୍ୟବସ୍ଥା ଅବଲମ୍ବନ କରିବାର ପ୍ରୟୋଜନ ନାହିଁ । କାଷ୍ଠ ବା ପାଷାଣରେ ଗଢ଼ା ଠାକୁର ବା ମୂର୍ତ୍ତିକୁ ପୂଜା ବଂଦନା କରିବ ନାହିଁ । ଏଇ ପିଣ୍ଡ ହିଁ ବ୍ରହ୍ମାଣ୍ଡ, ଏଠାରେ ସବୁ ଦେବଦେବୀ ରହିଛନ୍ତି । ତେଣୁ ମନ ପ୍ରାଣ ଦେଇ ନିଜ ଦେହରେ ଦେବତାର ଉପାସନା କର । ଧର୍ମତତ୍ତ୍ୱ ବୁଝିବାକୁ ଯେପରି ସହଜ, ଶ୍ରବଣ ପାଇଁ ବ୍ୟବହୃତ ଭାଷା ସେହିପରି ସୁଶ୍ରାବ୍ୟ ଓ ସୁଗମ, ତାଙ୍କ କବିତ୍ୱର ପରାକାଷ୍ଠା ଓ ଶବ୍ଦ ସାଧନାର ନିଷ୍ଠାକୁ କରେ ପ୍ରମାଣିତ । ଇନ୍ଦ୍ରଭୂତି, ଲକ୍ଷ୍ମୀଙ୍କରା ଓ ଶାନ୍ତି ରକ୍ଷିତ ପ୍ରଭୃତି ଥିଲେ ରାଜବଂଶୀ-କବି । ଏମାନଙ୍କ ପରେ ଜଣେ ସାଧାରଣ ବ୍ରାହ୍ମଣ ଯୁବକ ଉତ୍କଳରେ ଜନ୍ମ ଗ୍ରହଣ କରି ସଂସ୍କୃତ



Source: Author, Digitized by PPRACHIN, SOA

ବାଙ୍ମୟର ଇତିହାସକୁ ଦେଇଛନ୍ତି ନୂତନ ଗତି । ସିଏ ହେଲେ ଦ୍ୱାଦଶ ଶତକର କବିରାଜ ଜୟଦେବ ଏବଂ ତାଙ୍କର ରଚିତ ଗ୍ରନ୍ଥ ଶ୍ରୀଗୀତଗୋବିନ୍ଦ । ଶ୍ରୀ ଚୈତନ୍ୟ । (୧୪୮୬ ଖ୍ରୀ.) ଙ୍କ ସମସାମୟିକ ତଥା ଏକାନ୍ତ ଭକ୍ତ ମାଧବ ପଟ୍ଟନାୟକ ତାଙ୍କ ରଚିତ 'ବୈଷ୍ଣବ ଲୀଳାମୃତ' ପୁସ୍ତକରେ କରିଛନ୍ତି ଉଲ୍ଲେଖ, କବି ଜୟଦେବ ତାଙ୍କ ରଚିତ ଗୀତଗୋବିନ୍ଦ ଏବଂ ତାଙ୍କ ପତ୍ନୀ ପଦ୍ମାବତୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସେବାରେ ଥିଲେ ନିଯୁକ୍ତ । 'ବୈଷ୍ଣବ ଲୀଳାମୃତ' ଦ୍ୱିତୀୟ ଅଧ୍ୟାୟସ୍ଥ ନିମ୍ନଛତ୍ର:

ଏଣୁ ଅନନ୍ତରେ ଶୁଣ ଜନେ । ଗୀତ ଗୋବିନ୍ଦ ପରିମାଣେ ॥
ବିପ୍ର ସେ ଜୟଦେବ ନାମ । କ୍ଷେତ୍ରବରକୁ ଆଗମନ ॥
କେନ୍ଦୁଲୀ ଶାସନ ତା' ଗ୍ରାମ । ପ୍ରାଚୀନ ନଦୀର ତଟ ପୁଣ ॥
ନିଆଲୀ ମାଧବ ସମୀପେ । ଭଗତି କଲା ନାନା ରୂପେ ॥
ଶାସ୍ତ୍ର ପୁରାଣେ ବିଚକ୍ଷଣ । କବିତ୍ୱ ମାର୍ଗେ ତାର ମନ ॥
ଗୀତ ସେ ରଚିବି ବୋଇଲା । କ୍ଷେତ୍ରବାସକୁ ମନ ଦେଲା ॥
ଶ୍ରୀଜଗନ୍ନାଥର ସମୀପେ । ଶୁଦ୍ଧସାତ୍ତ୍ୱିକ ମତି ଭାବେ ॥
ରଚିଲା ଶ୍ରୀଗୀତ ଗୋବିନ୍ଦ । ଲଭିଲା ପରମ ଆନନ୍ଦ ॥
ଶ୍ରୀରାଧା ମାଧବର ଲୀଳା । ମଧୁର ସ୍ୱରରେ ଗାଇଲା ॥
ପତ୍ନୀ ହୋଇ ପଦ୍ମାବତୀ । ଗୀତରେ ତାଳେ ସେ ନୃତ୍ୟତି ॥
ରାହାସ ନୃତ୍ୟ କଳା ଜାଣି । ନାଟ ସେ କଲାକ ନାଚୁଣୀ ॥
ଭଗତେ ନାଟ୍ୟ ଧନ୍ୟ କଲେ । ଭଗତି ଭାବେ ଭୋଳ ହେଲେ ॥
ଗୀତ ଗୋବିନ୍ଦ ନାଟ ସେବା । ମନ୍ଦିରେ ପ୍ରତ୍ୟହ ହୋଇବା ॥
ରାଜା ସେ ସେବା ଭିଆଇଲା । କେନ୍ଦୁଲୀ ଶାଢ଼ୀ ଯୋଗାଇଲା ॥

ମନ୍ମଥ ନାଥ ଗୁପ୍ତ 'ବଂଗଳା ସାହିତ୍ୟ-ଦର୍ଶନ'ରେ ଉଲ୍ଲେଖ କରିଛନ୍ତି, ସଂସ୍କୃତ ସାହିତ୍ୟର ଖଣ୍ଡିଏ ଅତୁଳନୀୟ କୃତୀ । ପରେ ଷୋହଳ ଶତାବ୍ଦୀରେ ଯେତେବେଳେ ବୈଷ୍ଣବ ଧର୍ମ ପ୍ରାଧାନ୍ୟ ବୃଦ୍ଧି ହେଲା 'ଗୀତଗୋବିନ୍ଦ' ଧର୍ମିକ ମହତ୍ୱ ପ୍ରାପ୍ତ ହେଲା ।ଏହି ରଚନା ତତ୍‌କାଳୀନ ପରିସ୍ଥିତି ଅନୁଯାୟୀ ଖୁବ୍ ଶୀଘ୍ର ହୋଇଛି ପ୍ରସିଦ୍ଧ । ୧୪୯୯ ମସିହା ପର୍ଯ୍ୟନ୍ତ ଏତେ ମର୍ଯ୍ୟାଦା ପ୍ରାପ୍ତ ହୋଇଛି ଯେ ଗୋଟିଏ ଅଭିଲେଖରୁ ଏହାର ଉଲ୍ଲେଖ ମିଳୁଅଛି । ପୁରୀରେ ଜଗନ୍ନାଥଙ୍କ ମୂର୍ତ୍ତି ଆଗରେ ଏହାର ଗାୟନ ଜରୁରୀ ବୋଲି କୁହାଯାଇଛି ।

ରଚନା ଶୈଳୀ ଦୃଷ୍ଟିରୁ ଏହାର ପ୍ରଭାବ ବଂଗଳା ଗୀତି କବିତାରେ ସର୍ବାଧିକ । ଜର୍ମାନ ବିଦ୍ୱାନ ପିଶଲ୍ ଓ ଐତିହାସିକ ମଜୁମଦାର ସନ୍ଦେହ କରନ୍ତି ଯେ 'ଗୀତଗୋବିନ୍ଦ'ର ମୂଳଲେଖାରୁ ହୁଏତ ପ୍ରଚଳିତ ପଶ୍ଚିମୀ ଅପଭ୍ରଂଶ କିମ୍ବା ବଂଗଳାରେ ହୋଇଥିବା ହେତୁ



Source: Author, Digitized by PPRACHIN, SOA

ଏହାର ପ୍ରଭାବ ବଂଗଳାରେ ଅଧିକ । ଏହାର ଭାଷା ସଂସ୍କୃତ ଓ ଏହା ପୋଥିରେ ଲିପିବଦ୍ଧ ହୋଇ ରହିଥିବାରୁ ଏହାକୁ କେହି ବଦଳାଇଦେଇ ପାରି ନାହାନ୍ତି । ଏହା ଏବେ ବି ଅବିକୃତ ରହିଛି । ରହିଛି ପବିତ୍ର ।

## ଗୀତ ଗୋବିନ୍ଦର ରୂପସୃଷ୍ଟି : ପିକ୍‌ଚର୍ସ ଅଫ୍ ଆକ୍ସନ୍

'ଗୀତଗୋବିନ୍ଦ' ରଚନାରେ ରହିଛି କମନୀୟ ନାଟ୍ୟକୀୟ ଶୈଳୀ । ପ୍ରତ୍ୟେକ ଶ୍ଳୋକ ପଛକୁ ରହିଛି ଉତ୍କଣ୍ଠା ଓ ସଂସ୍କୃତ 'ସଂଦର୍ଭଶୁଦ୍ଧି'ର ପରଂପରା । ମୋଟ ବାରଟି ସର୍ଗବନ୍ଧରେ ନିର୍ମିତ ଅନୁପମ ଲଳିତ ସଂଗୀତର ପ୍ରବାହ । ଶ୍ଳୋକ ଛନ୍ଦୋବଦ୍ଧ ପଦ୍ୟ କିନ୍ତୁ 'ଗୀତଗୋବିନ୍ଦ' ବିଭିନ୍ନ ରାଗିଣୀର ଗାନ (Lyrics) । ଏଗୁଡ଼ିକର ଉଦ୍ଦେଶ୍ୟ 'ଗୀୟତେ', ଗାୟନ ପାଇଁ ରଚିତ ।

ବନଭୂମି । ଆଷାଢ଼ ଆକାଶ ହଠାତ୍ ମାଳମାଳ ମେଘରେ ହୋଇଛି ଆବୃତ୍ତ । ଦିବସ ଦିଶିଛି ଘନ ଆଚ୍ଛାଦିତ ହେତୁ ଅନ୍ଧାରିଆ । ଗୋଗୋଷ୍ଠରେ ଥିବା ନନ୍ଦ ରାଧାଙ୍କୁ କହିଛନ୍ତି, ପୁଅ ଡ଼ରିବ, ତାକୁ ତୁମେ ଘରକୁ ନେଇଗଲ, ରାଧା । ରାଧାକୃଷ୍ଣ ଗୃହକୁ ପ୍ରତ୍ୟାବର୍ତ୍ତନ ବେଳେ ଦ୍ରୁମାଚ୍ଛାଦିତ କୁଂଜତଳେ ପରସ୍ପରକୁ ଏକାନ୍ତରେ ପାଇ ବକ୍ଷରେ ଚାପି ଧରିଛନ୍ତି । ରଚନା କରିଛନ୍ତି ରସକ୍ରୀଡ଼ା । ଏହା ଥିଲା ଜୟଦେବଙ୍କ ପ୍ରଥମ ସର୍ଗର ପ୍ରଥମ ଶ୍ଳୋକ; କାବ୍ୟର ବିଷୟ ପ୍ରବେଶ । ଦ୍ୱିତୀୟ ଶ୍ଳୋକ:

ବାଗ୍‌ଦେବତା ଚରିତ ଚିତ୍ରିତ ଚିତ୍ତ ସଦ୍ମା ପଦ୍ମାବତୀ ଚରଣ ଚାରଣ ଚକ୍ରବର୍ତ୍ତୀ ।
ଶ୍ରୀବାସୁଦେବ ରତିକେଳିକଥା ସମେତମେତଂ କରୋତି ଜୟଦେବକବିଃ ପ୍ରବନ୍ଧମ୍ ।

ପ୍ରଥମ ପଂକ୍ତିରେ ନିଜର ପରିଚୟ ଓ ପତ୍ନୀଙ୍କ ପରିଚୟ ସହିତ ଦୁହିଁଙ୍କ ପ୍ରତିଭାକୁ କରାଯାଇଛି ପ୍ରତିପାଦିତ । ଦ୍ୱିତୀୟ ପଂକ୍ତିରେ ତାଙ୍କ କାବ୍ୟ ପ୍ରବନ୍ଧ ବିଷୟ ବସ୍ତୁ 'ଶ୍ରୀବାସୁଦେବ ରତି କେଳି କଥା'ର ଦେଇଛନ୍ତି ସୂଚନା । ତୃତୀୟ ଶ୍ଳୋକ ବେଳକୁ ବଦଳିଛି ପ୍ରସଙ୍ଗ । 'ରତିକେଳିକଥା' ଅତି ସାଧାରଣ ଗୃହସ୍ଥ ଜୀବନର ଘନ ଅନ୍ଧକାର ଭିତରେ ଘଟୁଥିବା ସୃଜନ ସଂପର୍କ । କିଏ କାହିଁକି ଏଭଳି ଏକ ଗୋପନୀୟ ଚିତ୍ରକୁ ପଢ଼ିବ ? ସମକାଳ ମଣିଷ ସିନା ବହୁଭୋଗୀ ହେତୁ ସ୍ୱୈଣ, ତା' ଅନୁତେଜିତ ଦେହକୁ ଉଦ୍ଦୀପିତ କରାଇବାକୁ ଦରକାର ହେଉଛି ଆମେରିକୀୟ ଅଶ୍ଳୀଳ ଛବି ଦର୍ଶନ । କିନ୍ତୁ ଭାରତର ତତ୍‌କାଳ ଥିଲା ଗୋଟିଏ ସୁବର୍ଣ୍ଣ ସମୟର ପ୍ରବାହରେ ବଳିଷ୍ଠ ଓ ସାଂସ୍କୃତିକ । ତେଣୁ ତୃତୀୟ ଶ୍ଳୋକ:

ଯଦି ହରି ସ୍ମରଣେ ସରସଂ ମନୋ ଯଦି ବିଳାସ କଳାସୁ କୁତୂହଳମ୍ ।
ମଧୁର କୋମଳ କାନ୍ତ ପଦାବଳୀ ଶୃଣୁ ତଦା ଜୟଦେବ ସରସ୍ୱତୀମ୍ ।



Source: Author, Digitized by PPRACHIN, SOA

ଯଦି ହରି ସ୍ମରଣ କରି ମନକୁ ସରସ କରିବାକୁ ଇଚ୍ଛୁକ ଏବଂ କଳା (Art)ର ବୈଷୟିକତାରେ ରହିଛି ଆଗ୍ରହ ତେବେ ଜୟଦେବଙ୍କ ମଧୁର କୋମଳ କାନ୍ତ ଏହି ପଦାବଳୀ ଶୁଣ ! କବି ନିଜ ଚେତନାରେ ଶୃଙ୍ଗାରୀ କିନ୍ତୁ ଶୃଙ୍ଗାରର ପ୍ରଧାନ୍ୟ ଜୀବନକୁ ପ୍ରଦାନ କରି ପାରେ ନାହିଁ ମୋକ୍ଷ । ତେଣୁ ସିଏ ସମାନ ଭାବରେ ଚେତନାକୁ କରିଛନ୍ତି ଆଧ୍ୟାତ୍ମିକ । 'ଗୀତଗୋବିନ୍ଦ' ଶୃଙ୍ଗାର କାବ୍ୟ ଖାଲି ନୁହେଁ, ପାବନ କାବ୍ୟ ମଧ୍ୟ । ତହିଁରେ ରହିଛି କଳାର ପ୍ରାଧାନ୍ୟ । ଦ୍ୱାଦଶ ସର୍ଗରେ ରହିଛି ଗୋଟିଏ ଶ୍ଳୋକ:

ଶ୍ରୀଜୟଦେବ ବଚ୍‌ସି ରୁଚିରେ ହୃଦୟଂ ସଦୟଂକୁରୁ ମଣ୍ଡନେ ।
ହରି ଚରଣ ସ୍ମରଣାମୃତ କୃତ କଳିକଲୁଷ ଜ୍ୱର ଖଣ୍ଡନେ ।

ଶ୍ରୀଜୟଦେବ କହୁଛନ୍ତି ସୁନ୍ଦର ପଦାବଳୀ । ଶ୍ରୀ ହରିଙ୍କ ଚରଣ ସ୍ମରଣ ଅମୃତ । କଳିକାଳ ପାପଜ୍ୱର ଖଣ୍ଡନ ପାଇଁ ହେ ରସିକ ପାଠକ, ତାହାକୁ କର ପାନ ଏବଂ ହୃଦୟକୁ ଦୟାରେ କର ପୂର୍ଣ୍ଣ ।

ମାନବ ଜୀବନର ଶ୍ରେଷ୍ଠ ପ୍ରାପ୍ତି ଧର୍ମ, ଅର୍ଥ, କାମ ଓ ମୋକ୍ଷ; ଚୌବର୍ଗ । ତନ୍ମଧ୍ୟରେ ଧର୍ମ ବା ଆଧ୍ୟାତ୍ମିକତା ପ୍ରଧାନ । ଜୀବାତ୍ମା ନିଃସଂଗତାରୁ ମୁକ୍ତ ହେବାକୁ ହୁଅନ୍ତି 'ବହୁସ୍ୟାମ୍', ସେହି ବହୁତ ହେବା ପ୍ରକ୍ରୀୟାରେ ନାମ କାମ । ଅତ୍ୟନ୍ତ ଉଦାର ଓ ନିର୍ବିକାର ଭାବରେ ପରବର୍ତ୍ତୀ ଶ୍ଳୋକରେ ବର୍ଣ୍ଣନା କରିଛନ୍ତି 'ସଂଦର୍ଭଶୁଦ୍ଧି' । ଏହାପରେ ଆସୁଛି ରାଗ ମାଳବରେ ରଚିତ ରୂପକ ଏକତାଳରେ ଗାୟନ କରାଯିବା ଦଶାବତାର ଚିତ୍ର । ପ୍ରତି ପଂକ୍ତି ଶେଷକୁ 'ମୁଖଡ଼ା' 'କେଶବ ! ଧୃତ...ଶରୀର, ଜୟ ଜଗଦୀଶ ହରେ' । ଏହି ଦଶାବତାର ଶ୍ଳୋକରେ ଶ୍ରୀ ଜଗନ୍ନାଥଙ୍କ ଦୁଇଟି ରୂପ ବର୍ଣ୍ଣିତ । ଗୋଟିଏ 'କେଶବ ! ଧୃତ ବୁଦ୍ଧ ଶରୀର, ଜୟ ଜଗଦୀଶ ହରେ' ଏବଂ ଅନ୍ୟଟି 'କେଶବ ! ଧୃତ କଳ୍‌କି ଶରୀର ଜୟଜଗଦୀଶ ହରେ ।'

ଜଗଦୀଶ ଶ୍ରୀହରିଙ୍କ ଏହି ଦଶାବତାର ସଂସାରର ଶ୍ରେଷ୍ଠ କଥା । ଏହା ଶ୍ରବଣ 'ଶୁଭଦଂ ସୁଖଦମ୍' । ଭଲ ଲାଗିବ ଏବଂ ଶୁଭ ପ୍ରାପ୍ତହେବ ଶ୍ରୋତା । ଭକ୍ତି ଓ ବିଶ୍ୱାସର ବିପୁଳ ବୀଜ ସାରସ୍ୱତ ସାଧନା ମାଧ୍ୟମରେ ବିଂଚିଦିଆ ଯାଇଛି । 'ସଂଦର୍ଭଶୁଦ୍ଧି' ପ୍ରସଙ୍ଗରେ ରାମାୟଣର ନିମ୍ନ ପଂକ୍ତିଟିକୁ ସମ୍ମୁଖକୁ ଅଣାଯାଉଛି: ରାମାୟଣଂ ନାମ ପରଂ ତୁ କାବ୍ୟ ସୁପୁଣ୍ୟଦଂ ବୈ ଶୃଣୁତ ଦ୍ୱିଜେନ୍ଦ୍ରାଃ । ସୁପୁଣ୍ୟ ପ୍ରଦାନ କରିବ ରାମାୟଣ କାବ୍ୟ, ହେ ଦ୍ୱିଜେନ୍ଦ୍ରଗଣ କରନ୍ତୁ ଶ୍ରବଣ । ଠିକ୍ ଏହି ପରି, ଗୋଟିଏ ବଳିଷ୍ଠ ପରମ୍ପରାର ସ୍ୱର: ଧର୍ମାର୍ଥ କାମ ମୋକ୍ଷଣାଂ ସାଧନଂ ଚ ଦ୍ୱିଜୋତ୍ତମାଃ । ଶ୍ରୋତବ୍ୟଂ ଚ ସଦା ଭକ୍ତ୍ୟା ରାମାୟଣ ପରାମୃତମ୍ । ଧର୍ମ ଅର୍ଥ କାମ ଓ ମୋକ୍ଷ ସାଧନ ପ୍ରାପ୍ତି ପାଇଁ ରାମାୟଣ ପରମ ଅମୃତ । ସର୍ବଦା ଭକ୍ତିର ସହିତ ଏହାକୁ ଶ୍ରବଣ କରିବା ଉଚିତ । ଅପୂର୍ବଂ ପୁଣ୍ୟ ଫଳଦଂ ଶୃଣୁଧ୍ୱଂ



Source: Author, Digitized by PPRACHIN, SOA

ସୁସମାହିତାଃ (ରାମାୟଣ) । ଠିକ୍ ଏହିପରି ଜୟଦେବ ତାଙ୍କ ଦ୍ୱିତୀୟ ସର୍ଗ ପ୍ରଥମ ଗୀତର ଭଣିତା ପଂକ୍ତିରେ ଲେଖିଛନ୍ତି, ହରି ଚରଣସ୍ମରଣଂ ପ୍ରତି ସଂପ୍ରତି ପୁଣ୍ୟବତାମନୁରୂପମ୍ । ରାମାୟଣରେ ମଧ୍ୟ ଉଲ୍ଲେଖ ରହିଛି, କଥା ରାମାୟଣସ୍ୟାପି ନିତ୍ୟ ଭବିତି ଯଦ୍ ଗୃହେ ତଦ୍ ଗୃହଂ ତୀର୍ଥରୂପମ୍..., ଅର୍ଥାତ୍ ଯେଉଁ ଘରେ ରାମାୟଣ କଥା ହୁଏ ଉଚ୍ଚାରିତ ସେ ଗୃହ ହୋଇଯାଏ ତୀର୍ଥ ।

ବୌଦ୍ଧ, ବୈଷ୍ଣବ, ଶୈବ, ଜୈନ, ବ୍ରାହ୍ମ ଆଦି ସବୁ ଧର୍ମର ଅଭାବନୀୟ ବିବର୍ତ୍ତନ କ୍ରିୟାର ଚୂଡ଼ାନ୍ତ ପରିଣତି ଓ ସମନ୍ୱୟ ଓଡ଼ିଶାର ଜଗନ୍ନାଥ ସଂସ୍କୃତି । ତେଣୁ ଓଡିଶା ଦେବଭୂମି ଓ ପୁଣ୍ୟଭୂମି ଭାବେ ବିଶ୍ୱ ମାନଚିତ୍ରରେ ଚିହ୍ନିତ । ଉତ୍କୃଷ୍ଟ କଳାର ଦେଶ ଉତ୍କଳ । ଏହାର କଳା ଓ ସାହିତ୍ୟର ମୂଳପିଣ୍ଡ ଶ୍ରୀଜଗନ୍ନାଥ । ଉତ୍କଳୀୟ ଚଳଣି, ଶିଳ୍ପ ଚାତୁରୀ, ନୃତ୍ୟ, ସଂଗୀତ ଓ ସାହିତ୍ୟ ସୃଜନୀରେ ରହିଛି ଚକାଆଖିର ସୂକ୍ଷ୍ମ ସୂଚୀକର୍ମର ଅଦୃଶ୍ୟ ମୁକ୍ତ ପାପୁଲି । ଓଡ଼ିଆ ପ୍ରାଣର କାବ୍ୟ ନାୟକ ଯେମିତି ସ୍ୱୟଂ ଜଗନ୍ନାଥ ! ତାଙ୍କୁ ଦଶରୂପ ବା ଦଶାବତାର ରୂପରେ କାବ୍ୟ ପ୍ରଥମ ସର୍ଗରେ ତେଣୁ ଜୟଦେବ କରିଛନ୍ତି ତାଙ୍କୁ ପବିତ୍ର ସାରସ୍ୱତ କ୍ରିୟାର ଶୁଭରେ ସମାପ୍ତି ପାଇଁ ପ୍ରାର୍ଥନା । ଅନ୍ୟ ପକ୍ଷରେ ଉପେନ୍ଦ୍ର, ଦୀନକୃଷ୍ଣ, ସାରଳା, ଜଗନ୍ନାଥ, ବଳରାମ, ସାଲବେଗ, ଭୀମଭୋଇ, ମାଧବୀଦାସୀ ପ୍ରଭୃତି ପ୍ରାୟ ଅଧିକାଂଶ ଓଡ଼ିଆ ସାରସ୍ୱତ ଶିଳ୍ପୀ ଶ୍ରୀଜଗନ୍ନାଥ ଆଶ୍ରିତ ଅଟନ୍ତି ଏବଂ ସେମାନଙ୍କ ସୃଷ୍ଟିର କଦମ୍ବରେ ଶ୍ରୀ ଜଗନ୍ନାଥ ହିଁ ସୌରଭ ରୂପେ ବିରାଜିତ ହୋଇଛନ୍ତି । ଶ୍ରୀକ୍ଷେତ୍ରର ପ୍ରାଧାନ୍ୟ ସୃଷ୍ଟିର ସୁବାସରେ ରହିଅଛି ।

ପୁରାଣ ରଚନା ପରଂପରା ଅନୁସରଣ କରିଛନ୍ତି କବିରାଜ ଜୟଦେବ । ତାଙ୍କ କାବ୍ୟ ପ୍ରବନ୍ଧ ଅଧ୍ୟାୟଗୁଡ଼ିକୁ ତେଣୁ ସିଏ ସର୍ଗବନ୍ଧରେ କରିଛନ୍ତି ବିଭକ୍ତ । ପ୍ରଥମ ସର୍ଗର ପ୍ରଥମ ଗୀତ ସୃଷ୍ଟିର ଉନ୍ମେଷ, ବିକାଶ, ସ୍ଥିତି ଓ ପ୍ରଳୟର ବର୍ଣ୍ଣନା କରିଛନ୍ତି । ପ୍ରଳୟ ପ୍ରୟୋଧିଜଳେ ଆଦ୍ୟାବତାର ମୀନ ହୋଇ ବେଦକୁ ଉଦ୍ଧାର କରି ଶ୍ରୀକେଶବ କରିଛନ୍ତି ଜଗତ ରଚନା । ଜଳରୁ ଜୀବର ସୃଷ୍ଟି, ମୀନ ତାହାକୁ ହିଁ ପ୍ରତୀକିତ କରିଛି । ପୁନଶ୍ଚ ବଳରାମ ଲେଖିଛନ୍ତି, ପ୍ରଥମ ମାସେ ହେଲୁ ଧବଳ ବର୍ଣ୍ଣ / ଦ୍ୱିତୀୟ ମାସେ ଜଳେ ଯେସନ ମୀନ / ତୃତୀୟ ମାସେ ଅସ୍ଥି ଖଂଜା ତୋହରି ! ଆଧୁନିକ ବିବର୍ତ୍ତନ ତତ୍ତ୍ୱର କରେ ସମର୍ଥନ । ବାମନ ଓ ହଳଧର ରୂପ ଧାରଣ କରି ସୂଚିତ କରାଇଛନ୍ତି ସ୍ଥିତିଶୀଳ ମାନବର ବିକାଶ ଏବଂ ଶେଷକୁ ମାନବିକତାର ଅବକ୍ଷୟକାରୀ ମ୍ଳେଚ୍ଛର ସଂହର, ପ୍ରଳୟ ପ୍ରତୀକ । ଦ୍ୱିତୀୟ ଗୀତ ଆରମ୍ଭରେ ପାଠକକୁ ଗୋଟିଏ ଅପାରଂପରିକ ବିଂବ ପ୍ରୟୋଗ କରି ଚମକାଇ ଦେଇଛନ୍ତି, 'କମଳା କୁଚ ମଣ୍ଡଳ ମଣ୍ଡନ' ଲୀଳାର ପ୍ରତୀକ ଏବଂ ସୃଷ୍ଟିକ୍ରିୟା ପାଇଁ ଅବିରତ ପ୍ରଯତ୍ନର ଏହି ଚିତ୍ର । ଆଦିଜନନୀଙ୍କ କୁଚ ମଣ୍ଡଳକୁ ଧାରଣ କରି ବିଶ୍ୱ ନାୟକ ସୂଚିତ



Source: Author, Digitized by PPRACHIN, SOA

କରାଉଥାଇ ପାରନ୍ତି ଶିଶୁପାଇଁ ଆହାର ଧାରଣ କରିଥିବା ଜଗତ ପଡ଼ିଦାତ୍ରୀ ତାଙ୍କ ସହିତ ଅଛନ୍ତି ! ଉଦ୍ଦୀପିତ ବିଂବ ଆରମ୍ଭରେ ଉପସ୍ଥାପିତ କଲାବେଳେ ଦ୍ୱିତୀୟ ଶ୍ଲୋକ ବେଳକୁ କହୁଛନ୍ତି, 'ଦିନମଣି ମଣ୍ଡଳ ମଣ୍ଡନ' ପୁଣି ସିଏ 'ମୁନିଜନ ମାନସ ହଂସ' ଏବଂ 'ଭବ ଖଣ୍ଡନ' କରିଥାନ୍ତି ।

ଯୋଗୀ କହନ୍ତି ସୂର୍ଯ୍ୟଙ୍କ ସମ୍ମୁଖରେ ଅବସ୍ଥିତ କାଳଲୋକ ଏବଂ ସୂର୍ଯ୍ୟଙ୍କ ପଛପଟେ ରହିଛି ଦେବ ଲୋକ । ଦୁଇ ଲୋକ ମଝିର ଆଲୁଆଳ ସୂର୍ଯ୍ୟ । ସେହି ସୂର୍ଯ୍ୟ ମଣ୍ଡଳ ତାହାଙ୍କ ଭୂଷଣ, ପୁଣି ହୋଇ ପାରେ ଆଦିଜନନୀ (କମଳା) ଙ୍କ କୁଚ୍ ମଣ୍ଡଳ ବୃହଦ୍‌କାୟ ଜ୍ୱଳନ୍ତ ସୂର୍ଯ୍ୟ । ପରବର୍ତ୍ତୀ ଶ୍ଲୋକ ବେଳକୁ ବିଶେଷଣ ରୂପେ ଯେଉଁ ବିଂବ ପ୍ରୟୋଗ କରାଯାଇଛି ତାହା ହୃଦୟରେ ସଂଚାର କରେ ଭୟ । 'କାଳିୟ ବିଷଧର ଗଂଜନ' ଆରମ୍ଭରୁ 'କମଳା କୁଚ ମଣ୍ଡଳ ଧୃତ' ଶୃଙ୍ଗାରୀ ଚେତନାକୁ ମନର କଳାପଟାରୁ ନିଏ ପୋଛି । ଏହା ପରବର୍ତ୍ତୀ ବିଂବରେ ସାମ୍ନାକୁ ଆସିଛି ବୀର ରସ । ମଧୁ, ମୁର ଓ ନରକପରି ଭୟାନକ ଅସୁରଙ୍କୁ ଗରୁଡ଼ ପୃଷ୍ଠରେ ବସି ଯୁଦ୍ଧରେ ନିହତ କରିଥିବା ଏବଂ ଦେବକୁଳଙ୍କୁ କେଳି (ପୁଲକ) ପ୍ରଦାନ କରଥିଲେ ଯେଉଁ ମହାନ୍ ନାୟକ, ତାଙ୍କର ଜୟ ହେଉ ।

ପ୍ରତ୍ୟେକ ଶ୍ଲୋକ ରସର ଅଲଗା ଅଲଗା ମିନା କରା ଗୋଟିଏ ଗୋଟିଏ ପାହାଚ । କିନ୍ତୁ ଶୃଙ୍ଗାର ଏହାର ସ୍ଥାୟୀ ବିଭବ । ଅଳଙ୍କାର ଶାସ୍ତ୍ରରେ ଦୁଇ ପ୍ରକାର ଶୃଙ୍ଗାର ହୁଏ ଦୃଷ୍ଟିଗୋଚର । ୧- ସମ୍ଭୋଗ ଶୃଙ୍ଗାର ଓ ୨-ବିପ୍ରଲମ୍ଭ ଶୃଙ୍ଗାର । 'ଗୀତଗୋବିନ୍ଦ'ର ଆରମ୍ଭ ଯେଉଁ ଶୃଙ୍ଗାରରୁ ସେହି ଶୃଙ୍ଗାରରେ ଘଟିଛି ପରିସମାପ୍ତି । ନାୟକ ଶ୍ରୀକୃଷ୍ଣଙ୍କ ସହିତ ନାୟିକା ଶ୍ରୀରାଧାଙ୍କ ଯେତେବେଳେ ମିଳନ ଘଟିଛି ନାୟିକାଙ୍କ କଣ୍ଠରେ ଫୁଟି ଉଠିଛି ନାୟକଙ୍କ ପ୍ରତି:

ରଚୟ କୁଚୟୋଃ ପତ୍ରଂ ଚିତ୍ରଂ କୁରୁଷ୍ୱ କପୋଳୟୋଃ
ଘଟନ ଜଘନେ କାଂଚିମଂଚ ସ୍ରଜା କବରୀ ଭରମ୍ ।
କଳୟ ବଳୟ ଶ୍ରେଣୀ ପାଣୌ ପଦେ କୁରୁ ନୂପୁରା
ବିତି ନିଗଦିତଃ ପ୍ରୀତଃ ପୀତାମ୍ବରୋଽପି ତଥା କରୋତ୍ । (ଦ୍ୱାଦଶସର୍ଗ, ଦ୍ୱିତୀୟଗୀତ)

ଅର୍ଥାତ୍, ହେ ପୀତାମ୍ବର, ମୋ ଏହି ସ୍ତନମଣ୍ଡଳରେ ପତ୍ରାବଳୀ ରଚନା କର । ମୋ ଗଣ୍ଡଦେଶରେ ଆଙ୍କିଦିଅ ଚିତ୍ର ! ଜଘନରେ ପରିଧାନ କରାଇ ଦିଅ କାଞ୍ଚି ଦାମ । ଜୁଡ଼ାରେ ମଣ୍ଡିଦିଅ ପୁଷ୍ପହାର । କରରେ ବଳୟ ଓ ପାଦରେ ଖଞ୍ଜିଦିଅ ନୂପୁର । ହେ ପ୍ରିୟ, ମତେ ଟିକେ ସଜାଇ ଦିଅ! ସୁବେଶ କରିଦିଅ ମୋ ଦେହ !

ଦ୍ୱାଦଶ ସର୍ଗ ନାୟକ ନାୟିକାଙ୍କ ମିଳନ ଚିତ୍ରରେ ମଂଜୁଳ । ପ୍ରଥମ ଗୀତରେ 'ମନ୍ମଥ କଳାଯୁଦ୍ଧେଽପି', 'ରତି କେଳି ସଙ୍କୁଳ ରଣାରମ୍ଭେ' ଏବଂ 'କାମସ୍ୟ ବାମାଗତିଃ'



Source: Author, Digitized by PPRACHIN, SOA

ପ୍ରଭୃତି ସମ୍ଭୋଗ ଶୃଙ୍ଗାର 'କଳାଷୁକୁତୂହଳମ୍' ତତ୍ତ୍ୱକୁ ପରିପୁଷ୍ଟ କରୁଛି । ନାୟିକା ସ୍ୱାଧୀନଭର୍ତ୍ତୃକା, ନାୟକ ହୋଇଛନ୍ତି 'କାନ୍ତଂ ରତିଶାନ୍ତମ୍', ପୁନର୍ମଣ୍ଡନ ବାଂଛା କରି ନାୟକଙ୍କୁ କହିଛି,

କୁରୁ ଯଦୁନଂଦନ ! ଚଂଦନ ଶିଶିରତରେଣ କରେଣ ପୟୋଧରେ
ମୃଗମଦ ପତ୍ରକମତ୍ର ମନୋଭବ ମଙ୍ଗଳ କଳସ ସହୋଦରେ ।

ଅର୍ଥାତ୍ ହେ ଯଦୁନଂଦନ, ଚଂଦନ ପରି ଅତ୍ୟନ୍ତ ଶୀତଳ ତୁମ ପାପୁଲି, ଦୁଇ ଭାଇପରି ଦିଶୁଥିବା ମୋ ଏହି କୁଚଯୁଗଳ କାମଦେବଙ୍କ ଶୁଭ କଳସ, ଏହା ଉପରେ ମୃଗମଦରେ ଆଙ୍କିଦିଅ ପତ୍ରାବଳୀ ! ପ୍ରତୀକ, ରୂପକ ଓ ଅପୂର୍ବ ଚିତ୍ରକଳ୍ପର ସୁଷମାରେ ଦୀପ୍ତ ଜୟଦେବଙ୍କ ଏହି ସାରସ୍ୱତ କୃତିତ୍ୱ ! ପୁନଶ୍ଚ ପ୍ରତ୍ୟେକ ସ୍ରଷ୍ଟା ନିଜେ ଜଣେ ସମୀକ୍ଷକ । ସେହି ଦୃଷ୍ଟିରୁ ଏହି କାବ୍ୟର ବିଶେଷତ୍ୱ ଜୟଦେବଙ୍କ ନିଜ ଓଷ୍ଠରେ ଉଚ୍ଚାରିତ, 'ଯଦ୍ ଗାନ୍ଧର୍ବ କଳାସୁ କୌଶଳମନୁଧ୍ୟାନଂ, ଅନୁଧ୍ୟାନ କରି ହେବ ଗାନ୍ଧର୍ବ କଳା । ବାଲ୍ମୀକିଙ୍କ ରଚନା ବୀଣାରେ ଗାୟନ କରିହେବ ବୋଲି ସିଏ କରିଛନ୍ତି ଉଲ୍ଲେଖ । କିନ୍ତୁ ଜୟଦେବଙ୍କ ରଚନା ବାଦ୍ୟର ଧ୍ୱନ୍ ସହିତ ନୃତ୍ୟର ମୁଦ୍ରା ଓ ନୂପୁରର ନିକ୍ୱଣରେ ଉପଲବ୍ଧି କରି ହେବ । 'ଚ ଯଦ୍ ବୈଷ୍ଣବଂ ବିବେକତତ୍ତ୍ୱ' ଏବଂ 'ଶୃଙ୍ଗାର ରଚନା କାବ୍ୟେଷୁ ଲୀଳାୟିତମ୍' ବିଷ୍ଣୁଙ୍କ ସମ୍ବନ୍ଧୀୟ ସକଳ ତତ୍ତ୍ୱ ଏବଂ ରସଶ୍ରେଷ୍ଠ ଶୃଙ୍ଗାର କାବ୍ୟଟିର ଭୂମିକାରେ ରଚନା କରିଛି ଲୀଳା । ନିଜେ କବିରାଜ ଜୟଦେବ ଏହି କାବ୍ୟର ସ୍ୱାଦ ସମ୍ବନ୍ଧରେ ରଖିଛନ୍ତି ନିଜର ସମାଲୋଚନାପୂର୍ଣ୍ଣ ସୃଜନଶୀଳ ଦୃଷ୍ଟି । ଦେଖନ୍ତୁ ଏହି ଧାଡ଼ି ଦୁଇଟି:

ସାଧ୍ୱୀ ମାଧ୍ୱୀକଚିନ୍ତା ନ ଭବତି ଭବତଃ ଶର୍କରେ କର୍କରାସି
ଦ୍ରାକ୍ଷେ ଦ୍ରକ୍ଷନ୍ତି କେ ତ୍ୱାମମୃତମୃତ ମସି କ୍ଷୀର ନୀରଂ ରସସ୍ତେ ।

ଅର୍ଥାତ୍ ହେ ମଧୁରସ ପୂର୍ଣ୍ଣ ମଦିରା, ତୁମେ ଗୀତଗୋବିନ୍ଦ କାବ୍ୟର ମାଦକତାକୁ ବଳି ଯିବା ପାଇଁ ବୃଥା ଚିନ୍ତା ଆଦୌ କର ନାହିଁ । ହେ ଶର୍କରା, ତୁମ ସ୍ୱାଦ ଗୀତଗୋବିନ୍ଦ ତୁଳନାରେ ତିକ୍ତ । ହେ ଦ୍ରାକ୍ଷା, ଆଜି ପର୍ଯ୍ୟନ୍ତ ଅମୃତଫଳ ରୂପେ ତୁମେ ଜନ ମନକୁ ମୋହିତ କରି ଆସିଛ । କିନ୍ତୁ ଗୀତଗୋବିନ୍ଦ ରୂପକ ଅମୃତ ରସ ପାନ କଲାପରେ ତୁମକୁ ଆଉ ପଚାରିବ କିଏ ? ହେ ଅମୃତ, ତୁମର ମୃତ୍ୟୁ ହୋଇଗଲାଣି ! ଗୀତଗୋବିନ୍ଦ ରସ ପାନ କଲା ପରେ ତୁମେ ଜଳରେ ପରିଣତ ହୋଇ ଯାଇଛ ।

ଆଧୁନିକ କାବ୍ୟାଲୋଚକ ଆଇ.ଏ.ରିଚାର୍ଡସ୍ କହନ୍ତି, କାବ୍ୟରେ ରସ ନୁହେଁ ରୂପ କିପରି, ଇମୋସନ୍ ନୁହେଁ, ଫର୍ମ୍ (ଆଙ୍ଗିକ) କିପରି, ବିଚାର କରିବାକୁ ହେବ । ଯେଉଁ କାବ୍ୟ-ମାନସିକତା 'ଗୀତଗୋବିନ୍ଦ'ର ଶବ୍ଦ ପାଠକ ମନରେ କ୍ରିୟା କରାଏ ତାହାର



Source: Author, Digitized by PPRACHIN, SOA

ଅବଧି ଦୀର୍ଘ । ପୁନଶ୍ଚ-କବିତା ଶବ୍‌ଦ କଳା । କବିତା ଶବ୍‌ଦ ଚିତ୍ର । ଯାହା ଥରେ ପଢ଼ିଲେ ମନର କାନ୍ଥରେ ଜଳଛବି ପରି ହୋଇଥାଏ ପ୍ରତିଫଳିତ । ଜୟଦେବଙ୍କ ଶବ୍‌ଦ ବସାଣରେ ସେହିଭଳି ଅଲିଭା ଗୋଟିଏ ଚିତ୍ର ପାଠକଙ୍କ ହୃଦୟରେ ବର୍ଷାକରେ ପୁଲକ ।

## ଜୟଦେବ ଓ ମିଲିଟନ୍

ଇ.ଏସ୍.ସିରିଙ୍ଗାନୋ ତାଙ୍କ ପ୍ରବନ୍ଧ 'ଟୁ ବି ଏ ଟୁ ପୋଏମ୍'ରେ ଲେଖିଛନ୍ତି, A poet writes for people. He does write for professors, English classes, text books, examination papers. କବି ଲେଖିଥାନ୍ତି ସାଧାରଣ ପାଠକଙ୍କ ପାଇଁ । ଦ୍ୱାଦଶ ଶତକ ସାଧାରଣ ଜନଜୀବନ ସଂସ୍କୃତ ସାହିତ୍ୟର ବଳିଷ୍ଠ ପ୍ରଭବରେ ଦୀପ୍ତ । ଧର୍ମର ସୁବାସ ସାରସ୍ୱତ ଗନ୍ତାଘରର ଥିଲା ଐଶ୍ୱର୍ଯ୍ୟ । ଶବ୍ଦକଳା ଓ ଗାନ୍ଧର୍ବକଳା ଗୋଟିଏ ଚନ୍ଦ୍ରବନ୍ଧନୀ ରଚନା କରି ନଥିଲେ ପୂର୍ବରୁ । ଗୀତଗୋବିନ୍ଦ ଏହି ଦୃଷ୍ଟିରୁ ସଂଯୋଜିତ କଲା ସଂସ୍କୃତି ବାଙ୍ମୟରେ ଗୋଟିଏ ନୂତନ ପୃଷ୍ଠା ।

ସାହିତ୍ୟ ରଚନାର ଉଚ୍ଚତମ ଆଭିମୁଖ୍ୟ ସର୍ଜନାର ସ୍ରଷ୍ଟାଙ୍କୁ କରାଇବା ପରିଚିତ ଏବଂ ମାନବ ଶରୀରରେ ତାଙ୍କର ଉପଲବ୍ଧି, ବଂଚିବାର ଶ୍ରେଷ୍ଠ ଲକ୍ଷ୍ୟ ଯାହା, ତାହାକୁ କରିବା ଅଭିବ୍ୟକ୍ତି ! କଳି କଳୁଷ ବିନାଶ ପାଇଁ ହରି ନାମ ସ୍ମରଣ ଔଷଧ । ବିଷୟ ଅଳୀକ, ଆତ୍ମା ଓ ଈଶ୍ୱର ଶାଶ୍ୱତ, ଏହାରି ପ୍ରତିପାଦନ ଶ୍ରେଷ୍ଠ ସାହିତ୍ୟିକ କୃତିତ୍ୱମାନଙ୍କ ଆଭିମୁଖ୍ୟ । ସପ୍ତଦଶ ଶତକ ଇଂରେଜ କବି ମିଲିଟନ୍ ତାଙ୍କ ରଚନା କାଳଜୟୀ କୃତିତ୍ୱ 'ପାରାଡାଇଜ୍ ଲଷ୍ଟ'ର ଆଭିମୁଖ୍ୟ କରିଛନ୍ତି ଉଲ୍ଲେଖ:

I may assert. Eternal Providence
And justify the ways of God to men.

ମଣିଷ ଚିରକାଳ ଦୁଃଖୀ । ତାକୁ ସୁଖୀ କରାଇ ଥାଏ ତା' ଦୁଃଖକୁ କଳାରେ ପ୍ରତିଫଳିତ କରାଇ ଆର୍ଟ । ତେଣୁ ଆରିଷ୍ଟଏଲ୍‌ଙ୍କ ଦୃଷ୍ଟିରେ କଳା ଏକ ନକଲ । ଦର୍ପଣରେ ନିଜ ମୁଖର ପ୍ରତିବିମ୍ବ କାହାକୁ ଯେ ପ୍ରିୟ ନ ଲାଗିବ ? ମଧ୍ୟଯୁଗୀୟ ରକ୍ତମାଂସ ମଣିଷର ସୁଖ-ସଂପର୍କ ଚିତ୍ର ଜୟଦେବ କରିଛନ୍ତି ଚିତ୍ରିତ । ସେହି ନିଷିଦ୍ଧ ସୁଖ-ସଂପର୍କକୁ ଆଙ୍କିବା ପାଇଁ ସିଏ ଧର୍ମର କାନ୍ଥଟିଏ ବାଛିଛନ୍ତି । ଠିକ୍ ସେମିତି ଥିଲା ମିଲିଟନ୍‌ଙ୍କ ରଚନାର ଭୂମି :

Of Man's first disobedience, and the fruit
Of that forbidden tree, whose mortal taste
Brought death in to the world, and all our woe,
With loss of Eden...



Source: Author, Digitized by PPRACHIN, SOA

କବିତା କବିତା କେବଳ ! ଜଣେ କାହିଁକି ଲେଖିବ ? ମଣିଷକୁ ସଫା କରିବାକୁ ଓ ସୁଖ ଦେବାକୁ ସାହିତ୍ୟ ରଚନା ଏକ ମାଧ୍ୟମ । ସେହି ମାଧ୍ୟମ ଜୟଦେବଙ୍କୁ କରିଛି ଅକ୍ଷୟ ଯଶଶୀଳ । ପରଂପରା ଭିତରେ ଗୋଟିଏ ନିଆରା କଳାତ୍ମକ ଦୃଷ୍ଟିସ୍ରଷ୍ଟାଙ୍କୁ କରିଥାଏ ଅମୃତ । ଇତିହାସର ଗତିଶୀଳ ପ୍ରତ୍ୟେକ ପାହାଚରେ ସୃଷ୍ଟିଟି ପାଠକଙ୍କୁ କରିଥାଏ ପରିତୃପ୍ତ ।

ଅଷ୍ଟମ ଶତକରୁ ଦ୍ୱାଦଶ ଶତାବ୍ଦୀ, ସଂସ୍କୃତ ଭାଷାର ବୃହଦ୍‌କାୟ ବୋଧିଦ୍ରୁମର ଗଣ୍ଡି ଭିତରେ ଥିଲା ଓଡ଼ିଶା ସାହିତ୍ୟ ଆବଦ୍ଧ । ସେହି ବୋଧିଦ୍ରୁମର ଏକ ନବ ପଲ୍ଲବିତ ଶାଖା କେନ୍ଦୁବିଲ୍ୱରୁ ନେଇ ଶ୍ରୀକ୍ଷେତ୍ରରେ ପୋତ୍‌ଥିତ କରିଥିଲେ କବି ଜୟଦେବ । ଓଡ଼ିଆ ଭାଷା ସାହିତ୍ୟର ବଟବୃକ୍ଷ କାହ୍ନୁପା, ଶବରପା ଓ ଲୁଇପା ପ୍ରଭୃତି ସିଦ୍ଧଚାର୍ଯ୍ୟଙ୍କ ପ୍ରଚେଷ୍ଟାରେ ମାଟିରୁ ଅଳ୍ପ ଉର୍ଦ୍ଧ୍ୱକୁ ଗଜୁରି ଟେକିଥିଲା ମସ୍ତକ ।

'ଗୀତଗୋବିନ୍ଦ' ଶବ୍‌ଦରୁ ଅନୁସ୍ୱାର ଓ ବିସର୍ଗ କାଢ଼ି ନେଇ ସନ୍ଧି ବିଚ୍ଛେଦ କରି ଏବଂ ସମାସକୁ ବ୍ୟାସବାକ୍ୟରେ ବଦଳାଇ ଦେଲେ ପ୍ରାୟତଃ ପ୍ରତିଶତ ଶବ୍‌ଦ ଓଡ଼ିଆକୁ ବଦଳି ଯାଏ । ସଂସ୍କୃତ ଶବ୍‌ଦକୁ ଓଡ଼ିଆରେ କୁହାଯାଏ ସାଧାରଣତଃ 'ସାଧୁ ଶବ୍‌ଦ' । ଶୌରସେନୀ ପ୍ରାକୃତ ଶବ୍‌ଦ ବହୁଳ ମାତ୍ରରେ ସଂସ୍କୃତ । ଓଡ଼ିଆ ଶୌରସେନୀ ଓ ମାଗଧୀ ପ୍ରାକୃତର ମିଶ୍ରିତ ରୂପ । ସଂସ୍କୃତ ଭାଷା ପ୍ରାଧାନ୍ୟକାଳରେ ଜୟଦେବଙ୍କ ଶବ୍‌ଦ ମୂଳ ମୌଳିକ ସମୃଦ୍ଧ ଉତ୍କଳୀୟ ଶବ୍‌ଦ ବୈଭବ । ଲୋକ କଥିତ ଭାଷାଠୁ ଭିନ୍ନ ସୁଧୀଜନଙ୍କ ସାଧୁ ଭାଷା । 'ରୁଦ୍ରସୁଧାନିଧି' ରଚନା ଶୈଳୀରେ ଏହି ସାଧୁ ଶବ୍‌ଦ ବ୍ୟବହାର ପ୍ରାଧାନ୍ୟ ହୁଏ ଦୃଷ୍ଟିଗୋଚର । କିନ୍ତୁ ସାରଳାଙ୍କ ବେଳକୁ ସେହି ଭାଷା ତିରୋହିତ, ଦେଶଜ ସରଳ ଶବ୍‌ଦ ହୋଇଛି 'ମହାଭାରତ'ର ମହତ୍ତ୍ୱ ।





Source: Author, Digitized by PPRACHIN, SOA

# ଓଡ଼ିଆ ଭାଷାର ଜନ୍ମପର୍ବ

-ଏକ-

ଓଡ୍ର, ଉତ୍କଳ, କଳିଙ୍ଗ, ତୋଷଳ ବା ତୋଷାଳି ଏବଂ କୋଶଳ ଓଡ଼ିଶାର ଏଗୁଡ଼ିକ ଭିନ୍ନ ଭିନ୍ନ ନାମ । ସଂସ୍କୃତରେ 'ଓଡ୍ର', ପାଲିରେ 'ଓଡ୍‌ଡକ'(Oddaka) ଏବଂ ଗ୍ରୀକ୍‌ରେ 'Oretes' । ଐତିହାସିକ Pliny ଚିହ୍ନିତ କରିଛନ୍ତି Oretesର ଅବସ୍ଥିତି 'Mallus' ପର୍ବତ ପାଦଦେଶ । 'Mallus' ଆଧୁନିକ ମଳୟଗିରି, ଅନୁଗୋଳ ଜିଲ୍ଲାର ପାଲଲହଡ଼ା ଅନ୍ତର୍ଗତ । ପ୍ରଫେସର ବି.ସି. ମଜୁମଦାର ଦର୍ଶାଇଛନ୍ତି ପାର୍ବତ୍ୟ ଦେଶଟି କଳିଙ୍ଗ ଓ ଦକ୍ଷିଣ କୋଶଳ ମଝିର ଓଡ୍ରଭୂମି । A.Striling ଲେଖିଛନ୍ତି ଓଡ୍ର ଉପଜାତି ଦକ୍ଷିଣର ରଷିକୁଲ୍ୟା ଓ ଉତ୍ତରର କାଂଶବାଂଶ ନଦୀ ମଝି ଭୂଖଣ୍ଡ ଆଧିବାସୀ । ସୋମଦତ୍ତଙ୍କ ସୋର ତାମ୍ରସନଂଦରୁ ଜଣାଯାଏ ଉତ୍ତର ତୋଷାଳି Odravisaya ର ଅଂଶବିଶେଷ ଏବଂ ତାହା ଆଧୁନିକ ମେଦିନପୁରଠାରୁ ମୟୂରଭଂଜର ଅଂଶ ବିଶେଷ ହୋଇ କଟକ ଜିଲ୍ଲା ପର୍ଯ୍ୟନ୍ତ ଥିଲା ପରିବ୍ୟାପ୍ତ । ସୁବର୍ଣ୍ଣରେଖାଠୁ ବୈତରଣୀ ପର୍ଯ୍ୟନ୍ତ ?

ହୁଏନ୍‌ସା ବର୍ଣ୍ଣନା କରିଛନ୍ତି, ସି-ୟୁ -କି ଥିଲା ସାତହଜାର ଲି । ଆଲେକ୍‌ଜାଣ୍ଡର୍ କନିଂଗହାମ୍ ହୁଏନ୍‌ସାଙ୍କ ଏହି ବର୍ଣ୍ଣନାକୁ ଆଧାର କରି କହିଛନ୍ତି କଟକ, ସମ୍ବଲପୁର ଓ ମେଦିନପୁର ମଧ୍ୟବର୍ତ୍ତୀ ଭୂମି । ପୁଣି ମଧ୍ୟ କୁହାଯାଇଛି ଓଡ୍ର ଅନ୍ତର୍ଗତ ଥିଲା ପୁରୀ । ପୁରୀର ପ୍ରାଚୀନ ନାମ ଦନ୍ତପୁରୀ । ଗୌତମବୁଦ୍ଧଙ୍କ ଦନ୍ତ ଜଗନ୍ନାଥଙ୍କ ମୂର୍ତ୍ତି ଭିତରେ ସ୍ଥାପିତ ହୋଇଥିବା ହେତୁ ଏହିପରି ନାମଟି ହୋଇଅଛି ଏବଂ କାଳକ୍ରମେ ଦନ୍ତ ଶବ୍ଦଟି ଯାଇ ଏବେ ଖାଲି ପୁରୀ ! ଏହା ଖ୍ରୀଷ୍ଟପୂର୍ବ ଐତିହାସିକ ସ୍ମୃତି ।

ମହାଭାରତ ବନପର୍ବରେ ଲୋମଶ ଯୁଧିଷ୍ଠିରଙ୍କୁ କହିଛନ୍ତି,... this is the territory of the Kaling where flow the river Vaitarani.

ପ୍ରଫେସର ବି.ସି.ଲ' ଏବଂ ଏଚ. ସି. ରାୟଚୌଧୁରୀ ଏହି ବର୍ଣ୍ଣନାକୁ ଆଧାର କରି କଳିଙ୍ଗର ଅବସ୍ଥିତି ବୈତରଣୀ ସୀମା ଠାରୁ ଆନ୍ଧ୍ରପ୍ରଦେଶ ଗୋଦାବରୀ ନଦୀ ମୁହଁ ପର୍ଯ୍ୟନ୍ତ ଭୂଭାଗକୁ ଚିହ୍ନିତ କରିଛନ୍ତି । ଗ୍ରୀକ୍ ପରିବ୍ରାଜକ ମେଘାସ୍ଥିନିସ୍ ଲେଖିଛନ୍ତି, river Ganges forms the eastern boundary of Kalinga । ଖ୍ରୀ.ପୂ. ଚତୁର୍ଥ ଶତକରୁ



Source: Author, Digitized by PPRACHIN, SOA

ଖ୍ରୀ.ପୂ. ତୃତୀୟ ଶତକ ପର୍ଯ୍ୟନ୍ତ ମଗଧର ନନ୍ଦବଂଶୀ ଶାସକଙ୍କ ସାର୍ବଭୌମ ଶାସନ ଭିତରେ ଥିଲା ପ୍ରାଚୀନ କଳିଙ୍ଗ । ନନ୍ଦବଂଶ ପତନ ଓ ମୌର୍ଯ୍ୟବଂଶର ଉତ୍‌ଥାନ ବେଳେ କଳିଙ୍ଗ ହୋଇ ଯାଇଥିଲା ସ୍ୱାଧୀନ । ମଗଧ ସମ୍ରାଟ ଅଶୋକ ଖ୍ରୀ.ପୂ. ୨୬୧ରେ ପୁଣି ତାଙ୍କୁ କରିଥିଲେ ଦଖଲ । ଖ୍ରୀ.ପୂ. ପ୍ରଥମ ଶତକ ମଧ୍ୟ ଭାଗରେ କଳିଙ୍ଗର ଶକ୍ତିଶାଳୀ ଶାସକ ମହାମେଘ ସାତବାହନ ଖାରବେଳ ଆବିର୍ଭୂତ ହୋଇ ମଗଧରୁ ମଥୁରା ପର୍ଯ୍ୟନ୍ତ ଉତ୍ତରକୁ ବିଜୟ କରି କଲେ ଦଖଲ ଏବଂ ଦକ୍ଷିଣରେ ରଥିକାଶ ଓ ପଶ୍ଚିମର ଭୋଜକାଶ ପର୍ଯ୍ୟନ୍ତ ସୀମା ହେଲା ବିସ୍ତୃତ । ପୁନଶ୍ଚ ଚତୁର୍ଥ ଖ୍ରୀଷ୍ଟାବ୍ଦ ବେଳକୁ ସମୁଦ୍ରଗୁପ୍ତଙ୍କ ପରେ ରାଜା ଶକ୍ତି ବର୍ମନ୍‌ଙ୍କ ହସ୍ତକୁ ଆସିଲା କଳିଙ୍ଗ ଉତ୍ତରରେ ମହାନଦୀ ଠାରୁ ଏହାର ସୀମା ଦକ୍ଷିଣର କ୍ରିଷ୍ଣାବେଣୀ ପର୍ଯ୍ୟନ୍ତ ।

ଅଶୋକଙ୍କ କଳିଙ୍ଗ ଆକ୍ରମଣ ସମୟରେ କଳିଙ୍ଗ ଶାସନର ସ୍ଥିତିଥିଲା କ'ଣ ପ୍ରସଂଗରେ 'ହିଷ୍ଟ୍ରୀ ଅଫ୍ ଓରିଶା'ରେ ଲେଖିଛନ୍ତି ଡ. ହରିହର ପଣ୍ଡା,Right from the day of the MAHABHARATA (C-1500-1300B.C) till the sixth centuray B.C. monarchy was the prevalent form of government in Kalinga. ବାୟୁ, ମତ୍ସ୍ୟ ଏବଂ ବ୍ରହ୍ମାଣ୍ଡ ପୁରାଣ ବର୍ଣ୍ଣନା କରିଛନ୍ତି କୁରୁ, ମୈଥିଳ, ସୌରସେନ, ବ୍ରହ୍ମଦ୍ରଥ, ଇକ୍ଷ୍ୱାକୁ, ବୀତିହୋତ୍ର ପ୍ରଭୃତି ପ୍ରସିଦ୍ଧ ରାଜବଂଶମାନଙ୍କ କଳିଙ୍ଗ ଶାସନ କଥା । ଏହି ସମୟରେ ବତିଶିଟି କ୍ଷତ୍ରିୟ ବଂଶ କରିଥିଲେ ଶାସନ । ମହାଭାରତଠୁ ମଗଧ ପହାପଦ୍ମ ନନ୍ଦ ସମୟ ପର୍ଯ୍ୟନ୍ତ କଳିଙ୍ଗ ପ୍ରଶାସକଙ୍କ ଗୋଟିଏ ତାଲିକା ଉଲ୍ଲେଖ କରିଛନ୍ତି ଐତିହାସିକ ଡ. ହରିହର ପଣ୍ଡା, The next rulers of Kalinga were Nilikira, Karakandu,Kalinga I, Mahakalinga and Kalinga II, ect, From the time of Mahabharat War till the rule of Mahapadamananda in Magadha...xxx Around 350 B.C. Kalinga was annexed to Magadha empire during the period of Mahapadmananda and taking the chance of the revolt against Dhanananda by Kautilya and Chandragupta the Kalingans.

ମହାପଦ୍ମନନ୍ଦ ସମୟରେ ସମଗ୍ର ଭାରତବର୍ଷ ଥିଲା ବିଶାଳ ମଗଧସାମ୍ରାଜ୍ୟ ଅନ୍ତର୍ଭୁକ୍ତ । ଅନନ୍ତ, ମତ୍ସ୍ୟ, କୋଶଳ ଓ ମଗଧ ଚାରୋଟି ଗୁରୁତ୍ୱପୂର୍ଣ୍ଣ ଭାଗରେ ଥିଲା ବିଭକ୍ତ । ପ୍ରଭାତାଂଶୁ ମାଇତି ଦର୍ଶାଇଛନ୍ତି, ମହାପଦ୍ମନନ୍ଦଙ୍କ ସମୟ ଖ୍ରୀ.ପୂ. ୩୩୮ ଏବଂ ମତ୍ସ୍ୟ ପୁରାଣ ଅନୁଯାୟୀ ସିଏ ୨୮ ବର୍ଷ ରାଜତ୍ୱ କରିଛନ୍ତି । ତାଙ୍କ ପୁତ୍ର ଧନ ନନ୍ଦ ୧୨ ବର୍ଷ କରିଛନ୍ତି ଶାସନ ହେଲା ବିଦ୍ରୋହ, ଅର୍ଥାତ୍ ୨୯୮ ଖ୍ରୀ.ପୂ. ବେଳକୁ କଳିଙ୍ଗ ସ୍ୱାଧୀନ୍ ଦେଶ । ପୁନଶ୍ଚ



Source: Author, Digitized by PPRACHIN, SOA

୬୩୯ ଖ୍ରୀଷ୍ଟାବ୍ଦରେ ହୁଏନ୍‌ସା ଭ୍ରମଣ କରିଥିଲେ କୋଶଳ । ଏହାର ପରିସୀମା ଥିଲା ୬୦୦୦ ଲି । କୋଶଳ ବିଳାସପୁର, ମଧ୍ୟ ପ୍ରଦେଶର ରାୟପୁର ସହିତ ଓଡ଼ିଶାର ଅବିଭକ୍ତ ସୁନ୍ଦରଗଡ, ସମ୍ବଲପୁର ଓ ବଲାଙ୍ଗୀର ଜିଲ୍ଲା ମଧ୍ୟରେ ଥିଲା ଅବସ୍ଥିତ ।

୧୮୨୦ ମସିହା, ଐତିହାସିକ A. Sterling ଆବିଷ୍କାର କଲେ ଉଦୟଗିରି ଠାରେ ହାତୀଗୁମ୍ଫା ଶିଳାଲେଖ । ବ୍ରାହ୍ମୀ ଲିପି, ଭାଷା ପାଲି ଏବଂ ଏହାର କିଛି ଅଂଶ ନଷ୍ଟ ହୋଇ ଯାଇଛି । An Account of Geographical Statistical and Historical of Orissa or Cuttack ଥିଲା ବହିଟିର ଶୀର୍ଷକ । ଚେଦିବଂଶର ତୃତୀୟ ଶାସକ ଖାରବେଳ, ଯାହାଙ୍କ ସମୟର ଖ୍ରୀ.ପୂ. ୪୦ ବା ୪୧ ବର୍ଷ । ତାଙ୍କ ରାଜଧାନୀ କଳିଙ୍ଗ ନଗରୀରେ ତାଙ୍କ ରାଜ୍ୟାଭିଷେକର ତୃତୀୟବର୍ଷ ଏକ ବିଶାଳ ନୃତ୍ୟ, ଗୀତ ଓ ବାଦ୍ୟର ମହୋତ୍ସବ ହୋଇଥିଲା । ରାଣୀ ଗୁମ୍ଫାରେ ନୃତ୍ୟଗୀତ ଉତ୍ସବର ଦୃଶ୍ୟଟିଏ ମଧ୍ୟ ରହିଛି । ଶିଳାଲେଖରେ ଉଲ୍ଲେଖ ଅଛି, ତତିୟେ ପୁନାୟାସେ ଗନ୍ଧଭ ବେଦ ବୁଧୋ ଦପନାତଗତ ବାଦିତ ସନ୍ଦସନାହି ଉସ୍‌ସବ ସମାଜ କରପନାହି ଚ କିଦପୟତି ନଗରିମ୍ ।

ଉତ୍କଳ, ଦେଶଟି କେତେ ପୁରୁଣା ତାହାରି ଆକଳନରେ ଐତିହାସିକ ପ୍ରଭାତଂଶୁଙ୍କ ପ୍ରି-ହିଷ୍ଟୋରିକ୍ ସିଭିଲାଇଜେସନ୍ ପ୍ରସଂଗରେ ବ୍ୟକ୍ତ ବାକ୍ୟଟି, The relics of New Stone Age civilization are mostely found in Sind and Baluchistan and at Pikli Hal of Deccan and also in Bihara and Orissa. ନୂତନ ପ୍ରସ୍ତର ଯୁଗର ବ୍ୟବହୃତ ପ୍ରସ୍ତର ଉପକରଣ ଓ ତାହାର ଅଂଶ ଓଡ଼ିଶାରୁ ମିଳିଛି । ଗୋଟିଏ ଆଦିମ ସଭ୍ୟତା ଏଠି ଥିଲା । ପରବର୍ତ୍ତୀ ସମୟକୁ ତାହା ତାମ୍ର ଯୁଗରେ ବଦଳିଛି (୧୭୦୦-୧୬୦୦ଖ୍ରୀ.ପୂ.) । ବିବର୍ତ୍ତନ ସମୟର ଗୋଟିଏ ନିଶ୍ଚିତ ଠିକଣା, କିନ୍ତୁ ଆମ ପାଖରେ ସେହି ପରିବର୍ତ୍ତନ ଧାରାର ବସ୍ତୁବାଦୀ ବା ଐତିହାସିକ ପ୍ରମାଣ ନାହିଁ କିଛି । ମହାକାଳ ତାକୁ ହଜମ କରି ସାରିଛି ।

ଭାଗବତରେ ଉଲ୍ଲେଖ ଅଛି ରାଜା ବଳି ଓ ତାଙ୍କ ମହିଷୀ ସୁଦେଷ୍ଣା, ନିଃସନ୍ତାନ ହେତୁ ସୁଦେଷ୍ଣା ଆର୍ଯ୍ୟଋଷି ଦୀର୍ଘତମାଙ୍କ ଠାରୁ ବୀର୍ଯ୍ୟଦାନ ଗ୍ରହଣ କରି ଜାତ କଲେ ପଞ୍ଚପୁତ୍ର ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସୁମହଙ୍କୁ । ସେମାନେ ସେମାନଙ୍କ ନାମାନୁଯାୟୀ ଗଠନ କଲେ ଗୋଟିଏ ଗୋଟିଏ ରାଜ୍ୟ । ଋଗ୍‌ବେଦର ଗୋଟିଏ ସୂକ୍ତ: ସୋମାନଂ ସ୍ୱରଣଂ କୃଣୁହି ବ୍ରାହ୍ମଣ ସ୍ପତେ କକ୍ଷିବନ୍ତଂ ଯଃ ଔଶିଜଃ । (୧ମ ମଣ୍ଡଳ, ୧୮ତମ ସୂକ୍ତ ୧ମ ଋକ୍) । ଅର୍ଥାତ୍ କଳିଙ୍ଗ ରାଜମହିଷୀ ଙ୍କ ଦାସୀ ଉଶିକ ଗର୍ଭରେ ଦୀର୍ଘତମା ଋଷିଙ୍କ ଔରସରେ ଯେଉଁ କକ୍ଷୀବାନ୍ ଜନ୍ମ ଗ୍ରହଣ କରିଥିଲେ, ସେ ନୀଚ ବଂଶଜ ହେଲେ ସୁଦ୍ଧା, ଯେପରି ଦେବଗଣଙ୍କ ନିକଟରେ ପ୍ରଖ୍ୟାତ ହୋଇପାରିଥିଲେ, ହେ ବ୍ରାହ୍ମଣସ୍ପତି ଦେବ, ଏହି ପ୍ରାର୍ଥନାକାରୀଙ୍କୁ



Source: Author, Digitized by PPRACHIN, SOA

ସେହିପରି ଦେବଗଣଙ୍କ ସମୀପରେ ପ୍ରତିଷ୍ଠାନ୍ୱିତ କରନ୍ତୁ । (ଓଡ଼ିଆ ସାହିତ୍ୟର ଆଦିପର୍ବ ପୃଷ୍ଠା-୮/ ସୁରେନ୍ଦ୍ର ମହାନ୍ତି) ।

ଇତିହାସର ଜାତକ ଲଗ୍ନରୁ କଳିଙ୍ଗ ଏକ ବହୁବିଦିତ ସାଂସ୍କୃତିକ ଦେଶ । ଏଠିକାର ମୂଳ ଅଧିବାସୀଙ୍କୁ ଆର୍ଯ୍ୟମାନେ କହୁଥିଲେ ବ୍ରାତ୍ୟ । ଏମାନେ ମୂଳ ଭୂମିପୁତ୍ର । ପରବର୍ତ୍ତୀ କାଳରେ ଏମାନେ ଭୂୟାଁ ଗୋଷ୍ଠୀ ରୂପେ ପରିଚିତ । ଅନ୍ୟ ଗୋଟିଏ ଆଦିମ ଜାତି କୈବର୍ତ୍ତ୍ୟ, ଅଶୋକଙ୍କ ଜଣେ ରାଣୀ ଥିଲେ ଏହି ଜାତିର କାରୁବାକୀ । ସେହିଭଳି ଏହି ଭୂଖଣ୍ଡରେ ଥିଲେ କିଛି ସାଧବ ମଧ୍ୟ । ବଣିଜ କରିଯାଇ ଗ୍ରହଣ କରିଥିଲେ ବୁଦ୍ଧଙ୍କ ଶିଷ୍ୟତ୍ୱ ଏବଂ ବୁଦ୍ଧଙ୍କ ମହାପ୍ରୟାଣ ପରେ ତାଙ୍କ ପବିତ୍ର ଦନ୍ତ ଶଗଡ଼ରେ ଆଣି ଫେରିଥିଲେ ଏହି ଭୂମିକୁ ।

ମହାଭାରତ ସଭାପର୍ବରେ ବର୍ଣ୍ଣିତ, କଳିଙ୍ଗ ରାଜ୍ୟର ଶାସକ 'ରାଜପୁରୀ' ରାଜା ପଣ୍ଡୁଙ୍କୁ ଉପହାର ଦେଇଥିଲେ ଏକ ବୃହତ୍ ହସ୍ତୀ । ତାମିଲ 'ଉଡ୍ତୁ' ଅର୍ଥ ଚାଷ । ସେହିପରି 'ଉଡ୍' ଶବ୍‌ଦର ଅର୍ଥ ଚାଷ ସହିତ ସଂପୃକ୍ତ ଏବଂ ଉଡ୍ର କୃଷିଜୀବୀ । ଏମାନଙ୍କ ବ୍ୟବହୃତ ଭାଷା 'ଉଡ୍ର-ବିଭାଷା' । ଦୀର୍ଘତମାଙ୍କ  ତାହା ବୈଦିକ ସଂସ୍କୃତ କିମ୍ୱା  ମଧ୍ୟ ଯୁଗୀୟ ଶାସ୍ତ୍ରୀୟ ସଂସ୍କୃତ, ପାଲି ପ୍ରାକୃତ ବା ନୁହେଁ ଏମାନଙ୍କ ଅପଭ୍ରଂଶ । ଏମାନଙ୍କ ମୂଳ ଭାଷାକୁ ପରେ ଭାଷାବିଦ୍ ବ୍ୟାଖ୍ୟା କରି କହୁଛନ୍ତି ଶୌରସେନୀ ଓ ମାଗଧୀ ପ୍ରାକୃତ । ଶୌରସେନୀ ଓ ମାଗଧୀ ପ୍ରାକୃତ ଜନ୍ମ ପୂର୍ବରୁ କଳିଙ୍ଗ ଅଧିବାସୀ କଥା କହି ଆସିଛି ! ସେହି ଭାଷାଟି କ'ଣ ?

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତକ ଗୋଟିଏ ଶକ୍ତ ଧାର୍ମିକ ଆନ୍ଦୋଳନର ଘଟିଛି ସୂତ୍ରପାତ । ଗୋଟିଏ ପଟେ ବୈଦିକ ଧର୍ମ, ବ୍ରାହ୍ମଣଙ୍କ ନିଜ ସ୍ୱାର୍ଥ ପାଇଁ ସୁହାଇଲା ଭଳି ମନ୍ତ୍ର ମାନଙ୍କ ଅର୍ଥ ଓ ବ୍ରାହ୍ମଣ ଧର୍ମର ପ୍ରାଧାନ୍ୟ ସାମାଜିକ ଓ ଆର୍ଥିକ ଦିଗରୁ ସାଧାରଣ ଜନତାଙ୍କ କରେ ଶ୍ୱାସରୁଦ୍ଧ । ମଣିଷକୁ ଆଶ୍ୱସ୍ତ କରିବାକୁ ରାଜପୁତ୍ର ଗୌତମ ବୁଦ୍ଧ ପ୍ରଚାର ଓ ପ୍ରସାର କଲେ ବୌଦ୍ଧ ଧର୍ମ । ତାଙ୍କ ଭାଷା ସଂସ୍କୃତ ନ ହୋଇ ହୁଏ ସଂସ୍କୃତଠୁ ଇତର ସାଧାରଣ ଜନତାଙ୍କ କଥିତ ଓ ବୋଧ୍ୟ ଭାଷା ପାଲି । ଅଶୋକଙ୍କ ଶିଳାଲେଖର ଭାଷା ପାଲି ।

୫୪୦ ଖ୍ରୀ.ପୂ. ବୈଶାଳୀର କୁଣ୍ଡଗ୍ରାମ ଠାରେ ଅନ୍ୟଜଣେ ସାଂସ୍କୃତିକ ଓ ଧାର୍ମିକ ନାୟକ କରିଥିଲେ ଜନ୍ମ, ବାପା ସିଦ୍ଧାର୍ଥ, ମା' ତ୍ରିଶୀଳା ଏବଂ ତାଙ୍କ ନାମ ବର୍ଦ୍ଧମାନ । ଜ୍ଞାନ ପ୍ରାପ୍ତି ପରେ ତାଙ୍କୁ କୁହାଗଲା ମହାବୀର, ଚବିଶତମ ତୀର୍ଥଙ୍କର । ତାଙ୍କ ପ୍ରଚାରିତ ଧର୍ମର ନାମ ଜୈନ ଧର୍ମ । ଚତୁର୍ଥ ଶତକ ଖ୍ରୀ.ପୂ.ରୁ ପଞ୍ଚମ ଶତାବ୍ଦୀ ଖ୍ରୀଷ୍ଟାବ୍ଦ ମଧ୍ୟରେ ବହୁ ପ୍ରସାରିତ ବୌଦ୍ଧ ଧର୍ମର ସ୍ରୋତ କ୍ଷୀଣ ହୋଇ ଆସିଲା ବେଳେ ଜୈନଧର୍ମର ପ୍ରବାହ ଥିଲା



Source: Author, Digitized by PPRACHIN, SOA

ଅବ୍ୟାହତ । ରାଜପୁତନା, କୋଠିଆବାଡ଼ ତଥା ଗୁଜୁରାଟ ଜୈନଧର୍ମର ହୃଦୟଭୂମି । ପୂର୍ବରେ ଓଡ଼ିଶାରୁ ଆରମ୍ଭ କରି ପଶ୍ଚିମ ଗୁଜୁରାଟ ପର୍ଯ୍ୟନ୍ତ ଶ୍ୱେତାମ୍ବରଙ୍କ ରହିଥିଲା ଆଧିପତ୍ୟ ।

ହିନ୍ଦୁଧର୍ମର ମହାନଦୀରୁ ବାହାରିଥିବା ଦୁଇଟି ପ୍ରକାଣ୍ଡ ଶାଖାନଦୀ ବୌଦ୍ଧଧର୍ମ ଏବଂ ଜୈନଧର୍ମ । ମୂଳ ହିନ୍ଦୁଧର୍ମରେ ଭକ୍ତିଯୁଗର ଘଟେ ସୂତ୍ରପାତ । ଭାଗବତର ବୈଷ୍ଣବ ବାଦ, ବିଷ୍ଣୁ ଆରାଧନା, ବୈଦିକ ରୁଦ୍ରଙ୍କ ଠାରୁ ଉତ୍ପନ୍ନ ଶୈବବାଦ ଗୋଟିଏ ନୂତନ ସଂସ୍କୃତିର କରେ ଭିତ୍ତି ସ୍ଥାପନ । ସେହି ନୂତନ ସଂସ୍କୃତିର ବାହକ ଶୁଦ୍ଧ ସଂସ୍କୃତ । ପରେ ହୋଇଛି ପାଲି ଓ ପ୍ରାକୃତ ଆଶ୍ରିତ । ଶୈବଧର୍ମ ଭାରତରେ ବୈଦିକ କାଳ ପୂର୍ବରୁ ବିଦ୍ୟମାନ । 'ଶ୍ୱେତାଶ୍ୱେତ'ରେ ତାହାଙ୍କୁ କୁହାଯାଇଛି ମହାଦେବ । ଖ୍ରୀଷ୍ଟପୂର୍ବରୁ ତାହାଙ୍କ ପ୍ରଚାର ନଥିଲା । ଲାକୁଲିନ ନାମକ ବ୍ୟକ୍ତି ତ୍ରୟୋଦଶ ଶତାବ୍ଦୀ ବେଳକୁ ତାହାଙ୍କୁ ପାଶୁପତ ବା ମହେଶ୍ୱର ଭାବେ କଲେ ପ୍ରଚାର । ତାହାଙ୍କ ପଥ ପାଞ୍ଚଟି, ତାହା ହେଲା, କାର୍ଯ୍ୟ, କରଣ, ଯୋଗ, ବିଧି ଓ ଦୁଃଖାନ୍ତ । ସମୟ କ୍ରମେ ସାଧକମାନେ ଚାରି ଭାଗରେ ବିଭକ୍ତ ହୋଇ ସାଧନାକୁ କରିଛନ୍ତି ଚାରିପ୍ରକାର, ଯଥା ପଶୁପାତ, ଶୈବ, କାପାଳିକ ଓ କାଳମୁଖ । ପ୍ରକାଶ ଥାଉକି ସାହିତ୍ୟରେ ଏହାର ପ୍ରଭାବ ପ୍ରଚଣ୍ଡ । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତକରେ ମହର୍ଷି ପତଂଜଳି ଥିଲେ ଶୈବ । ତାଙ୍କ ରଚିତ 'ବିଜ୍ଞାନ ଭୈରବ' ଗ୍ରନ୍ଥ, ମହାଭାରତ ଓ ରାମାୟଣରେ ମଧ୍ୟ ବର୍ଣ୍ଣିତ ଶିବ ମହତ୍ତ୍ୱ । ପରବର୍ତ୍ତୀ କାଳରେ ମହାକବି କାଳିଦାସ ଥିଲେ ଶୈବ । ଓଡ଼ିଆରେ 'ରୁଦ୍ରସୁଧାନିଧି' ଏହି ପ୍ରଭାବକୁ କରିଛି ଗର୍ଭସ୍ଥ । ଶୈବ ସଂସ୍କୃତିର ବାହକ ଜଟିଳ ସଂସ୍କୃତ । ପରେ ଆଞ୍ଚଳିକ ଭାଷାରେ ଆମ ଭାଷାର 'କଳସାଚଉତିଶା' ଓ 'ସୋମନାଥ ବ୍ରତ କଥା' ପରି ଅନେକ ସାରସ୍ୱତ କୃତିତ୍ୱ ହୋଇଛି ପ୍ରକାଶିତ ।

-ଦୁଇ-

୧ - ଶାବର୍ଯ୍ୟାମେବୌଢ୍ରୀ ଯୋଗତ୍ ତଦ୍‌ଦେଶ୍ୟ ସୌରସେନ୍ୟାଦେଃ, ଅର୍ଥାତ୍ ଓଡ୍ର ଦେଶର ଦେଶଜ ଶବ୍ଦ ଏବଂ ସୌରସେନୀ ଆଦିର ଶବ୍ଦ ଶାବରୀରେ ମିଶାଇଲେ ଆମ୍ଭେ ଔଡ୍ରୀ ଉପଭାଷା ପାଇବା ।

୨ - ପ୍ରାୟ ସପ୍ତମ ଶତାବ୍ଦୀଠାରୁ ୯ମ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାରେ ଯେଉଁ ଆର୍ଯ୍ୟଭାଷା କଥିତ ହେଉଥିଲା ତାହାକୁ ସାଧାରଣତଃ ମାଗଧୀ ଅପଭ୍ରଂଶ ବୋଲାଯାଇ ପାରେ । ଏଥିରେ ସୌରସେନୀ ଅପଭ୍ରଂଶ ପଡ଼ିଥାଇ ପାରେ । (ଦୁଇଟି 'ପାରେ' ପ୍ରୟୋଗରୁ ଜଣାଯାଏ କେତେ ଅନିଶ୍ଚିତ !)

୩- ଅବିଦ୍ୟା-କରିକୁ ଦମ ଅକିଳେଶ (୯ ଚର୍ଯ୍ୟା) ଅବିଦ୍ୟା ରୂପକ ହସ୍ତୀକୁ ଅକ୍ଳେଶରେ ଦମନ କର), କାମରୁ ଜାଅ (୨ୟ ଚର୍ଯ୍ୟା) (କାମରୁ ଯାଅ( ହରିଣୀର ନିଳଅ



Source: Author, Digitized by PPRACHIN, SOA

(୬ଷ୍ଠ ଚର୍ଯ୍ୟା) (ହରିଣୀର ନିଳୟ) ପ୍ରଭୃତିରେ ବିଶିଷ୍ଟ ଓଡ଼ିଆ ବିଭକ୍ତି ପ୍ରତ୍ୟୟ ବ୍ୟବହୃତ ହୋଇଅଛି ଏବଂ ପରବର୍ତ୍ତୀ ଭାଷାତାତ୍ତ୍ୱିକ, ଦାର୍ଶନିକ ଓ କିମ୍ବଦନ୍ତୀ ମୂଳକ ବହୁ ସାମ୍ୟ ବା ମେଳ ରହିଅଛି । ××× ମୋଟାମୋଟି ଭାବରେ ଏହାର ଭାଷାକୁ ପ୍ରାଚ୍ୟ ଅପଭ୍ରଂଶ ବା ମାଗଧୀ ଅପଭ୍ରଂଶ କହିବା ସମୀଚୀନ । (ସାହିତ୍ୟ ସମୀକ୍ଷଣ, ଉପୋଦ୍‌ଘାତ / ଡ. କୁଂଜ ବିହାରୀ ତ୍ରିପାଠୀ, ଆଲୋକ ସାହିତ୍ୟ ପ୍ରତିଷ୍ଠାନ, କଟକ, ୧୯୬୩) ।

୪- ସ୍ୱସ୍ତି ସମରମୁଖାନେକରି ପୁରଦର୍ପପ୍‌ମର୍ଦ୍ଦନ ଭୁଜବଳ ପରାକ୍ରମ ଗଙ୍ଗାନ୍ୱୟାବଲମ୍ବନସ୍ତମ୍ଭ ଶ୍ରୀମଦ୍ ଅନନ୍ତ ବ(ର୍)ମ ଦେବ ବିଜୟ ରାଜ୍ୟ ସମ୍ବତ୍ସର ୧୫ ତୁଳାମାସ ଶୁକ୍ଳପକ୍ଷ ଦିନ ପଞ୍ଚମି ସଣିବାରଇଂ ୟୁରୁଜ ମେଲାଣ ଦୟ (।) କରିଲା ପଙ୍ଗ (।) ସ୍ଥିତି ।

୧୦୫୧ ଖ୍ରୀ.ଅରେ ଖୋଦିତ ବୋଲି ଏଥିରେ ଲିଖିତ ଚିକାକୋଲ ତାଲୁକ ଅନ୍ତର୍ଗତ ଉରଜାଂ ଗ୍ରାମରୁ ମିଳିଥିବା ଚୋଡ଼ଗଙ୍ଗ ଦେବଙ୍କ ପିତାମହଙ୍କ ସର୍ବ ପ୍ରାଚୀନ ଓଡ଼ିଆ ଶିଳାଲେଖ । "Evolution of Oriya Language and Script", (Utkal University, 1962) ରେ ବର୍ଣ୍ଣିତ । ଶିଳାଲେଖଟି ମାନ୍ଦ୍ରାଜ ମିୟୁଜିୟମରେ ସଂରକ୍ଷିତ ।

ଡ଼. କୁଞ୍ଜବିହାରୀ ତ୍ରିପାଠୀ ତାଙ୍କ ସଂଦର୍ଭରେ ଲେଖିଛନ୍ତି, ଏହି ଲେଖାଟିର ଉପୋଦ୍‌ଘାତ ତତ୍‌ସମ ଶବ୍ଦବହୁଳ ହେଲେ ହେଁ ଓ ଏଥିରେ ସଂସ୍କୃତ ଓ ପ୍ରାକୃତ ଭାଷାର ପ୍ରଭାବ ପଡ଼ି ଥିଲେ ହେଁ ଏହା ଯେ ଓଡ଼ିଆ ଭାଷାରେ ଲିଖିତ ତାହା ଏହାର ପଠିତାଂଶରୁ ସ୍ପଷ୍ଟ ହେଉଅଛି (ସାହିତ୍ୟ ସମୀକ୍ଷଣ, ଉପୋଦ୍‌ଘାତ) ।

୫- ଓଡ଼ିଶା ହିଷ୍ଟ୍ରିକାଲ୍ ରିସର୍ଚ୍ଚ ଜର୍ଣ୍ଣାଲ୍ ଭାଗ -୨, ସଂଖ୍ୟା-୨ (ଜୁଲାଇ ୧୯୫୩ ମସିହା) ପୃଷ୍ଠା ୨୧-୨୨, ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ସୋରସ୍ଥ ଗଣ୍ଡିବେଡ଼ ଗ୍ରାମରୁ ପ୍ରାପ୍ତ ଗୋଟିଏ ଧ୍ୟାନୀ ପ୍ରସ୍ତର ମୂର୍ତ୍ତି ତଳେ ୧୦ମ-୧୧ଶ ଶତାବ୍ଦୀରେ ଖୋଦିତ: ଦେବ କହୀ ଭଗତି କରୁଣ / ଅଛନ୍ତୀ ଭୋ କୁମାର ସେଣ, ଡକ୍ଟର ସତ୍ୟ ନାରାୟଣ ରାଜଗୁରୁଙ୍କ ଦ୍ୱାରା ସଂଗୃହୀତ ଓ ପଠିତ ।

ଉଦ୍ଧୃତିଗୁଡ଼ିକରୁ ଓଡ଼ିଆ ସାହିତ୍ୟିକ ଭାଷାର ଗୋଟିଏ ବିମ୍ବ ଆମ ସାମ୍ନାରେ ହୁଏ ପ୍ରତିବିମ୍ବିତ । ଡକ୍ଟର ସୁନୀତି କୁମାର ଚାଟାର୍ଜୀଙ୍କ Origin and Development of Bengali Language (ପୃଷ୍ଠା ୧୦୫)କୁ ସାମ୍ନାରେ ରଖି ସୁରେନ୍ଦ୍ର ମହାନ୍ତି ଲେଖିଛନ୍ତି, ଓଡ଼ିଶାର ଐତିହାସିକ ନାମ 'ଉକ୍ରଳ' । ଏକ ଦ୍ରାବିଡ଼ ଶବ୍ଦ ଓ ଏହାର ଅର୍ଥ କୃଷିଜୀବୀ ଗୃହସ୍ଥ ।



Source: Author, Digitized by PPRACHIN, SOA

ସେହିପରି ତାମିଲ ଭାଷାରେ କଳିଙ୍ଗମ୍‌ର ଅର୍ଥ ଲୁଗା । ବୌଦ୍ଧ ଗ୍ରନ୍ଥ ଅଙ୍ଗୁତ୍ତର ନିକାୟା ଓ ଦୀର୍ଘନିକାୟାରେ ରହିଛି କଳିଙ୍ଗ ଅଧିବାସୀ କଳିଙ୍ଗ ଜାତି ମଣିଷଙ୍କ ଉଲ୍ଲେଖ । 'ପୁଣି ମହାଭାରତ ଦ୍ରୋଣପର୍ବ ଯେଉଁ ଉତ୍କଳ ଜାତିର ଉଲ୍ଲେଖ ଅଛି, ସେମାନେ ଅମାର୍ଜିତ ଓ ଅସଂସ୍କୃତ ରୂପେ ବର୍ଣ୍ଣିତ । ବୌଦ୍ଧଗ୍ରନ୍ଥ ମାନଙ୍କରେ ଯେଉଁ ଉତ୍କଳ ଜାତିର ଉଲ୍ଲେଖ ଅଛି, ତାହାର ବର୍ଣ୍ଣନାରୁ ସେ ଜାତି ଅମାର୍ଜିତ ଓ ଅସଂସ୍କୃତ ବୋଲି ପ୍ରତୀୟମାନ ହୁଏ ।" (ପୃଷ୍ଠା ୨୦, ଓଡ଼ିଆ ସାହିତ୍ୟର ଆଦିପର୍ବ / ସୁରେନ୍ଦ୍ର ମହାନ୍ତି) । ଏହା ପୂର୍ବରୁ ଦୁଇଟି ଉଦ୍ଧୃତି ଜନ୍ ବୀମ୍ସଙ୍କ 'କଂପାରେଟିଭ୍ ଗ୍ରାମାର୍ ଅଫ୍ ଇଣ୍ଡୋ-ଅରୀଆନ୍ ଲାଙ୍ଗୁଏଜେସ୍'ରୁ ଶ୍ରୀଯୁକ୍ତ ମହାନ୍ତି ଗ୍ରହଣ କିରଛନ୍ତି । ଗୋଟିଏ ନିରୋଳା ଭାଷାତତ୍ତ୍ୱ ଦୃଷ୍ଟିରୁ ପରୀକ୍ଷା କଲେ, ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟର ବହୁ ପ୍ରମାଣ ମିଳିବ । ××× ପ୍ରାଚୀନତମ ବଂଗଳା ବା ହିନ୍ଦୀର ଭାଷା ରୂପ ଠାରୁ ଆହୁରି ପ୍ରାଚୀନତର କେତେକ ଭାଷା ରୂପ, ଓଡ଼ିଆ ଭାଷାରେ ତଥାପି ପ୍ରଚଳିତ ରହିଛି । ବଂଗଳା ପ୍ରାୟ ତିନି ଶତାବ୍ଦୀ ପୂର୍ବେ ଯେଉଁ ଭାଷା ରୂପେ ପ୍ରବର୍ତ୍ତିତ ଥିଲା ଓ ଯାହା ଏବେ ସେହି ଭାଷାରୁ ନିଶ୍ଚିହ୍ନ ହୋଇଅଛି, ତାହା ମଧ୍ୟ ପ୍ରଚଳିତ ଓଡ଼ିଆ ସାହିତ୍ୟରେ ଲକ୍ଷ୍ୟ କରାଯାଇପାରେ । । (ଓଡ଼ିଆ ସାହିତ୍ୟର ଆଦିପର୍ବ, ପୃଷ୍ଠା ୧୫) ।

ଅନ୍ୟଟି ଓଡ଼ିଆ ଭାଷାଭାଷୀ ଭୂମିର ପରିସୀମା ପ୍ରସଂଗରେ କଂପାରେଟିଭ୍ ଗ୍ରାମର୍ ପ୍ରଥମ ଭାଗର ୧୦୫ ପୃଷ୍ଠାରେ ଉଲ୍ଲେଖିତ: କିନ୍ତୁ ଓଡ଼ିଆ ଭାଷାର ପ୍ରଶ୍ନ ଆଲୋଚନା କଲାବେଳେ ଏହା ସ୍ମରଣ ରଖିବା ଉଚିତ ଯେ, ଏହା ସମୁଦ୍ରୋପକୂଳବର୍ତ୍ତୀ ପାଞ୍ଚଗୋଟି ଜିଲ୍ଲାରେ କେବଳ କଥିତ ହୁଏ ନାହିଁ । ଏକ ଦିଗରେ ନାଗପୁର ଓ ଅନ୍ୟଦିଗରେ ତେଲିଙ୍ଗାନା ପର୍ଯ୍ୟନ୍ତ, ଶତଶତ ମାଇଲ ବ୍ୟାପି ସୁବିସ୍ତୃତ ଅରଣ୍ୟ ଓ ପାର୍ବତ୍ୟ ଅଞ୍ଚଳରେ ଅସଂଖ୍ୟ ଲୋକେ ଓଡ଼ିଆ ଭାଷା ବ୍ୟବହାର କରିଥାନ୍ତି । ଏହି ଅଞ୍ଚଳମାନଙ୍କରେ ଓଡ଼ିଆ ଭାଷା ଆର୍ଯ୍ୟେତର ଉପଭାଷାମାନଙ୍କରୁ ବହୁ ଶବ୍ଦ ଓ ପ୍ରୟୋଗ ଆହରଣ କରି କ୍ରମଶଃ ସେହି ଉପଭାଷା ଗୁଡ଼ିକର ସ୍ଥାନ ପୂରଣ କରି ଆସୁଅଛି । ତେଣୁ ଶିକ୍ଷା ଓ ସଭ୍ୟତା ବିସ୍ତାରର ମାଧ୍ୟମ ରୂପେ ଓଡ଼ିଆ ଭାଷା ବଂଗଳା ଭାଷା ଅପେକ୍ଷା ଅଧିକ ଉପଯୋଗୀ ବିବେଚିତ ହେଉଅଛି (ଓଡ଼ିଆ ସାହିତ୍ୟର ଆଦିପର୍ବ, ପୃଷ୍ଠା ୧୨) ।

ଯେଉଁ ଜାତିର ଭାଷା ଉପଭାଷାମାନଙ୍କଠାରୁ ପ୍ରୟୋଗ ଆହରଣ ସମର୍ଥ ଓ ବହୁଲୋକଙ୍କ ଦ୍ୱାରା କଥିତ ଏବଂ ବଂଗଳାଠୁ ଶିକ୍ଷା ଓ ସଭ୍ୟତା ବିସ୍ତାର ପାଇଁ ଅଧିକ ଉପଯୋଗୀ, ସେହି ଜାତି ଅମାର୍ଜିତ ଓ ଅସଂସ୍କୃତ ହେଲା କେମିତି ? ସୁରେନ୍ଦ୍ର ମହାନ୍ତି ଡକ୍ଟର ଚାଟାର୍ଜୀଙ୍କ ବେଙ୍ଗଲୀ ଲାଙ୍ଗୁଏଜ୍ ଡେଭଲପମେଣ୍ଟ ଓ ଓରିଜିନ୍ ଚଷମାଟିକୁ ବୋଧେ ପିନ୍ଧି ନାହାନ୍ତି । କେବଳ ତାଙ୍କ ପରିତ୍ୟକ୍ତ କଲମ ଓ କାଠ ଟେବୁଲଟିକୁ ଖାଲି ବ୍ୟବହାର



Source: Author, Digitized by PPRACHIN, SOA

କରିଛନ୍ତି । ଯେଉଁ ଦ୍ରାବିଡ଼ ଭାଷାରେ ସୁରେନ୍ଦ୍ର ମହାନ୍ତି ମୁଖର, ତାହା ଉଡ୍ର ଭାଷାପରି ଗୋଟିଏ ବିଭାଷା ମାତ୍ର ଏବଂ ତାହା ଆର୍ଯ୍ୟଙ୍କ ଠାରୁ ନିଚ୍ଚଜାତି ଚରିତ୍ରଙ୍କ ଦ୍ୱାରା ନାଟକରେ ହୁଏ ବ୍ୟବହୃତ: 'ଶବରା, ଭୀର ଚଣ୍ଡାଳ ସଚର ଦ୍ରାବିଡ଼ୋଡ୍ରଜାଃ, ହୀନା ବନେଚରାଂ ବିଭାଷା ନାଟକେ ସ୍ମୃତା ।'

ଅଗ୍ନିଙ୍କ ନେତୃତ୍ୱରେ ଆର୍ଯ୍ୟ ଆଗମନ କରିଥିଲେ ଏହି ଦେଶକୁ । କିନ୍ତୁ ଉଡ୍ର ଏହି ଦେଶର ଗୋଟିଏ ଭୂଭାଗର ମୂଳ ଭୂମିପୁତ୍ର । ସେମାନେ ଦ୍ରାବିଡ଼ ପରିବାର ଅନ୍ତର୍ଗତ ନୁହନ୍ତି କିମ୍ବା ଦ୍ରାବିଡ଼ଙ୍କ ପୂର୍ବରୁ ଏହି ଦେଶରେ ବସବାସ କରୁଥିବା ପ୍ରୋଟୋଅଷ୍ଟ୍ରୋଲୟେଡ ବା ନେଗ୍ରୀଟୋ ନୁହନ୍ତି । ଯେଉଁମାନଙ୍କ ସତ୍ତା ନିଶ୍ଚିହ୍ନ । ଭରତ ଜଣେ ଆର୍ଯ୍ୟ ନାଟ୍ୟତତ୍ତ୍ୱବିଦ୍ । ଉଡ୍ର ଭାଷାର ପ୍ରଭାବ ଓ ସାମର୍ଥ୍ୟ ପ୍ରଚଣ୍ଡ ଭାବେ ଉପଲବ୍ଧି ନ କରି, ନାଟ୍ୟ ସଂସ୍କୃତିର ଭୂମିରେ ତାହାର ପ୍ରାଧାନ୍ୟ ନ ଦେଖି ନିଜ ଗ୍ରନ୍ଥରେଏତେ ସହଜରେ ଲେଖିଦେଲେ ନାଟକରେ ଏହାର ବ୍ୟବହାର ସ୍ୱୀକୃତି ? ଓଡ଼ିଶାର ଦାସକାଠିଆ, ଦୁଆରୀନାଚ, ବା ଦଣ୍ଡନାଚର ବୟସ କେତେ ? ବରଂ ଅର୍ବାଚୀନ ଓଡ଼ିଶାର ପାଲା ସଂସ୍କୃତି, ଭରତଙ୍କ ପୂର୍ବରୁ ନାଟକ ଅନେକ ଲେଖାଯାଇଛି ଏବଂ ଅଭିନୟ ମଧ୍ୟ ଘଟିଛି । ତହିଁରେ ପାତ୍ର ପାତ୍ରୀ ଉଡ୍ର-ବିଭାଷାରେ କଥୋପକଥନ ହୋଇଛନ୍ତି । ହୁଏତ ତାହା ଅସଂଖ୍ୟ ଥର ଦେଖିବା ପରେ ଭରତ ହାତ କାଟି ଲେଖିଛନ୍ତି । ମହାକଳାର ଆଁ' ଭିତରେ ସେହି ନାଟକମାନ ହଜମ ହୋଇ ଯାଇଛି ଯେଉଁଠୁ ଉଡ୍ର ବିଭାଷାର ବ୍ୟବହାର ଆମେ ସଂଗ୍ରହ କରି ପାରନ୍ତୁ ।

ଓଡ଼ିଶା ଆଦ୍ୟ ଲିପି ବ୍ରାହ୍ମୀଲିପି । ଖ୍ରୀଷ୍ଟପୂର୍ବ ତୃତୀୟ ଶତକରେ ଧଉଳି ଗିରି ଓ ଗଞ୍ଜାମର ଜଉଗଡ଼ ଠାରେ ଲିଖିତ ଅଶୋକଙ୍କ ଅନୁଶାସନ ଏବଂ ଖ୍ରୀଷ୍ଟପୂର୍ବ ପ୍ରଥମ ଶତକରେ ଖାରବେଳଙ୍କ ଉଦୟଗିରି ଶିଳାଲେଖର ଲିପି ବାହ୍ମୀ । ବାଲେଶ୍ୱର ସୋରରୁ ପ୍ରାପ୍ତ ଶମ୍ଭୁ ଯଶଙ୍କ ତାମ୍ରପତ୍ର ଖ୍ରୀଷ୍ଟୀୟ ଦ୍ୱିତୀୟ, କଳାହାଣ୍ଡିରୁ ପ୍ରାପ୍ତ ତୁଷ୍ଟିକରଙ୍କ ତାମ୍ରପତ୍ର, ଚତୁର୍ଥ ଶତକ, ଗଞ୍ଜାମ ଜଉଗଡ଼ ସୁମଙ୍ଗଳ ଗ୍ରାମରୁ ପ୍ରାପ୍ତ ଧର୍ମରାଜଙ୍କ ତାମ୍ରପତ୍ର ଷଷ୍ଠ ଶତକ, ଏବଂ ପୁରୀ ଜିଲ୍ଲାରୁ ପ୍ରାପ୍ତ 'କଣାସ ତାମ୍ରପତ୍ର' ଲିପି ଗୁପ୍ତଲିପି । ଷଷ୍ଠ ଶତକ ପରଠାରୁ ଓଡ଼ିଶାରେ ବ୍ୟବହୃତ ଲିପି ଦ୍ରାବିଡ଼ୀୟ ଦକ୍ଷିଣୀ ବର୍ଣ୍ଣମାଳା ଦ୍ୱାରା ଦ୍ୱାଦଶ ଶତକ ପର୍ଯ୍ୟନ୍ତ ପ୍ରଭାବିତ ହୋଇ ରହିଛି । ଏହି ଲିପିକୁ କହନ୍ତି କଳିଙ୍ଗ ଲିପି ।

ଦ୍ୱାଦଶ ଶତକ ଭାରତୀୟ ସାହିତ୍ୟ କ୍ଷେତ୍ରରେ ଏକ ନବ-ମୁକ୍ତ ଯୁଗ । ଗୁଜୁରାଟୀ, ପଂଜାବୀ, ମରାଠୀ ପ୍ରଭୃତି ଭାଷା ଏହି ଶତକରେ ପ୍ରାକୃତରୁ ମୁକ୍ତ ହୋଇ ସ୍ୱତନ୍ତ୍ର ଓ ଆଧୁନିକ ରୂପଧାରଣ କରିଛନ୍ତି । ଆର୍ଯ୍ୟଭାଷାମାନଙ୍କ ଘଟିଛି ବିବର୍ତ୍ତନ । ଓଡ଼ିଆ ଭାଷା ମଧ୍ୟ ଏହି



Source: Author, Digitized by PPRACHIN, SOA

ଦ୍ୱାଦଶ ଶତାବ୍ଦୀଠାରୁ ପରିବର୍ତ୍ତନର ପୋଷାକ ପରିଧାନ କରିବା ଆରମ୍ଭ କରିଛି । ବୀମ୍ସ ତାଙ୍କ ତୁଳନାତ୍ମକ ବ୍ୟାକରଣରେ ଲେଖିଛନ୍ତି ଚତୁର୍ଦ୍ଦଶ ଶତକବେଳକୁ ପରିବର୍ତ୍ତିତ ହୋଇ ବିବର୍ତ୍ତନ କ୍ରମରେ ଓଡ଼ିଆ ଭାଷା ହୋଇଛି ଆଧୁନିକ ଏବଂ ପ୍ରାପ୍ତ ହୋଇଛି ସ୍ୱାତନ୍ତ୍ର୍ୟ (ପ୍ରଥମ ଭାଗ, ପୃଷ୍ଠା ୧୨୦) ।

ଓଡ଼ିଆ ଇଶାଣରେ ସାଇତା ପିତୃ ପୁରୁଷପରି ଓଡ଼ିଆ ଭାଷା ଲକ୍ଷ୍ମୀ ତାହାର କୌଳିକ ଏବଂ ଓଡ଼ିଆ ଜିହ୍ୱା, କଣ୍ଠ ଓ ତାଳୁର ସମୁଦ୍ରରୁ ସିଏ ବାହାରିଛନ୍ତି । ମୂଳ ଓଡ଼ିଆ ଭାଷା ପ୍ରକୃତିରୁ ପ୍ରାପ୍ତ ପ୍ରାକୃତ ବା ତା'ର ଅପଭ୍ରଂଶ ନୁହେଁ, ପ୍ରାକୃତ ଜନ୍ମ ପୂର୍ବରୁ ଏହି ଆଦିମ ଜାତି ଦ୍ୱାରା ଆବିଷ୍କୃତ ଏବଂ ବ୍ୟବହୃତ । ଆର୍ଯ୍ୟ (ଋଷି ଦୀର୍ଘତମା) ଆସିବା ପୂର୍ବରୁ ଏହି ଭୂମିରେ ଜଣେ ରାଜାଥିଲେ ବଳି । ରାଜ୍ୟ ଥିଲା ଏବଂ ପ୍ରଜାଙ୍କ କଥିତ ଦେଶୀ ଭାଷାଟିଏ ମଧ୍ୟ ଥିଲା ।

-ତିନି-

ପ୍ରକୃତି ଠାରୁ ଜାତ ହୋଇଥିବା ପ୍ରାକୃତିକ ଭାଷା ପ୍ରାକୃତ । ପ୍ରାକୃତ ଅର୍ଥ 'ପ୍ରାକ୍ କୃତ' ଯାହା ଶୀଘ୍ର-ଶୀଘ୍ର ହୋଇଥାଏ ଉଚ୍ଚାରିତ । ସକଳ ଭାଷା ନିବନ୍ଧନଭୂତଂ ବଚନ ମୁଚ୍ୟତେ ମେଘର୍ନିମୁକ୍ତ ଜଳମିବୈକରୂପମ୍ । ଅଶିକ୍ଷିତା ନାରୀ ଓ ଶିଶୁ ମଧ୍ୟ କହିପାରି ଥାଏ । ଆଦୌ ନଥାଏ ଭାଷାଗତ ବନ୍ଧନ । ମେଘର ବର୍ଷାଧାର ପରି ମୁଖରୁ ଆସିଥାଏ ବାହାରି । ଏକାଦଶ ଶତକର ନମିସାଧୁ ପ୍ରାକୃତର ସଂଜ୍ଞାରେ ଏହା କରିଛନ୍ତି ଉଲ୍ଲେଖ (ଦେଶୀନାମମାଳା, ପୃଷ୍ଠା XIV, ଏମ୍.ବାନାର୍ଜୀ, ୟୁନିଭର୍ସିଟୀ ଅଫ୍ କାଲକାଟା, ୧୯୩୧) ।

ସେହି 'ଦେଶୀନାମମାଳା' ଗ୍ରନ୍ଥରେ ପ୍ରାକୃତ ପଣ୍ଡିତ ହେମଚନ୍ଦ୍ର ସୂରୀଙ୍କ 'ଦେଶୀ' ଶବ୍‌ଦର ବ୍ୟାଖ୍ୟା

ଜେ ଲକ୍‌ଖଣେ ଣ ସିଦ୍ଧା ଣ ପସିଦ୍ଧା ସପକ୍‌କୟହିହାଣେସୁ ।
ଣ ଜେ ଗଉଣଲକ୍‌ଖଣାସତ୍ତିସଂଭାବ ତେ ଇହ ଣିବଦ୍ଧା ।
ଦେସବିସେସପସାଦୀଇ ଉନ୍ନମାଣା ଅର୍ଣତୟା ହୁଂତି ।
ତହ୍ମା ଅଣାଇପାଇୟପୟଟ୍‌ଟ ଭାସାବିସେସଓ ଦେସୀ ॥

ଏହାର ଅର୍ଥ କୁହାଯାଇଛି, Those words which are not derived by grammatical rules nor current in the Sanskrit dictionaries and which also are not derived by metaphorical use of words are discussed here. If they are enumerated according to the usages prevalent in different countries there will be no end to then. Therefore, Desi is that which denotas Prakrta words current through ages without beginning. ( ପ୍ରାକୃତ ସର୍ବସ୍ୱ, Introduction Page 42/ Dr. K.C. Acharya, Prakrit Text Society, Ahmedabad, 1968) ।



Source: Author, Digitized by PPRACHIN, SOA

ହେମଚନ୍ଦ୍ର ପ୍ରାକୃତ ଶବ୍‌ଦକୁ କରିଛନ୍ତି ତିନିଭାଗ । ସେଗୁଡ଼ିକ, ୧-ତତ୍‌ଭବ, ୨-ତତ୍‌ସମ ଏବଂ ୩-ଦେଶୀୟ । 'ଦେଶୀୟ'ର ବ୍ୟାଖ୍ୟାରେ ଲେଖିଛନ୍ତି ଭୋଜଦେବ:

ଦେଶେଦେଶେ ନରେନ୍ଦ୍ରାଣାଂ ଜନାନାଂ ଚ ସ୍ୱକେ ସ୍ୱକେ ।
ଭଙ୍ଗ୍ୟା ପ୍ରବର୍ତ୍ତତେ ଯସ୍ମାତ୍ତସ୍ମାଦ୍ଦେଶ୍ୟଂ ନିଗଦ୍ୟତେ ।

ଏହାର ଅର୍ଥ କୁହାଯାଇଛି, Desya is so called because of being used with peculiar difference of the meaning form locality to locality of kings as well as of the common mass.

ମାର୍କେଣ୍ଡେୟ କବୀନ୍ଦ୍ରଙ୍କ ଅନୁଯାୟୀ ସମସ୍ତ ପ୍ରକାର ପ୍ରାକୃତ ତତ୍‌ଭଦ ଓ ତତ୍‌ସମ ଆଦି ଶବ୍ଦ ସଂସ୍କୃତରୁ ବ୍ୟୁତ୍ପତ୍ତିତ (derived) । କିନ୍ତୁ ଦେଶୀୟ ଏକ ତୃତୀୟ ପ୍ରକାର, natural use of speech, ଲୋକଙ୍କ ଦ୍ୱାରା ଉକ୍ତ ଦେଶରେ କଥିତ ହୋଇ ଆସିଛି । ଏହା ସଂସ୍କୃତ କିମ୍ୱା ପ୍ରାକୃତ କାହା ବ୍ୟାକରଣର ବନ୍ଧ ବା ଶାସନକୁ ମାନି ନାହିଁ । ଏହି ଭାଷା କହୁଥିଲେ ରାଜା ବଳି ଓ ରାଣୀ ସୁଦେଷ୍ଣା ଏବଂ ତାହାଙ୍କ ପ୍ରଜା । ପାଣିନି ଲେଖିଛନ୍ତି ଗୋଟିଏ ପଦ 'ଶିଷ୍ଟ ଭାଷା' ଏହାର ଅର୍ଥ 'Language of the Learned' କିନ୍ତୁ ଦେଶୀୟ ବା ଦେଶୀଭାଷା ଗୋଟିଏ ସ୍ଥାନୀୟ ଭାଷା ବା ଉପଭାଷା । ଏହା ଏକ ନିମ୍ନ ପ୍ରାଧାନ୍ୟ ପ୍ରାପ୍ତ ଭାଷା । ରୁଦ୍ରଟ (୯୦୦ ଖ୍ରୀଅ) ଲେଖିଛନ୍ତି, ପ୍ରକୃତି ପ୍ରତ୍ୟୟ ମୂଳା ବ୍ୟୁତ୍ପତ୍ତିନାସ୍ତି ଯସ୍ୟ ଦେଶ୍ୟସ୍ୟ । (କାବ୍ୟାଳଙ୍କାର VI.27) । ଦେଶୀଭାଷା ଭରତଙ୍କ ଅନୁସାରେ (ନାଟ୍ୟଶାସ୍ତ୍ର, XVII.46 ) ସମସ୍ତ ପ୍ରକାର ପ୍ରାକୃତ ଅପଭ୍ରଂଶ ('ବିଭ୍ରଷ୍ଟ') । ଗୋଟିଏ ନିମ୍ନମାନର ବ୍ୟବହୃତ ସ୍ଥାନୀୟ ଭାଷା ସାହିତ୍ୟର ଭାଷାଠାରୁ ପୃଥକ୍ ଏହାର ରୂପ । Grierson ଲେଖିଛନ୍ତି, Another class of words is also to be mentioned, the so-called "Desya" or local words of the Indian Grammarians. କିଛି ବ୍ୟାକରଣବିଦ୍ ତତ୍‌ଭଦ ଶବ୍ଦର ଉତ୍ସ ବୋଲି ଏହାକୁ ଗ୍ରହଣ କରନ୍ତି । କେତେକ ଏହାକୁ ମୁଣ୍ଡା ଦ୍ରାବିଡ଼ ପ୍ରଭୃତି ଭାଷାର ଋଣ ବୋଲି ଗ୍ରହଣ କରିନ୍ତି । କିନ୍ତୁ ଏହା ପ୍ରାଥମିକ ପ୍ରାକୃତର ଉତ୍ସବୋଲି ଗ୍ରୀୟରସନ ଗ୍ରହଣ କରିଛନ୍ତି (Linguistc Survey of India, Vol.I, Page-127-128) ।

ଭୁବନେଶ୍ୱର ସହର ଉତ୍ତରକୁ ପଟିଆ ମୌଜା ଅନ୍ତର୍ଗତ ଗୋଟିଏ ହାମଲେଟ ବା ପଡ଼ାଗ୍ରାମ ପଦ୍ମକେଶରପୁର (କେଳାସାହି), ସମସ୍ତ ବାସିନ୍ଦା ସର୍ପ ଓ ମୂଷା ଧରନ୍ତି, ପାଳନ୍ତି ଏବଂ ସେମାନଙ୍କୁ ପେଡ଼ିରେ ନେଇ ଖେଳ ଦେଖାଇ ଗୁଜୁରାଣ ମେଣ୍ଟାନ୍ତି । ମହିଳାମାନେ ତାଳପତ୍ରରେ ଝୁମୁକା ପ୍ରଭୃତି ଖେଳନା ତିଆରି କରି ବିକନ୍ତି । ସେମାନେ ଗୋଟିଏ ଭାଷା ବ୍ୟବହାର କରନ୍ତି ଯାହା ବଂଗଳା ପରି ଶୁଣାଗଲେ ମଧ୍ୟ ବଙ୍ଗଳା ନୁହେଁ କି ଓଡ଼ିଆ ନୁହେଁ,



Source: Author, Digitized by PPRACHIN, SOA

ଗୋଟିଏ ଦେଶୀ ଭାଷା । ଠିକ୍ ସେହିପରି ଭୁବନେଶ୍ୱର ପଶ୍ଚିମକୁ ଚନ୍ଦକା । ଭୁବନେଶ୍ୱର ବନମଣ୍ଡଳ ଅର୍ନ୍ତଗତ ଚନ୍ଦକା ଜଂଗଲ ଭିତରେ ଗୋଡ଼ିବାରି, ବେଣ୍ଟୁଆ ଓ ଭାଲୁଙ୍କା ପ୍ରଭୃତି ଗ୍ରାମମାନ ରହିଛି । ପୋଡୁଚାଷ, ଚାଷ ଓ ଖଣି ଖାଦାନରେ ମୂଲ ମଜୁରୀ ସେମାନଙ୍କର ବୃତ୍ତି । ସେମାନେ ଗୋଟିଏ ଭାଷା କହନ୍ତି, ସେ ଭାଷାର କୌଣସି ସଂପର୍କ ଓଡ଼ିଆଭାଷା, ସହିତ ନାହିଁ । କେଉଁ ଭାଷାରେ କଥା ହେଉଚ, ପଚାରିଲେ କହନ୍ତି, 'ଆମ ଦେଶଭାଷା' 'ଆମ ମୁଣ୍ଡାଭାଷା' ଅନ୍ୟ ଏକ ଦେଶୀଭାଷାର ଉଦାହରଣ, ଖଣ୍ଡିଗିରି ତଳେ ଭରତପୁର ଅଞ୍ଚଳରେ, ସାଲିଆସାହି ପ୍ରଭୃତିରେ କେତେକ କନ୍ଧ, ଗଣ୍ଡ ଓ ଗଣ୍ଡାପ୍ରଭୃତି ଜାତିର ଲୋକ ବାସ କରୁଛନ୍ତି । ସେମାନେ ଗୋଟିଏ ଭାଷାର କଥାବାର୍ତ୍ତା ହୁଅନ୍ତି, ତାହାକୁ ସେମାନେ 'କନ୍ଧଭାଷା', କେହି କେହି 'କୁଇ' ବୋଲି କହନ୍ତି । ଓଡ଼ିଶାର ରାଜଧାନୀରେ ଏକବିଂଶ ଶତକରେ ଏଇଭଳି ଦେଶୀ ବା ଦେଶୀୟ ଭାଷା ଜୀବିତ ରହିଛି । ଉତ୍କଳୀୟ ଆଦିମ ଦେଶୀ ଭାଷାର ବୟସ କେତେ ଆଜି କହି ହେବକି ? ତା'ର ମୂଳ ସ୍ୱରୂପ ଆବିଷ୍କାର କରିବାକୁ ଆମେ ପାଖରେ ତଥ୍ୟ ଅଛି, କିନ୍ତୁ ଗବେଷକ କାହାନ୍ତି ?

❑❑❑



Source: Author, Digitized by PPRACHIN, SOA

# ଭାଷା ନଟୀର ଭୃଣ ମୁଦ୍ରା

ପୃଥିବୀର ଭାଷା ସମୂହକୁ ମୋଟ ଚାରୋଟି ଭାଗରେ କରାଯାଇଛି ବିଭକ୍ତ ।

୧- ଆଫ୍ରିକା ଖଣ୍ଡ, ୨-ୟୁରେସିଆ ଖଣ୍ଡ, ୩- ପ୍ରଶାନ୍ତ ମହାସାଗରୀୟ ଖଣ୍ଡ ଏବଂ ୪- ଆମେରିକୀୟ ଖଣ୍ଡ । ୟୁରେସିଆ ଖଣ୍ଡରେ ସେମେଟିକ୍, କାକେଶସ, ୟୁରାଲ-ଅଲଟାଇକ୍, ଏକାକ୍ଷର, ଦ୍ରାବିଡ୍, ଆଗ୍ନେୟ, ଅନିଶ୍ଚିତ ଓ ଭାରୋପୀୟ (ଭାରତ-ୟୁରୋପୀୟ) ନାମକ ଶାଖା ଅନ୍ତର୍ଗତ । ଭାରୋପୀୟ କୁଳର ଭାଷା ଉତ୍ତର ଭାରତ, ଆଫଗାନିସ୍ଥାନ, ଇରାନ ଓ ସମଗ୍ର ୟୁରୋପରେ କୁହାଯାଉଥିବା ଭାଷା । କେଣ୍ଟୁମ୍ (ଲାଟିନ୍ ଭାଷାରେ ଏକଶତ ପାଇଁ ବ୍ୟବହୃତ ଶବ୍ଦ) ଓ ଶତମ୍ (ସଂସ୍କୃତରେ ଏକଶତ ସଂଖ୍ୟା ପାଇଁ ହେଉଥିବା ପ୍ରୟୋଗ ଶବ୍ଦ) ନାମକ ଦୁଇ ସମୂହରେ ବିଭକ୍ତ । ଶତମ୍ ବର୍ଗରେ ଇଲୀରିୟନ, ବାଲ୍‌ଟିକ୍, ସ୍ଲୋବୋନିକ୍, ଆର୍ମେନିୟନ ଓ ଆର୍ଯ୍ୟ ଭାଷାମାନଙ୍କ ସମାବେଶ । ଆର୍ଯ୍ୟ ବା ଭାରତ-ଇରାନୀ ଉପକୁଳର ମୁଖ୍ୟ ଭାଷା ତିନୋଟି । ଇରାନୀ, ଦରଦ ଓ ଭାରତୀୟ ଆର୍ଯ୍ୟଭାଷା । ପାରସ୍ୟୀୟଙ୍କ ଧର୍ମଗ୍ରନ୍ଥ 'ଆବେସ୍ତା'ରେ ପ୍ରାଚୀନ ଇରାନୀ ଭାଷାର ନମୂନା, ଯାହା ଋଗ୍‌ବେଦର ଭାଷା ସହିତ କିୟଦଂଶ ଖାଏ ମେଳ । ଦରଦ୍ ପାମୀର ଓ ପଶ୍ଚିମୋତ୍ତର ପଂଜାବ ଏବଂ କାଶ୍ମୀର ପାର୍ଶ୍ୱ ପ୍ରଦେଶ ଭାଷା ପାଇଁ ଦରଦର ହୋଇଛି ପ୍ରୟୋଗ । ଖ୍ରୀ.ପୂ.୧୫୦୦ରୁ ଖ୍ରୀ.ପୂ. ୫୦୦ ପ୍ରାଚୀନ ଆର୍ଯ୍ୟଭାଷା ପ୍ରଚ଼ଳନର ସମୟ । ଖ୍ରୀ.ପୂ. ୫୦୦ରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଭାରତୀୟ ଭାଷାର ମଧ୍ୟକାଳ ଏବଂ ଦ୍ୱାଦଶ ଶତାବ୍ଦୀ ଠାରୁ ସମସ୍ତ ଭାଷାର ଧ୍ୱନିତତ୍ତ୍ୱର ପରିବର୍ତ୍ତନ, ବ୍ୟାକରଣଗତ ଭିନ୍ନତା ଓ ରୂପଗତ ସ୍ୱାଧୀନତା ଭାଷାକୁ ପ୍ରଦାନ କରିଛି ନବଜନ୍ମ । ଦ୍ୱାଦଶ ଶତାବ୍ଦୀ ହେମଚନ୍ଦ୍ରଙ୍କ ପ୍ରାକୃତ ବ୍ୟାକରଣ ହିଁ ସମସ୍ତ ଭାଷାକୁ ଉତ୍କର୍ଷରେ ପହଂଚାଇ ଦେବାରେ ନେଇଛି ଏକ ବଡ଼ ଭୂମିକା ।

ହେମଚନ୍ଦ୍ର ଲେଖିଛନ୍ତି ସଂସ୍କୃତରୁ ପ୍ରାକୃତର ଉତ୍ପତ୍ତି, ପ୍ରକୃତିଃ ସଂସ୍କୃତମ୍ । ତତ୍ର ଭବଂ ତତ ଆଗତଂ ବା ପ୍ରାକୃତମ୍ । ମାତ୍ର ଏହା ଅସତ୍ୟ । ପିଶଲ୍ 'ପ୍ରାକୃତ ଭାଷାର-ବ୍ୟାକରଣ'ରେ ଦର୍ଶାଇଛନ୍ତି ବୈଦ୍ଦିକଭାଷା ସହିତ ଏହାର ସମାନତା, ଯଥା- 'ତଣ' ବୈଦିକ 'ତ୍ୱନ', 'ବିଭ' ବୈଦିକ 'ବିଂଦୁ', 'ଘିଂସୁ' ବୈଦିକ 'ଘ୍ରଂସ' ଏବଂ 'ରୁକ୍‌ଖ'



Source: Author, Digitized by PPRACHIN, SOA

ବୈଦିକ 'ରୁକ୍ଷ' ପ୍ରଭୃତି (ଅନୁବାଦ ଡ. ହେମଚନ୍ଦ୍ର ଜୋଶୀ ବିହାର ରାଷ୍ଟ୍ରଭାଷା ପରିଷଦ, ପାଟନା, ୧୯୫୮, ପୃଷ୍ଠା ୮-୯)।

ବୈଦିକ ଭାଷା ବିଭିନ୍ନ ପରିସ୍ଥିତି ଦେଇ ଧୀରେ ଧୀରେ ବଦଳିଛି । ବୈଦିକ ସଂହିତାର ଶବ୍ଦମାନଙ୍କୁ ସନ୍ଧିପ୍ରକରଣ ଓ ସମାସ ବାଟ ଦେଇ ଦିନକୁ ଦିନ ସରଳ କରାଯାଇଛି । ଖ୍ରୀଷ୍ଟପୂର୍ବ ଅଷ୍ଟମ ଶତକ ବେଳ ଜଣେ ପଣ୍ଡିତ ଯାସ୍କ ବୈଦିକ ଶବ୍ଦ ସଂଗ୍ରହ କରି ତାହାର ବ୍ୟୁତ୍ପତ୍ତି ଓ ଅର୍ଥବିଚାର କରି ନିରୁକ୍ତ ରଚନା କରିଛନ୍ତି । ତାଙ୍କ ପଛକୁ ଆସିଛନ୍ତି ପାଣିନି (ଖ୍ରୀ.ପୂ ୫୦୦) ବୈଦିକ କାଳୀନ ଭାଷାକୁ ବ୍ୟାକରଣ ନିୟମରେ ବାନ୍ଧି କରିଛନ୍ତି ସୁସଂସ୍କୃତ । ପତଂଜଳି (ଖ୍ରୀ.ପୂ. ୧୫୦) ପ୍ରବତାଇ ଥିଲେ ବେଦ ଅଧ୍ୟୟନ ଓ ସୁରକ୍ଷା ପାଇଁ ବ୍ୟାକରଣ ପଠନ ଅନିବାର୍ଯ୍ୟ । ଫଳତଃ ବ୍ୟାକରଣର ପ୍ରାଧାନ୍ୟ ବଢ଼ିବା ସହିତ ବୈଦିକ ଭାଷାଠୁ ବ୍ୟାକରଣବଦ୍ଧ ଗୋଟିଏ ନୂତନ ଭାଷା ହେଲା ବିକଶିତ, ତାକୁ କୁହାଗଲା ସଂସ୍କୃତ । ଶିକ୍ଷିତ ଓ ପଣ୍ଡିତଙ୍କ ଏହି ଭାଷାଠାରୁ ସାଧାରଣ ଲୋକଙ୍କ ଗୋଟିଏ ପ୍ରଚଳିତ ଭାଷା ପ୍ରାକୃତ । ବ୍ୟାକରଣ ଦ୍ୱାରା ସଂସ୍କାର ରହିତ, ସହଜୋ ବଚନବ୍ୟାପାରଃ ପ୍ରକୃତିଃ ତତ୍ର ଭବଂ ସୈବ ବା ପ୍ରାକୃତମ୍, କଥାବାର୍ତ୍ତା ହେବା ସହଜ ଯେଉଁ ଭାଷାର ପ୍ରକୃତି ତାହା ପ୍ରାକୃତ । ବାଳୁତ ଓ ମହିଳାଆଦି ...ସମସ୍ତଙ୍କ ସୁବୋଧ୍ୟ, ମେଘରୁ ବର୍ଷା ଝରିଲାପରି ଏହାକୁ କହିହେବ । ପାଣିନି ବାଙ୍ମୟର ଭାଷାକୁ ନାମିତ କଲେ 'ଛଂଦସ୍' ଏବଂ ସର୍ବସାଧାରଣଙ୍କ ଏହି ଭାଷାକୁ କହିଲେ 'ଭାଷା' । ପାଣିନି ଓ ପତଂଜଳିଙ୍କ ସମୟ ଠାରୁ ଗୋଟିଏ ଲେଖାପଢ଼ି ଲୋକଙ୍କ ଭାଷା 'ସଂସ୍କୃତ' ଏବଂ ଅନ୍ୟଟି ଜନସାଧାରଣଙ୍କ କଥିତ 'ଭାଷା' ପ୍ରାକୃତ, ଦୁଇଟି ସ୍ରୋତ ହୋଇଛି ପ୍ରବାହିତ । ସଂସ୍କୃତ ଭାଷାକୁ ଅନୁକରଣ କରି କେତେକ କଥିତ 'ଭାଷା'କୁ ବ୍ୟାକରଣ ରଚନା କରି କଲେ ପରିଶୁଦ୍ଧ ଏବଂ ସେହି ପରିଶୁଦ୍ଧ 'ଭାଷା'ଟି ତ ପ୍ରାକୃତ, ତାହା ଠାରୁ ଅପରିଶୁଦ୍ଧ ଯେଉଁ ଭାଷାଟି ଥିଲା ପ୍ରଚଳିତ ତାହାକୁ କୁହାଗଲା 'ଅପଭ୍ରଂଶ' ।

ଭରତ ନାଟ୍ୟଶାସ୍ତ୍ରରେ ସର୍ବପ୍ରଥମ ପ୍ରାକୃତକୁ ପ୍ରଦାନ କଲେ ସାରସ୍ୱତ ମାନ୍ୟତା । ସିଏ ମାଗଧୀ, ଅବନ୍ତିଜା, ପ୍ରାଚ୍ୟା, ଶୌରସେନୀ, ଅର୍ଦ୍ଧମାଗଧୀ, ବାହ୍ଲୀକା ଓ ଦାକ୍ଷିଣାତ୍ୟା ନାମରେ ସପ୍ତଭାଗରେ କଲେ ବିଭକ୍ତ । ମାଗଧୀ ମଗଧ ଜନପଦ (ବିହାର)ର ଭାଷା ନାଟ୍ୟଶାସ୍ତ୍ର ଅନୁସାରେ, ଅନ୍ତଃପୁରବାସୀ ଓ ଅଶ୍ୱରକ୍ଷକ ଆଦି ତଥା ଆପତ୍ତିଗ୍ରସ୍ତ ନାୟକ ମଧ୍ୟ ମାଗଧୀ ଭାଷାରେ କଥା କହିଥାନ୍ତି । ଶୂଦ୍ରକଙ୍କ 'ମୃଚ୍ଛକଟିକ'ରେ ସମ୍ବାହକ, ଶକାରର ଦାସ ସ୍ଥାବରକ, ବସନ୍ତସେନାର ଚାକର କୁଂଭିଲକ, ଚାରୁଦତ୍ତଙ୍କ ଚାକର ବର୍ଦ୍ଧମାନକ, ଭିକ୍ଷୁ ଓ ଚାରୁଦତ୍ତଙ୍କ ପୁତ୍ର ରୋହସେନ କହିଛନ୍ତି ମାଗଧୀ । ଶକୁନ୍ତଳମ୍‌ରେ ଦୁଇ ପ୍ରହରୀ, ଧୀବର ଓ ଶକୁନ୍ତଳାର କନିଷ୍ଠ ପୁତ୍ର ସର୍ବଦମନ ମାଗଧୀରେ କଥାବାର୍ତ୍ତା କରିଅଛି । ପୁନଶ୍ଚ



Source: Author, Digitized by PPRACHIN, SOA

ମଗଧର ଅନ୍ୟ ଗୋଟିଏ ଭାଷା ଯେଉଁଥିରେ ବୌଦ୍ଧ ତ୍ରିପିଟକର ସଂଗ୍ରହ କରାଯାଇଛି, ତାହାକୁ ବୁଦ୍ଧଘୋଷ (ପାଲି=ପରିଯାୟ=ମୂଳପାଠ=ବୁଦ୍ଧବଚନ) ଶବ୍ଦର ପ୍ରୟୋଗ କରିଛନ୍ତି । ମାଗଧୀ ବା ମଗଧ ଭାଷା ଏଥିରେ କୁହାଯାଇଛି । (ପାଲି ସାହିତ୍ୟିକା ଇତିହାସ / ଭାରତ ସିଂହ ଉପାଧ୍ୟାୟ) ।

ତ୍ରିପିଟକର ଭାଷାକୁ ଯେପରି ନାମ ଦିଆଯାଇଛି ପାଲି, ଜୈନଙ୍କ ଅଗମ ମାନଙ୍କ ଭାଷାକୁ ସେହିପରି କୁହାଯାଇଛି ଅର୍ଦ୍ଧମାଗଧୀ । ହେମଚନ୍ଦ୍ର (ପ୍ରାକୃତବ୍ୟାକରଣ ୧/୩) ଲେଖିଛନ୍ତି ଅର୍ଦ୍ଧ-ମାଗଧୀ ଋଷିମାନଙ୍କ ଭାଷା ଏବଂ ନମିସାଧୁ ମଧ୍ୟ କହିଛନ୍ତି ଏହା ଦେବଭାଷା । (ଆରିସବୟଣେ ସିଦ୍ଧଂ ଦେବାଣଂ ଅଦ୍ଧମାଗହା ବାଣୀ), ସ୍ୱତନ୍ତ୍ରତ୍ୱାଚ୍ଚ ଭୂୟସା । ଏହାର ନିୟମ ସ୍ୱତନ୍ତ୍ର । ବ୍ୟାକରଣର ସମସ୍ତ ନିୟମ ଲାଗୁ ହେବ ନାହିଁ ଏଥିରେ, ଆର୍ଷେ ହି ସର୍ବେ ବିଧୟୋ ବିକଳ୍ପନ୍ତେ (ପ୍ରାକୃତ ସାହିତ୍ୟକା ଇତିହାସ, ପୃଷ୍ଠା ୧୬-୧୭, / ଡ଼, ଜଗଦୀଶ ଚନ୍ଦ୍ରଜୈନ, ଚୌଖମ୍ଭା, ୧୯୬୧) ।

ଶୌରସେନୀ ଶୂରସେନ (ବଜ୍ରମଣ୍ଡଳ, ମଥୁରା ଓ ଏହା ଆଖପାଖ)ର ଭାଷା । ଏହାର ପ୍ରଚାର ମଧ୍ୟଦେଶ (ଗଙ୍ଗା-ଯମୁନା ଉପତ୍ୟକା)ରୁ ଆରମ୍ଭ । ଧ୍ୱନିତତ୍ତ୍ୱ ଦୃଷ୍ଟିରୁ ଶୌରସେନୀ ମଧ୍ୟ ଭାରତୀୟ ଆର୍ଯ୍ୟଭାଷାର ବିକାଶରେ ସଂକ୍ରମଣ କାଳର ଅବସ୍ଥା ଏବଂ ଶୌରସେନୀରୁ ପ୍ରାଚ୍ୟାର ଉଦ୍ଭବ, ପ୍ରାଚ୍ୟାସିଦ୍ଧିଃ ଶୌରସେନ୍ୟା, ଲେଖିଛନ୍ତି ମାର୍କେଣ୍ଡେୟ । ମହାରାଷ୍ଟ୍ରୀ ପ୍ରାକୃତ ଶୌରସେନୀର ପରବର୍ତ୍ତୀ ରୂପ । ପିଶଲ୍ ଲେଖିଛନ୍ତି କଥିତ ଭାଷା ମଧ୍ୟରେ ଶୌରସେନୀ ସର୍ବ ପ୍ରଥମ (ପ୍ରାକୃତ ଭାଷାଓଁ କା ବ୍ୟାକରଣ, ପୃଷ୍ଠା ୩୯) । ହର୍ମନ ଜୈକୋବୀ ଏହାକୁ କହିଛତି, 'ପ୍ରିନ୍ସିପିକାଲ୍' । ଅଶ୍ୱଘୋଷ (ପ୍ରଥମ ଖ୍ରୀଷ୍ଟାବ୍ଦ), ଭାସ (ତୃତୀୟଶତାବ୍ଦୀ) ଙ୍କ ନାଟକରେ ରଚିତ ପଦ୍ୟଭାଗ, ମୃଚ୍ଛକଟିକ, ମୁଦ୍ରାରାକ୍ଷସ ଓ କର୍ପୂର ମଂଜରୀ ପ୍ରଭୃତିର ପଦ୍ୟଭାଗ ପ୍ରାକୃତ ଶୌରସେନୀ ଅନ୍ତର୍ଗତ ।

ବରରୁଚି 'ପ୍ରାକୃତ ପ୍ରକାଶ'ରେ ଶୌରସେନୀ ଲକ୍ଷଣ ବ୍ୟକ୍ତ ପଶ୍ଚାତ୍ 'ଶେଷଂ ମହାରାଷ୍ଟ୍ରୀବତ୍' ଲେଖି ମହାରାଷ୍ଟ୍ରୀ ପ୍ରାକୃତର ସୂଚିତ କରିଛନ୍ତି ମହତ୍ୱ । ମହାରାଷ୍ଟ୍ରର କଥିତ ଏହି ଭାଷାକୁ ଦଣ୍ଡୀ କହନ୍ତି 'ଉତ୍ତମ ପ୍ରାକୃତ' ଏଥିରେ ସୂକ୍ତିରୂପୀ ରତ୍ନର ସମୁଦ୍ର ଓ 'ସେତୁବନ୍ଧ' ରଚିତ । କାଳିଦାସ ସର୍ବ ପ୍ରଥମେ ଅଭିଜ୍ଞାନ ଶାକୁନ୍ତଳମ୍‌ରେ ମହାରାଷ୍ଟ୍ରୀ ପ୍ରାକୃତର କରିଛନ୍ତି ବ୍ୟବହାର । ଡ.ମନମୋହନ ଘୋଷ କହନ୍ତି ମଧ୍ୟ ଭାରତୀୟ ଆର୍ଯ୍ୟ ଭାଷାରେ ମହାରାଷ୍ଟ୍ରୀ ଯଥେଷ୍ଟ ସମୟ ପରେ (ଖ୍ରୀ.ଅ.୬୦୦) ସ୍ୱୀକୃତ ହୋଇଛି (କର୍ପୂର ମଂଜରୀ, ଭୂମିକା ପୃଷ୍ଠା ୭୬) । ଡ. ଏ.ଏନ୍. ଉପାଧ୍ୟାୟଙ୍କ ମତ ଶୌରସେନୀ ପରେ ମହାରାଷ୍ଟ୍ରୀର ଜନ୍ମ । 'ସେତୁବନ୍ଧ' ଓ 'ଗଉଡ଼ବହ' ଭଳି ମହାକାବ୍ୟ, ହାଳଙ୍କ 'ସତ୍ତସଇ' ଏବଂ ଜୟବଲ୍ଲଭଙ୍କ ଶ୍ରେଷ୍ଠ ମୁକ୍ତକ କାବ୍ୟ 'ବଜ୍ଜାଲଗ୍‌ଗଂ' ମହାରାଷ୍ଟ୍ରୀ ପ୍ରାକୃତର ପ୍ରସିଦ୍ଧ ଐଶ୍ୱର୍ଯ୍ୟ ।



Source: Author, Digitized by PPRACHIN, SOA

'ବୃହତ କଳ୍ପଭାଷ୍ୟ'ରେ ନିଶୀଥ ଚୂର୍ଣ୍ଣୀକାର ଦର୍ଶାଇଛନ୍ତି ମଗଧର ଅର୍ଦ୍ଧଭାଗର ଲୋକେ କହୁଥିଲେ ଯେଉଁ ଅର୍ଦ୍ଧମାଗଧୀ ତାହା ମଗଧ, ମାଳବ, ମହାରାଷ୍ଟ୍ର, ଲାଟ, କର୍ଣ୍ଣାଟକ, ଦ୍ରାବିଡ଼, ଗୌଡ଼ ଓ ବିଦର୍ଭ ପ୍ରଭୃତି ଅଠର ଦେଶର ଥିଲା ଭାଷା, ମଗହଦ୍ଧବିସୟଭାସାନିବଦ୍ଧଂ ଅଦ୍ଧମାଗହଂ, ଅହବା ଅଟ୍‌ଠାଇସଦେସୀଭାସାଣିଯତଂ ଅଦ୍ଧମାଗହଂ (୨ୟ ଭାଗ, ପୃଷ୍ଠା ୩୮୨)।

ଲୋକ ସାହିତ୍ୟ ଓ ଲୋକଭାଷାର ପ୍ରସାର ସଂସ୍କୃତ ଭାଷାଠୁ ଥିଲା ଅଧିକ । ଅଶୋକଙ୍କ ଶିଳାଲେଖ ଏବଂ ତାଙ୍କ ପଛକୁ ଖାରବେଳଙ୍କ ଲିଖିତ ଅନୁଶାସନ ପ୍ରାକୃତ ଭାଷାକୁ ଲୋକପ୍ରିୟ କରାଇବାରେ ପ୍ରଚାର ଓ ପ୍ରସାର ଦ୍ୱାରା ଗ୍ରହଣ କରିଥିଲା ଗୋଟିଏ ମୁଖ୍ୟ ଭୂମିକା ଏବଂ ଥିଲା ଗୋଟିଏ ବଡ଼ ପଦକ୍ଷେପ । ବୌଦ୍ଧଧର୍ମ ପ୍ରଚାର ବୁଦ୍ଧଘୋଷ ଅନେକ ସ୍ଥାନରେ କରିଛନ୍ତି ପ୍ରସାରିତ ସଂପୂର୍ଣ୍ଣ ପ୍ରାଣୀଙ୍କ ମୂଳ ଭାଷା ମାଗଧୀ ପ୍ରାକୃତ । ବୌଦ୍ଧଧର୍ମର ମହାସ୍ରୋତ ଭାଷା ନୌକାଟିକୁ ଅନୁକୂଳ ପ୍ରଭାବରେ ସିଂହଳ, ବର୍ମା, ନେପାଳଠୁ ଆରମ୍ଭ କରି ଠେଲି ନେଇଥିଲା ସମଗ୍ର ମହାଦେଶ । ଡ.ହରମନ୍ ଓଲ୍‌ଡନ୍‌ବର୍ଗ କହନ୍ତି, ପାଲି କଳିଙ୍ଗ ଦେଶର ଥିଲା ଭାଷା (ବିନୟ-ପିଟକ, ଭୂମିକା ପୃଷ୍ଠା ) । ଖାରବେଳଙ୍କ ଖଣ୍ଡଗିରି ଅଭିଲେଖ ସହିତ ପାଲିର ସାମ୍ୟ ଅଧିକ । ଦ୍ୱିତୀୟ କଥାଟି ହେଲା ଲଙ୍କା କଳିଙ୍ଗର ପଡ଼ୋଶୀ ହେତୁ ଗୋଟିଏ ଶତକ ମଧ୍ୟରେ କଳିଙ୍ଗ ଅଧିବାସୀ ଲଙ୍କାରେ ପାଲିଭାଷା ମାଧ୍ୟମରେ ବୌଦ୍ଧଧର୍ମ ପ୍ରସାର କରିଦେଇଥିଲେ ।

ଗବେଷକ ଏଡ଼ୱାର୍ଡ ମୁଲର ତାଙ୍କ ରଚିତ ସିଂପ୍‌ଲୀଫାଇଡ୍ ଗ୍ରାମାର ଅଫ୍ ଦି ପାଲି ଲାଙ୍ଗୁଏଜ୍, (ଭୂମିକା, ପୃଷ୍ଠା ୩) ରେ ଉଲ୍ଲେଖ କରିଛନ୍ତି, କଳିଙ୍ଗ ହିଁ ପାଲିର ଉଦ୍‌ଗମ ସ୍ଥାନ । କାରଣ ଏହିଠାରୁ ଲୋକେ ସର୍ବ ପ୍ରଥମ ଲଙ୍କା ଯାଇ ବାସ କରିବା ଓ ଧର୍ମ ପ୍ରଚାର କରିବା ଅଧିକ ସଂଗତ । ଆମେ ଜାଣିଛୁ ଅଶୋକ ମହେନ୍ଦ୍ରଙ୍କୁ ପ୍ରେରିତ କରିଥିଲେ ସିଂହଳ ।

ପ୍ରଫେସର୍ ରାୟସ୍ ଡ଼ାଭିଡ଼ସ୍ ଲେଖିଛନ୍ତି, ଅଶୋକ କାଳୀନ ମଗଧ ସାମ୍ରାଜ୍ୟ ଚରମ ଉନ୍ନତି ସ୍ତରରେ ପହଞ୍ଚିଥିଲା । ତେଣୁ ମଗଧର ରାଷ୍ଟ୍ରଭାଷା ମାଗଧୀ ହୋଇଥିବ ନିଶ୍ଚୟ । ପୁନଶ୍ଚ ଆର୍.ସି. ଚାଇଲ୍‌ଡର୍ସ ଏବଂ ଜେମ୍ସ ଏଲ୍ୟୁସ୍‌ଙ୍କ ସ୍ୱୀକୃତି ଯେ ମାଗଧୀ ହିଁ ପାଲିଭାଷାର ମୌଳିକ ଓ ସବୁଠାରୁ ଅଧିକ ଉପଯୁକ୍ତ ନାମ । ଜେମ୍ସ ଏଲ୍ୟୁସ୍ ଲେଖିଛନ୍ତି, ଭାରତରେ ଷୋହଳଟି ପ୍ରାଦେଶିକ ବୋଲି, କଥିତ ଭାଷା ଥିଲା ପ୍ରଚଳିତ । ସେମାନଙ୍କ ମଧ୍ୟରେ ମାଗଧୀ ବୋଲିରେ ଭଗବାନ ବୁଦ୍ଧ ଦାନ କରିଥିଲେ ଉପଦେଶ । ଉଇଂଟରନିତ୍‌ଜ ଲେଖିଛନ୍ତି, ପାଲି ଏକ ସାହିତ୍ୟିକ ଭାଷା, ଏଥିରେ ବହୁ ପ୍ରାଦେଶିକ ଭାଷା ବିକାଶ ଲାଭକରି



Source: Author, Digitized by PPRACHIN, SOA

ସମିଶ୍ରିତ ହୋଇଅଛି, ଯହିଁରେ ପ୍ରାଚୀନ ମାଗଧୀ ଥିଲା ମୁଖ୍ୟ (ହିଷ୍ଟ୍ରୀ ଅଫ୍ ଇଣ୍ଡିଆନ୍ ଲିଟରେଚର ପୃଷ୍ଠା ୧୩) ।

ଜର୍ମାନ୍ ଗବେଷକ ଉଇଲହେଲ୍‌ମ୍ ଗାୟଗର ତାଙ୍କ ରଚିତ ପାଲି ଲିଟିରେଚର ଏଣ୍ଡ ଲାଙ୍ଗୁଏଜ୍ (ପୃଷ୍ଠା ୪-୫, ଭୂମିକା) ଗ୍ରହଣ କରିଛନ୍ତି, ପାଲି ମାଗଧୀ ଭାଷାର ଏକ ରୂପ । ଏହି ଭାଷା କୌଣସି ଜନପଦର ଭାଷା ନଥିଲା, ବରଂ ସଭ୍ୟ ସମାଜରେ ବ୍ୟବହୃତ ଥିଲା, ଗୋଟିଏ ସାମାନ୍ୟ ଭାଷା । ପାଲି ବିଶୁଦ୍ଧ ମାଗଧୀ ତ ନୁହେଁ, କିନ୍ତୁ ତାହା ଉପରେ ଆଶ୍ରିତ ଏକ ଲୋକଭାଷା, ଯେଉଁଥିରେ ଭଗବାନ ବୁଦ୍ଧଦେବ ପ୍ରଦାନ କରିଥିଲେ ଉପଦେଶ । ହିଷ୍ଟ୍ରୀ ଅଫ୍ ପାଲି ଲିଟିରେଚର୍ (ଭୂମିକା ପୃଷ୍ଠା ୧୨), ଗାୟଗର ସିଦ୍ଧି କରିଛନ୍ତି ପାଲି ମୂଳାଧାର ମାଗଧୀ ଏବଂ ପାଲି-ତ୍ରିପିଟକ ହିଁ ମୂଳ ବୁଦ୍ଧବଚନ ।

ପାଲି ବୁଦ୍ଧବଚନର ଭାଷା । କେବଳ ତ୍ରିପିଟକ ହିଁ 'ପାଲି' । ପାଲି 'ପାଳନ' ଅର୍ଥଦ୍ୟୋତକ । ପାଲେତି ରକ୍‌ଖତୀତି ପାଲି । ପାଲି ଶବ୍ଦର ଅର୍ଥ ଅନେକ । ପାଲିକୋଶ 'ଅଭିଧାନପ୍ପଦୀ ପିକା' (ଦ୍ୱାଦଶ ଶତକ) ଉଲ୍ଲେଖ ରହିଛି, ତନ୍ତି ବୁଦ୍ଧବଚନଂ ପନ୍ତି ପାଲି । 'ବୁଦ୍ଧ ବଚନ' ଅର୍ଥ ସହିତ କୁହାଯାଇଛି । ଏହାର ଅର୍ଥ 'ପଂକ୍ତି' । ତ୍ରିପିଟକ ଲିଖିତ ହେବା ପୂର୍ବରୁ ମୌଖିକ 'ପଂକ୍ତି' ହୋଇଥିଲା ବୋଲି କୁହାଯାଏ ପଂକ୍ତି । ଅଶୋକଙ୍କ ଧର୍ମଲିପିମାନଙ୍କରୁ ଦୃଷ୍ଟିଗୋଚର ହୁଏ ପାଲିର ବିଭିନ୍ନତା, ଏହା ତାର ଜନ୍ମଗତ । ତେଣୁ କୁହାଯାଏ ସଂସ୍କୃତ କୂପଜଳ ଏବଂ ଅନ୍ୟ ସମସ୍ତ ଭାଷା ବହନ୍ତା ନୀର ।

ଗୋଟିଏ ନିଷ୍କର୍ଷ ସାମ୍ନାକୁ ଆସେ ଯେ ଗୋଟିଏ ଦେଶୀଭାଷା ଆମ ଭୂମିରେ ଥିଲା ପ୍ରଚଳିତ । ମଗଧ ସାମ୍ରାଜ୍ୟର ଚରମ ଉତ୍କର୍ଷ ଓ ବିକାଶ ଏବଂ ଉତ୍କଳ ମଗଧ ସାମ୍ରାଜ୍ୟ ଅନ୍ତର୍ଗତ ହେତୁ ମାଗଧୀ ହୋଇଛି ଆମ ମାଟିରେ ଶିକ୍ଷିତ ଲୋକଙ୍କ ଭାଷା, ଏବେ ଯେମିତି ଇଂଲିଶ । ବୁଦ୍ଧବଚନ 'ପାଲି' ଅଶୋକଙ୍କ ଧର୍ମଲିପି ମାଧ୍ୟମରେ ତୃତୀୟ ଶିକ୍ଷିତ ଭାଷାଟିଏ ହୋଇ ପ୍ରବାହିତ ହୋଇଛି, ଯେମିତି ରାଜଭାଷା ହିନ୍ଦୀ । ପ୍ରଥମରୁ ପାଲି ଏକ ଧାର୍ମିକ ଭାଷା, ପରିୟାୟ (ବୁଦ୍ଧୋପଦେଶ)> ପଲିୟାୟ > ପାଲିୟାୟ > ପାଲି । (ପାଲି-ପ୍ରବେଶିକା (ଭୂମିକା) / ଡ. କୋମଳ ଚନ୍ଦ୍ର ଜୈନ, ତାରା ପବ୍ଲିକେଶନ୍ସ, ବାରଣାସୀ, ୧୯୭୩) । ବୁଦ୍ଧୋପଦେଶର ଟୀକା, କାବ୍ୟ, ବ୍ୟାକରଣ, ଛଂଦଶାସ୍ତ୍ର ଓ କୋଶ ପରେ ଏଥିରେ ରଚିତ ହୋଇ ପ୍ରାପ୍ତ ହୋଇଛି 'ପାଲି-ସାହିତ୍ୟ' ମାନ୍ୟତା । ସାହିତ୍ୟିକ ଦୃଷ୍ଟିରୁ ରହିଛି ପର୍ଯ୍ୟାପ୍ତ ମହତ୍ୱ ମଧ୍ୟ । ବିଭିନ୍ନ ବିଶ୍ୱବିଦ୍ୟାଳୟ ସଂସ୍କୃତ-ହିନ୍ଦୀ ପାଠ୍ୟକ୍ରମରେ ପାଲିକୁ ଦେଇଛନ୍ତି ସ୍ଥାନ ।

ଡ. ରିଚାର୍ଡ୍ ପିଶେଲ୍ ତାଙ୍କ ସୂଚିତ ଜର୍ମାନୀ ପୁସ୍ତକ 'ଗ୍ରମଟିକ୍ ଡେର୍ ପ୍ରାକୃତ ସ୍ପାଖେନ୍'ରେ ପ୍ରାକ୍+କୃତ= ପ୍ରାକୃତ, ସଂସ୍କୃତ ଠାରୁ ପ୍ରାଚୀନତର ମତକୁ ପ୍ରଦାନ କରିଛନ୍ତି



Source: Author, Digitized by PPRACHIN, SOA

ମାନ୍ୟତା । 'ପ୍ରାକୃତ ପ୍ରକାଶ'ରେ ବିରରୁଚି ଲେଖିଛନ୍ତି, ମହାରାଷ୍ଟ୍ରୀ, ପୈଶାଚୀ, ମାଗଧୀ ଓ ଶୌରସେନୀ ପ୍ରାକୃତ ଚାରି ପ୍ରକାର । ହେମଚନ୍ଦ୍ର ତହିଁରେ ସଂଯୋଗ କରିଛନ୍ତି ଚୂଳିକା, ପୈଶାଚିକ, ଆର୍ଷ (ଅର୍ଦ୍ଧମାଗଧୀ) ଓ ଅପଭ୍ରଂଶ ଆଦି ଚାରୋଟି । ମାତ୍ର ବହୁବ୍ୟାକରଣ ପଣ୍ଡିତ 'ଷଡ୍‌ଭାଷା' ମତକୁ ଗୃହୀତ କରି ଭାଷାଗୁଡ଼ିକ ନାମ ଯଥାକ୍ରମେ କରିଛନ୍ତି ଉଚ୍ଚାରିତ: ୧-ମହାରାଷ୍ଟ୍ରୀ, ୨- ଶୌରସେନୀ, ୩- ମାଗଧୀ, ୪- ପୈଶାଚୀ, ୫- ଚୂଳିକାପୈଶାଚୀ ଏବଂ) ଅପଭ୍ରଂଶ ।

ଶାକାରୀ, ଚାଣ୍ଡାଳୀ, ଶାବରୀ, ଆଭୀରିକା, ଢ଼କ୍‌କୀ ବିଭାଷା ଅନ୍ତର୍ଗତ ଏବଂ ଔଣ୍ଡ୍ରୀ ଓ ଦ୍ରାବିଡ଼ୀ ବିଭାଷା ନୁହନ୍ତି । ମାର୍କେଣ୍ଡେୟ ଆଭୀରମାନଙ୍କ ଭାଷା ଅଭିରିକୀର ଗଣନା ବିଭାଷା ଓ ଅପଭ୍ରଂଶ ଅନ୍ତର୍ଗତ କରିଛନ୍ତି ଏବଂ ଏହାର ଷୋହଳ ଭେଦ ପାଞ୍ଚାଳ, ମାଳବ, ଗୌଡ଼, ଔଡ୍ର, କଳିଙ୍ଗ, କର୍ନାଟକ, ଦ୍ରାବିଡ଼, ଗୁର୍ଜର ଆଦି ଦର୍ଶାଇଛନ୍ତି (ପ୍ରାକୃତ ବିମର୍ଶ/ ଡ଼. ସରଯୂ ପ୍ରସାଦ ଅଗ୍ରୱାଲ, ହିନ୍ଦୀ ପ୍ରକାଶନ, ଲଖନଉ ବିଶ୍ୱବିଦ୍ୟାଳୟ, ୧୯୭୪, ପୃଷ୍ଠା ୬). । ରାମ ତର୍କବାଗୀଶ ଉଲ୍ଲେଖ କରିଛନ୍ତି, ମାଗଧୀ ସାହିତ୍ୟିକ ଭାଷାର ରୂପ ଏବଂ ଏହାର ମୌଖିକ ରୂପର ନାମ ଅପଭ୍ରଂଶ (ପ୍ରାକୃତକଳ୍ପତରୁ ସଂ.ଏମ୍.ଏମ୍. ଘୋଷ, କାଲକାଟା, ୧୯୫୪) ।

'ପ୍ରାକୃତାନୁଶାସନ' ରେ ପୁରୁଷୋତ୍ତମ ଦେବ କହନ୍ତି, ମାଗଧାଃ ଶାକାରୀ (ସାଧ୍ୟତୀତି), ଶାକାରୀର ଅଧିକାଂଶ ବିଶେଷତ୍ୱ ମାଗଧୀ ସଦୃଶ । ସେହିପରି ଚାଣ୍ଡାଳୀ ବିଭାଷା ମଧ୍ୟ ମାଗଧୀର ଏକ ବିକୃତ ରୂପ, ମାଗଧୀ ବିକୃତିଃ, (ସୂତ୍ର ୧ ପରିଚ୍ଛେଦ ୧୪, ପ୍ରାକୃତାନୁଶାସନ) । ଶାବରୀ ବିଭାଷା ମଧ୍ୟ ମାଗଧୀର ଏକ ବିକୃତ ରୂପ (ପ୍ରକୃତ ବିମର୍ଶ, ପୃଷ୍ଠ-୬୬) । ଆଭୀରିକୀ ପ୍ରସଂଗରେ ଡ. କେ.ସି. ଆଚାର୍ଯ୍ୟ ଲେଖିଛନ୍ତ: In all probability Abhiras, Though orginally an invading race, were a mixed tribe; and the language they ased was Abhiri which was akin to Sabari and a subdialect to Magadhi. ଆଭୀରିକୀ ଶାବରୀ ସମଗୋତ୍ରୀୟ ଏବଂ ମାଗଧୀର ଗୋଟିଏ ଉପଭାଷା । ଢ଼କ୍‌କୀକୁ 'ଟାକ୍‌କୀ' ନାମ ଦେଇଛନ୍ତି ଗ୍ରିୟର୍ସନ । ସିଆଲକୋଟ ଅନ୍ତର୍ଗତ ଟକ୍‌କ ପ୍ରଦେଶୀ ଏହି ଭାଷା । ପରନ୍ତୁ କେହି କେହି ମଗଧ ପୂର୍ବ ପ୍ରଦେଶ ଢ଼ାକାର ବିଭାଷା ରୂପେ ଏହାକୁ ଗ୍ରହଣ କରନ୍ତି ଏବଂ ଏହା ଶୌରସେନୀ ଅନ୍ତର୍ଗତ ବୋଲି ସେମାନଙ୍କର ମତ (ପ୍ରାକୃତ ବିମର୍ଶ, ପୃଷ୍ଠା ୬୪) ।

ଭରତଙ୍କ ନାଟ୍ୟଶାସ୍ତ୍ରରୁ ସର୍ବପ୍ରଥମେ ଆମ୍ଭେ ପ୍ରାପ୍ତ ହୋଇଛୁ-

ଶକାରାଭୀର-ଚଣ୍ଡାଳ-ଶବର ଦ୍ରାବିଡ଼ୌଡ୍ରଜାଃ
ହୀନ ବନେଚରାଣାଞ୍ଚ ବିଭାଷା ସପ୍ତ କୀର୍ତ୍ତିତାଃ; ଅଥବା ବିଭାଷା ନାଟକାଶ୍ରୟାଃ ।



Source: Author, Digitized by PPRACHIN, SOA

ଅବଶ୍ୟ ମନୁ ସଂହିତା ପଞ୍ଚଦଶ ଅଧ୍ୟାୟ ୪୪ତମ ଶ୍ଳୋକରୁ ମିଳେ ଉଡ୍ରମାନଙ୍କ ନାମୋଲ୍ଲେଖ । ଏହାର ପରବର୍ତ୍ତୀ ପୁସ୍ତକ 'ପ୍ରାକୃତ-ସର୍ବସ୍ୱ' ମାର୍କଣ୍ଡେୟ କବୀନ୍ଦ୍ର କରିଛନ୍ତି ଉଲ୍ଲେଖ:

ଶକାରାଭୀର ଚାଣ୍ଡାଳ ଶବରଦ୍ରାବିଡ଼ୌଡ୍ରଜାଃ

ହୀନା ବନେଚରାଣାଂ ଚ ବିଭାଷା ନାଟକାଶ୍ରୟାଃ ।

ଶକାର, ଆଭୀର, ଚାଣ୍ଡାଳ, ଶବର, ଦ୍ରାବିଡ଼ ଓ ଔଡ୍ର-ବନଚର ମାନଙ୍କର ହୀନଭାଷା, ନାଟକରେ ବ୍ୟବହୃତ 'ବିଭାଷା' । ଏହି 'ବିଭାଷା' ଗୁଡ଼ିକ ଆଲୋଚନା ପ୍ରସଂଗରେ କହିଛନ୍ତି, ଶାବର୍ଯ୍ୟାମେବୌଡ୍ରୀ ଯୋଗତ୍ ତଦ୍‌ଦେଶ୍ୟ ସୌରସେନ୍ୟାଦେଃ, ଅର୍ଥାତ୍-ଓଡ୍ର ଦେଶର ଦେଶଜ ଶବ୍ଦ ଏବଂ ସୌରସେନୀ ଆଦି ଶବ୍ଦ ଶାବରୀରେ ମିଶାଇଲେ ଆମ୍ଭେ ଔଡ୍ରୀ ଉପଭାଷା ପାଇବା (ସାହିତ୍ୟ ସମୀକ୍ଷଣ, (ଉପୋଦ୍‌ଘାତ) ଡ. କୁଂଜ ବିହାରୀ ତ୍ରିପାଠୀ ।)

ଏଇଠି ଅନ୍ୟ ଦୁଇଟି କଥା ସ୍ମରଣ ରଖିବା ଉଚିତ୍, ଶୌରସେନୀ ସଂସ୍କୃତ ଦ୍ୱାରା ଅତ୍ୟଧିକ ପ୍ରଭାବିତ ଭାଷା (ପ୍ରାକୃତ ପ୍ରକାଶ, ଦ୍ୱାଦଶ ପରିଚ୍ଛେଦ) । ଯଥା ଗଚ୍ଛତି > ଗଚ୍ଛଦି, କଥୟ > କଧେହି, ଗତଃ > ଗଦୋ, ତ୍ ଓ ଥ କ୍ରମଶଃ ଦ ଓ ଧ ହୋଇଯାଏ (ଅନାଦାବୟୁକ୍ତୋସ୍ତଥୟୋର୍ଦଧୋ ତୋ ଦୋନାଦୌଶୌରସେନ୍ୟାମ ଯୁକ୍ତସ୍ୟ ଯ ଧଃ, ୨୬୦ସୂକ୍ତ, ଚତୁର୍ଥପାଦ, ପ୍ରାକୃତ ବ୍ୟାକରଣ / ହେମ ଚନ୍ଦ୍ର, ବମ୍ବେ ସଂସ୍କୃତ ଏବଂ ପ୍ରାକୃତ ସିରିଜ୍ -୬୦, ୧୯୩୬)

ଅନ୍ୟ କଥାଟି ହେଲା, ମାଗଧୀ ପ୍ରାକୃତର ମୁଖ୍ୟ ଆଧାର ଅଟେ ଶୌରସେନୀ, (ପ୍ରାକୃତ ପ୍ରକାଶ, ପରିଚ୍ଛେଦ ୧୧ସୂତ୍ର-୨) 'ପ୍ରକୃତିଃ ଶୌରସେନୀ' । ପୁନଶ୍ଚ ଉତ୍କଳର ସଂସ୍କୃତ ଭିତ୍ତିଭୂମି ଅତି ଉର୍ବର । ସିଦ୍ଧାଚାର୍ଯ୍ୟ ଅନଙ୍ଗ ବଜ୍ର, ଇନ୍ଦ୍ରଭୂତି ଓ ଲକ୍ଷ୍ମୀଙ୍କରା ପ୍ରଭୃତି ଧାର୍ମିକ ପୋଷାକ ସଂସ୍କୃତ ମାଧ୍ୟମରେ ହିଁ ଉତ୍କଳୀୟମାନଙ୍କୁ ଅଷ୍ଟମ ଶତାବ୍ଦୀରେ ପରିଧାନ କରାଇ ସଂସ୍କୃତକୁ ଆଉ କ୍ଲିଷ୍ଟ ଓ ଅପରିଚିତ ରଖି ନାହାନ୍ତି । ଜନଜୀବନରେ ବ୍ୟବହୃତ ଭାଷାରେ ସଂସ୍କୃତ ଶବ୍ଦ ଥିଲା ଖଚିତ । ସେହି ସଂସ୍କୃତ ଶବ୍ଦଗୁଡ଼ିକ ଅପଭ୍ରଷ୍ଟ ହୋଇ ଶୌରସେନୀ ହେବା ସ୍ୱାଭାବିକ ଏବଂ ଶୌରସେନୀ ମାଗଧୀର ମୁଖ୍ୟ ଆଧାର ହେତୁ ମାଗଧୀ ଭାଷା ଆଧିପତ୍ୟ ଅତି ସ୍ୱାଭାବିକ । ଶୌରସେନୀଠୁ ମାଗଧୀର ଦୂରତ୍ୱ ବି ବିଶେଷ ନାହିଁ, ରାଜା > ରାଯା, ବର୍ଜତି > ବଞ୍ଜତି, କାର୍ଯ୍ୟ > କୟ୍ୟ, ପୃଚ୍ଛୟତି > ପୁଶ୍ଚଦି, ଅଦ୍ୟ > ଅୟ୍ୟ, ବିଦ୍ୟା > ବିଭ୍ୟା ପ୍ରଭୃତିରୁ ହୁଏ ବେଶ୍ ହୃଦ୍‌ବୋଧ୍ୟ ।

ବରରୁଚି ଲେଖିଛନ୍ତି, ଶୃଗାଳଶବ୍ଦସ୍ୟ ଶିଆଳାଶିଆଳକାଃ (ସୂତ୍ର ୨୭, ୧୧ ପରିଚ୍ଛେଦ, ମାଗଧୀ ଅଧ୍ୟାୟ) । ଅର୍ଥାତ୍ ଶୃଗାଳ-ଇତି ଶବ୍ଦସ୍ୟ ସ୍ଥାନେ ଶିଆଳ, ଶିଆଳକ ଇତ୍ୟାଦେଶୌ



Source: Author, Digitized by PPRACHIN, SOA

ଭବତଃ । ଶୃଗାଳ ଶବ୍ଦ ହୁଏ ଶିଆଳ ବା ଶିଆଳକ ମାଗଧୀରେ, ଉଡ୍ର ଉପଭାଷାରେ ତାହା ବିଲୁଆ । ସେହିଭଳି ଶୌରସେନୀ ଚିଟସ୍ୟ ସ୍ଥାନେ ଚିଷ୍ଠ, ଉଦାହରଣ ପୁଲିଶେ ଚିଷ୍ଠଦି=ପୁରୁଷସ୍ତିଷ୍ଠିତି, ଉଡ୍ର ଭାଷାରେ ମଣିଷ ରହିଛି । ମାଗଧ୍ୟାଂ ହୃଦୟ ଶବ୍ଦସ୍ୟ ସ୍ଥାନେ ହଡକ୍କ-ଇତ୍ୟାଦେଶୋ ଭବତି । ହୃଦୟ ଶବ୍ଦ ମାଗଧୀରେ ହୁଏ ହଡ଼କ୍କ, ଉଡ୍ର ଉପଭାଷାରେ ହୃଦୟ । ପରିଚୟଃ > ପଲିଚୟ > ପରିଚୟ ହୁଏ । ପୂର୍ବରୁ ସୂଚିତ ଶୌରସେନ୍ୟାଂ ଯେ ଶବ୍ଦସ୍ତେଷାଂ ପ୍ରକୃତିଃ ସଂସ୍କୃତମ୍ । ଶୌରସେନୀର ପ୍ରକୃତି ଅଟେ ସଂସ୍କୃତ । କିନ୍ତୁ କେତେକ ଶବ୍ଦ ବଦଳି ଥାଏ, ଯଥା ପୁତ୍ର ହୁଏ ପୁତ୍ତୋ ଏବଂ ଉଡ୍ରରେ ପୁଅ । ସେହିଭଳି ଗୃଧ୍ର ଶବ୍ଦ ହୋଇଥାଏ ଗିଦ୍ଧୋ ଏବଂ ଉଡ୍ର ଶବ୍ଦ ଶାଗୁଣା ବା ଶାରୁଗୁଣା । ସଂସ୍କୃତ କନ୍ୟା, ସୌରସେନୀରେ କଞ୍ଞା, ଉଡ୍ର ଉପଭାଷାରେ ଝିଅ ।

ଗୋଟିଏ କଥା ସ୍ୱଷ୍ଟ ହୁଏ ଉଡ୍ର ଭାଷାର ଗ୍ରହଣ କ୍ଷମତା ଇଂରାଜୀ ଭାଷାପରି ରହିଛି । ଉଡ୍ର ଭାଷାର ମୌଳିକତାକୁ ମାଗଧୀ କିମ୍ବା ଶୌରସେନୀ କେହି କ୍ଷୀଣ କରିପାରି ନାହାନ୍ତି । ଉଡ୍ରଭାଷାର ମହାସ୍ରୋତରେ ପାର୍ଶୀ, ଯାବନିକ, ଇଂରାଜୀଆଦି ଶବ୍ଦମାନେ ଅନୁପ୍ରବେଶ କରି ଏହି ଭାଷାର ଐଶ୍ୱର୍ଯ୍ୟ କରିଛନ୍ତି ବୃଦ୍ଧି । ଯେଉଁ ପଂକ୍ତିଟି ରହିଛି ମାଗଧୀ ଓ ଶୌରସେନୀ ପ୍ରାକୃତ ସମ୍ମିଶ୍ରଣରୁ ଉଡ୍ର ଭାଷାର ଉଦ୍ଭବ, ଏହି ତତ୍ତ୍ୱଟି ନୁହେଁ ତ୍ରୁଟିଶୂନ୍ୟ । ବରରୁଚି ଚାଣ୍ଡାଳୀ, ମାଗଧୀ ଓ ଶୌରସେନୀ ଆଲୋଚନା କରିଛନ୍ତି, ହେମଚନ୍ଦ୍ର ଓ ମାର୍କେଣ୍ଡେୟ ପ୍ରାକୃତ ସାହିତ୍ୟର ସୁବିସ୍ତୃତ ଆଲୋଚନା ରଚନା କରିଛନ୍ତି, କିନ୍ତୁ ଔଡ୍ରୀ ଉପଭାଷା ଉପରେ ସଷ୍ଟ ଆଲୋଚନା କରି ନାହାନ୍ତି । ଭରତଙ୍କୁ ଅନୁସରଣ ଓ ଅନୁକରଣ କରି ମାର୍କଣ୍ଡେୟ ଉଡ୍ର ଭାଷାକୁ 'ବିଭାଷା ନାଟକାଶ୍ରୟାଃ' ଉଲ୍ଲେଖ କରିଛନ୍ତି ତାହା ମଧ୍ୟ ନୁହଁ ବିତର୍କ ରହିତ । ଡ.ଜି.ଭି. ଟାଗାରେ ଲେଖିଛନ୍ତି an uncultured dialect by the term Vibhasa used in Natya Sashra XVII. 48 and indentifies it with Apabhramsa (Historical Grammer of Apabhramsa, Page-7) । 'ଭାଷା' ଓ 'ବିଭାଷା' ଗୋଟିଏ କଥା ବା ଏକା ପଦାର୍ଥ ବୋଲି ପୁରୁଷୋତ୍ତମ 'ପ୍ରାକୃତାନୁଶାସନ'ରେ କରିଛନ୍ତି ଉପଲବ୍ଧି, In fact Purusottam understands Vibhasa in the same sense as he understands Bhasa and indentifies the same with ordinary Prakrit; cf. ହରିଶ୍ଚନ୍ଦ୍ର ତ୍ୱ ଇମାମ ଟକ୍କାଭାଷାମ ଅପଭ୍ରଂଶମ୍ ଇଚ୍ଛତି ନ ପ୍ରାକୃତମ୍ -(ପ୍ରାକୃତାନୁଶାସନ XVI. Page 10, ed. by M.M. Ghose, Calcutta, 1954.)

ପୂର୍ବରୁ ଆଲୋଚିତ 'ଛନ୍ଦସ୍' ଶବ୍ଦ ସଂସ୍କୃତ ଭାଷା ପାଇଁ ଏବଂ ଅନ୍ୟ ସମସ୍ତ ସଂସ୍କୃତ ଇତର ଭାଷା ପାଇଁ 'ଭାଷା'ଶବ୍ଦ ହେଉଥିଲା ବ୍ୟବହୃତ । Grierson ତାଙ୍କ ରଚିତ 'ପ୍ରାକୃତ ବିଭାଷା' ପ୍ରଥମରୁ ଚତୁର୍ଥ ଅଧ୍ୟାୟ, ଆଲୋଚନା କରିଛନ୍ତି ଏହାର ବିଭିନ୍ନ ଦିଗ ।



Source: Author, Digitized by PPRACHIN, SOA

'ପ୍ରାକୃତ ସର୍ବସ୍ୱ' ଓ ରାମ ତର୍କବାଗୀଶଙ୍କ 'ପ୍ରାକୃତ କଳ୍ପତରୁ' ଉପରେ ଆଧାରିତ ତାହାଙ୍କ ଅଧ୍ୟାୟତକ । ଗ୍ରୀୟରସନ୍‌ଙ୍କ ଅବଗତି ନିମ୍ନ ଚାରୋଟି ବିଶିଷ୍ଟ ଗୁଣରେ ସ୍ଥିର ।

୧- Vibhasa is a form of Prakrit in which the rules of the standard or of some other dielect are applied or not at option.

୨- Vibhasa may mean a base language (Vi-bhasa)

୩- It may also mean a minor bhasa (Vi-bhasa)

୪- Vibhasa is a corruption either downgrade or upgrade of one or more standard prakrit dialects, which use only in stage plays and is there allotted to special characters whatever locality they may belong to. (Prakrta-Sarvasva, Introduction, page 97-98, ed. by Dr. K.C. Acharya)

ଅପଭ୍ରଂଶର ଯେଉଁ ଉପଭାଷାଗତ ଚାରିତ୍ରିକତା ରହିଛି, ତାହା ତାହାକୁ କରେ 'ବିଭାଷା'। ହରିଶ୍ଚନ୍ଦ୍ର ଗ୍ରହଣ କରିଛନ୍ତି ଟାକ୍କୀ ଅପଭ୍ରଂଶ, ନୁହେଁ 'ବିଭାଷା' । ଏହି ଦୋଳାୟମାନ ସୀମରେଖାକୁ ଅବଶ୍ୟ ଗ୍ରହଣ କରିଛନ୍ତି ଗ୍ରୀୟରସନ । ରାମ ତର୍କବାଗୀଶ ନିମ୍ନ ପଂକ୍ତି ଦୁଇଟିରେ କରିଛନ୍ତି ସ୍ପଷ୍ଟ:

ଶକାର କୌଡ୍ରଦ୍ରବିଡ଼ାଦିବାଚୋଃ ପଭ୍ରଂଶତାଂ
ଯଦ୍ୟପି ସଂଶ୍ରୟନ୍ତି ।
ସ୍ୱାନ୍ନାଟକାଦୌ ଯଦି ସଂପ୍ରଯୋଗ ନୈତା
ଅପଭ୍ରଂଶତୟା ତଥେଷ୍ଟାଃ ।

ଶାକାରୀ, ଔଡ୍ରୀ, ଦ୍ରାବିଡ଼ୀ ଇତ୍ୟାଦି ଅପଭ୍ରଂଶ ପ୍ରକୃତିଯୁକ୍ତ, କିନ୍ତୁ ଅପଭ୍ରଂଶ ନୁହନ୍ତି, ମାତ୍ର ନାଟକରେ ବ୍ୟବହାର ହୋଇଥାନ୍ତି । ମାର୍କେଣ୍ଡେୟ କିନ୍ତୁ ଗ୍ରହଣ କରିଛନ୍ତି ଅର୍ଦ୍ଧ ମାଗଧୀ ଓ ବାହ୍ଲିକୀ ଭାଷା ଶ୍ରେଣୀଭୁକ୍ତ ଏବଂ ଔଡ୍ରୀ ଓ ଦ୍ରାବିଡ଼ୀ ଜାତିରେ ବିଭାଷା ।

ଗୋଟିଏ ଭାଷାର ଜନ୍ମ, ଗୋତ୍ର ଓ ଜାତି ନିର୍ଣ୍ଣୟକୁ କାହିଁକି ପଣ୍ଡିତମାନେ କରିଛନ୍ତି ସଂଦିଗ୍ଧପୂର୍ଣ୍ଣ, କିଛି ବିଚାର କରି ହୁଏନାହିଁ । ଉଡ୍ର ଭାଷାର ବ୍ୟାପକ ବିଶ୍ଳେଷଣ ପାଇଁ ଯଥେଷ୍ଟ ଅବହେଳା ପ୍ରଦର୍ଶନ କରିଛନ୍ତି ପ୍ରାକୃତ ପଣ୍ଡିତ । ଏହା ନେପଥ୍ୟରେ ଜାତିଗତ ହୀନମ୍ୟତା ଥାଇ ପାରେ ହୁଏତ । ଅଶୋକ ଓ ଖାରବେଳଙ୍କ ଶିଳାଲେଖ ଏବଂ ତ୍ରିପିଟକଟି ନଥିଲେ ଇତିହାସ ପୃଷ୍ଠାରୁ ଲିଭିଯାଇଥାନ୍ତା ଏହି ଭାଷାଟିର ନାମ, ଜାତି ଓ ଗୋତ୍ର ।





Source: Author, Digitized by PPRACHIN, SOA

# ଅକ୍ଷର ସୃଷ୍ଟି ତତ୍ତ୍ୱ

-ଏକ-

ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀ, ଅଶୋକଙ୍କ ଶାସନ ସମୟ, ଭାରତରେ ସ୍ୱତଂତ୍ର ଆକୃତିର ଦୁଇ ପ୍ରକାର ଅକ୍ଷର ଥିଲା ପ୍ରଚଳିତ । ଗୋଟିଏ ବ୍ରାହ୍ମୀ ଓ ଅନ୍ୟଟି ଖରୋଷ୍ଠୀ । ଅଧିକାଂଶ ପ୍ରଦେଶରେ ଥିଲା ବ୍ରାହ୍ମୀଲିପିର ବ୍ୟବହାର । ଖରୋଷ୍ଠୀ; ତକ୍ଷଶିଳା ବା ଆଧୁନିକ ପଞ୍ଜାବ ପ୍ରଦେଶ ସମେତ ଭାରତର ପଶ୍ଚିମଭାଗ ପ୍ରଦେଶରେ ଏହି ଲିପିର ଥିଲା ପ୍ରଚଳନ । ଅଶୋକଙ୍କ ପୂର୍ବରୁ ଖୋଦିତ କୌଣସି ଶିଳାଲିପି ବା ତାମ୍ର ଶାସନ ଏତେ ବେଳ ପର୍ଯ୍ୟନ୍ତ ଐତିହାସିକଙ୍କ ପ୍ରାପ୍ତି ଘଟିନାହିଁ । ତେଣୁ ମାକ୍ସ ମୁଲାର ଓ Buhler ଅନୁମାନ କରନ୍ତି ଖ୍ରୀଷ୍ଟପୂର୍ବ ଚତୁର୍ଥ ବା ପଞ୍ଚମ ଶତକ ବେଳକୁ ଭାରତୀୟ ଲିପିକଳା ସହିତ ହୋଇଯାଇଥିଲେ ପରିଚିତ । ହିନ୍ଦୁ ପରଂପରା, ବିଦ୍ୟାକୁ କରିବାକୁ ହୁଏ ମୁଖସ୍ଥ । ସମସ୍ତ ପାଠ ଥିଲା ସ୍ମୃତି ଓ ଶ୍ରୁତି ନିର୍ଭର ଏବଂ ଗୁରୁ-ଶିଷ୍ୟ ପରଂପରା ଦ୍ୱାରା ସୁରକ୍ଷିତ । ଭାରତୀୟ ସାହିତ୍ୟର ଆଭିମୁଖ୍ୟ, ଧର୍ମ ଓ ଧର୍ମ ସାଧନାର ବର୍ମ୍ମ ଅଭିବ୍ୟକ୍ତି ଏବଂ ତାହା ଗୁରୁ ଶିଷ୍ୟ ମଧ୍ୟରେ ଥିଲା ସୀମିତ । ତେଣୁ ତାହାକୁ କେଉଁ ଆଦିମ କାଳରୁ ରଖା ଯାଇଥିଲା ମୌଖିକ ଓ କଣ୍ଠସ୍ଥ । ଫ୍ଲୀଟ ଲେଖିଛନ୍ତି:- that the begining of the Hindu Sastras and poetry goes back to a time when writing was unknow and that a system of oral teaching was tracreble in the Rgveda, was fully developed before the introduction of written charcters. (Vide the Indian Palaeography by. J.F. Fleet in the Indian Antiquary, Vol xxx III, 1904 App. Page 4ff.)

ଗ୍ରୀକ୍ ଆଲେକ୍‌ଜାଣ୍ଡାରଙ୍କ ଭାରତ ଅଭିଯାନ ହେତୁ ଆଗତ ବିଦେଶୀ ସଂସ୍ପର୍ଶରୁ ଭାରତୀୟଙ୍କ ଅଭିଲେଖ ଶିକ୍ଷା ଖ୍ରୀ.ପୂ. ଚତୁର୍ଥ ଶତକରେ ଘଟିଛି । ଭାରତର ଆଦିଲିପି ବ୍ରାହ୍ମୀ । ପ୍ରାୟ ସମସ୍ତ ପଣ୍ଡିତ ମତ ଦେଇଛନ୍ତି ।

୧୯୨୨ରୁ ୧୯୨୭, Sir John Marshal [୧]ଅଧ୍ୟକ୍ଷତାରେ ଖନନ ହୁଏ ମହେଞ୍ଜୋଦାରୋ ଓ ହରପ୍ପା । ଭାରତର ପଶ୍ଚିମ ସୀମାନ୍ତ, ଏହି ସୌନ୍ଧବ ପ୍ରଦେଶରୁ ଆବିଷ୍କୃତ ହେଲା ଏକ ବିସ୍ମୟକର ସମୃଦ୍ଧ ସଭ୍ୟତା । ଏହି ଭୂଖନନରୁ ଖ୍ରୀ.ପୂ. ୨୦୦୦ ବା ୩୦୦୦ ବର୍ଷର ପ୍ରାଗ୍ ଐତିହାସିକ ଯୁଗ ଲିପି ହେଲା ଆବିଷ୍କୃତ । ଭାରତୀୟ ଲିପି



Source: Author, Digitized by PPRACHIN, SOA

ସଂସ୍କୃତି ଇତିହାସରେ ସଂଲଗ୍ନ ହେଲା ଏକ ନବ ଫର୍ଦ୍ଦ । ମହେଂଜୋଦାରୋ ଓ ହରପ୍ପା ଲିପି ବ୍ରାହ୍ମୀ ଓ ଖରୋଷ୍ଟ୍ରୀ ଠାରୁ ଥିଲା ଭିନ୍ନ ଏବଂ ଦୁଇ ତିନି ସହସ୍ର ବର୍ଷର ପ୍ରାଚୀନତମ, ଏଥିରେ ନଥିଲା କାହା ଅଲଗା ମତ । ମହେଂଜୋଦାରୋ ଅକ୍ଷର ଠାରୁ ବ୍ରାହ୍ମୀ ଓ ଖରୋଷ୍ଟ୍ରୀ ନିଆରା ହେଲେ ମଧ୍ୟ ସାମ୍ୟ ଲକ୍ଷ୍ୟ କରା ଯାଇଛି ।

A. Waber କହନ୍ତି, ବ୍ରାହ୍ମୀ ପ୍ରାଚୀନ ଫିନିଶୀୟ ଲିପିରୁ ପ୍ରକାଶ ଲାଭ କରିଛି । I.Taylor କହନ୍ତି, ଦକ୍ଷିଣ ଆରବର କୌଣସି ଏକ ଲିପିର ପ୍ରଭାବରେ ଗଠିତ ସେବିଅନ୍ ଅକ୍ଷରର କ୍ରମପରିଣତି ବ୍ରାହ୍ମୀଲିପି (Cretan ଓ Sabaean) ସହିତ ସୌନ୍ଧବ ଲିପିର ସାମଞ୍ଜସ୍ୟ ବିଦ୍ୟମାନ । ଗବେଷକ J.Halevy କହନ୍ତି, ଅରମଇକ (Armaic) ଖରୋଷ୍ଟ୍ରୀ ଓ ଗ୍ରୀକ ଲିପିଗୁଡ଼ିକର ସମିଶ୍ରଣ ଫଳରେ ଖ୍ରୀ.ପୂ. ଚତୁର୍ଥ ଶତକର ଶେଷକୁ ବ୍ରାହ୍ମୀଲିପି କରିଛି ଆତ୍ମ ପ୍ରକାଶ । ବ୍ରାହ୍ମୀଲିପି ସହିତ ସୌନ୍ଧବ ଲିପିର କେତେକାଂଶ ରହିଛି ମେଳ । [୨]

ଖ୍ରୀଷ୍ଟପୂର୍ବ ତୃତୀୟ ଶତକରୁ ଅଶୋକଙ୍କ ଅନୁଶାସନ ବ୍ରାହ୍ମୀଲିପି ଦ୍ୱାରା ଲିଖିତ ଏବଂ ଏହି ବ୍ରାହ୍ମୀ ଅକ୍ଷର ସମଗ୍ର ଭାରତ ପ୍ରସାରିତ ଓ ପରିବ୍ୟାପ୍ତ ଲିପି । ଏହି ଲିପି ସହିତ ତୁଳନା କରି ଦେଖାଯାଇଛି ପାଶ୍ଚାତ୍ୟର ଫିନିଶୀୟ, ହିମିଅରଟିକ୍ ଓ ଅରମଇକ୍ ଲିପି ସହିତ କେତେକ ଅଂଶ ମେଳ ଖାଉଅଛି । ଆକୃତିଗତ ସାମ୍ୟ ସହିତ ଉଚ୍ଚାରଣ ମଧ୍ୟ ସମାନ । ପୁନଶ୍ଚ ସୌନ୍ଧବ ଅକ୍ଷର ସହିତ ରହିଛି ସାମଞ୍ଜସ୍ୟ ଓ ପଞ୍ଚମାର୍କ ମୁଦ୍ରାଗୁଡ଼ିକର ଭାବଚିତ୍ରାତ୍ମକ ଲିପି ସହିତ ରହିଛି ସାଦୃଶ୍ୟ । କଲିଙ୍ଗହାମ୍ ଲେଖିଛନ୍ତି, ବିଶ୍ୱରେ ବ୍ରାହ୍ମୀ ଅକ୍ଷର ବୈଜ୍ଞାନିକ ପ୍ରଣାଳୀରେ ଗଠିତ ଏବଂ ଅକ୍ଷରମାନ ଗୋଟିଏ ଗୋଟିଏ ସଂକେତ ବା ଆକାର ବା ଆକୃତି ହୋଇ ନିର୍ମିତ । ପ୍ରତ୍ୟେକ ଉଚ୍ଚାରଣ ସ୍ଥାନ ବୈଜ୍ଞାନିକ ପଦ୍ଧତିରେ ପରିକଳ୍ପିତ । ଏହା ସମ୍ଭବ ହୋଇଛି ଭାରତରେ ଉତ୍କର୍ଷ ଗୋଟିଏ ସଭ୍ୟତାର ବିକାଶ ଲାଭ ହେତୁ କେବଳ । [୩]

ଅଶୋକଙ୍କ ପରେ ପ୍ରାଚୀନ ବ୍ରାହ୍ମୀ ଅକ୍ଷରର ଦୁଇଶତ ମଧ୍ୟବର୍ତ୍ତୀ ସମୟ, ଖାରବେଳଙ୍କ ହାତୀଗୁମ୍ଫା ଅକ୍ଷରରେ ଆସିଛି ସାମାନ୍ୟ ପରିବର୍ତ୍ତନ । ମୂଳ ଅକ୍ଷରର ନିମ୍ନାଂଶ ଥିଲା କୁଟିଳ ଓ ବକ୍ର, ଉପର ହେଲା ଚୂଳ ସଂଯୁକ୍ତ । ଏହାର ପ୍ରାୟ ତିନିଶହ ବର୍ଷପରେ ଅକ୍ଷରର ଆକୃତି ହୋଇଛି ଦୁଇ ଭାଗ । ୧-ଦାକ୍ଷିଣାତ୍ୟ ଲିପି ଏବଂ ୨-ଉତ୍ତରାପଥ ଲିପି ବା ଗୁପ୍ତାକ୍ଷର ରୂପେ ପରିଚୟ ଲାଭ କରିଛି ।

**ଦାକ୍ଷିଣାତ୍ୟ ଲିପି**

(କ) ସାଲଙ୍କାୟନ ରାଜାମାନଙ୍କ, କୃଷ୍ଣା-ଗୋଦାବରୀ ନଦୀ ମଧ୍ୟବର୍ତ୍ତୀ ଅଞ୍ଚଳ, ପ୍ରାପ୍ତ ପ୍ରାକୃତ ଭାଷାରେ ଲିଖିତ ତାମ୍ରଶାସନର ଅକ୍ଷରଗୁଡ଼ିକୁ କୁହାଯାଇଛି ।

(ଖ) ମାଠର ବଂଶୀୟ ରାଜାମାନଙ୍କ, କଳିଙ୍ଗର ମହେନ୍ଦ୍ରଗିରି ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ବିଭିନ୍ନ ରାଜାଙ୍କ ଦ୍ୱାରା ଲିଖିତ ୧୫ଟି ପ୍ରାପ୍ତ ତାମ୍ର ଶାସନର ଲିପି ।



Source: Author, Digitized by PPRACHIN, SOA

**ଉତ୍ତରାପଥ ଲିପି ବା ଗୁପ୍ତାକ୍ଷର :**

ଓଡ଼ିଶାର ପୂର୍ବୋତ୍ତର ଅଞ୍ଚଳରୁ ଚତୁର୍ଥ, ପଞ୍ଚମ ଓ ଷଷ୍ଠ ଶତାବ୍ଦୀର କେତୋଟି ଶିଳାଲେଖ ଓ ତାମ୍ରଶାସନରୁ ଏହି ଲିପି ଦେଖିବାକୁ ମିଳିଛି । ମାଠର ବଂଶ ସହିତ ସାଳଙ୍କାୟନ ବଂଶର ବୈବାହିକ ସମ୍ବନ୍ଧ ହେତୁ ଉତ୍ତର ଓଡ଼ିଶାର ଗୁପ୍ତ ବଂଶୀୟ ରାଜାମାନଙ୍କ ରାଜନୈତିକ ପ୍ରଭାବ ବୋଧହୁଏ ଏହିପରି ଲିପିଗୁଡ଼ିକୁ ଦୁଇ ଭାଗରେ ବଦଳାଇଛି । ମହାରାଜା ଗୋପଚନ୍ଦ୍ରଙ୍କ ସମୟର ଖୋଦିତ ଲିପି ଉତ୍ତରାପଥ ଲିପି ଶ୍ରେଣୀ ବିଶେଷ ।

କେନ୍ଦୁଝର ଜିଲ୍ଲା, କରଂଜିଆ ସବ୍‌ଡିଭିଜନ, ଅଶନପାଟ ନାମକ ଆଦିବାସୀ ପଲ୍ଲୀରୁ ପ୍ରାପ୍ତ ଗୋଟିଏ ପ୍ରସ୍ତର ମୂର୍ତ୍ତିରୁ ତ୍ରୟୋଦଶଟି ପଂକ୍ତି ଚତୁର୍ଥ ଶତାବ୍ଦୀ ଲେଖ ଆବିଷ୍କୃତ ହୋଇଛି । ରାଜା ସ୍କନ୍ଦଗୁପ୍ତ,୧୪୧ ଗୁପ୍ତାବ୍ଦକାଳ, ଲିପି ସହିତ ଘନିଷ୍ଠ ସାମଞ୍ଜସ୍ୟ ଏହି ଅକ୍ଷରରୁ ପରିଦୃଷ୍ଟ ।

ବାଲେଶ୍ୱର ଜିଲ୍ଲା, ଭଦ୍ରକାଳୀ ମନ୍ଦିର, ପ୍ରାପ୍ତ ଶିଳାଶାସନ ପ୍ରଥମ ବା ଦ୍ୱିତୀୟ ଶତାବ୍ଦୀର ହୁଏ ବୋଧ । ଏହାର ଭାଷା ପାଲି । ଅକ୍ଷରଗୁଡ଼ିକ ଖାରବେଳଙ୍କ ଲିପିର ଅନୁରୂପ । ସେଇ ବାଲେଶ୍ୱର ଜିଲ୍ଲା ଭୋଗରାଇ ଥାନା ଅନ୍ତର୍ଗତ ଜୟରାମପୁର, ମହାରାଜ ଗୋପଚନ୍ଦ୍ରଙ୍କ ସମୟରେ ଖୋଦିତ, ଏହାର ସମୟ ଷଷ୍ଠଶତକ ପ୍ରାରମ୍ଭ ଏହି ଲିପି ବଂଗଳାର ପୁଣ୍ଡ୍ର ବର୍ଦ୍ଧନରୁ ମିଳିଥିବା ରାଜା କୁମାର ଗୁପ୍ତ ଓ ବୁଦ୍ଧଗୁପ୍ତଙ୍କ ସମସାମୟିକ ଲିପି ସହିତ ସମାନ । ଭୂପତି ବର୍ମାଙ୍କ ସମୟ ୫୧୮-୫୪୨ ଖ୍ରୀଷ୍ଟାବ୍ଦ ମଧ୍ୟରେ ସ୍ଥାପିତ । ଭୂପତିବର୍ମାଙ୍କ ସମୟର ବଡ଼ଗଙ୍ଗା ଲିପି ସହିତ ସମାନ ଗୋପଚନ୍ଦ୍ରଙ୍କ ସମସାମୟିକ ଲିପି ।

ସପ୍ତମ ଶତାବ୍ଦୀ ବେଳକୁ ଭୌଗୋଳିକ ଓ ରାଜନୈତିକ ଓଡ଼ିଶା ଚାରି ଭାଗରେ ବିଭକ୍ତ ହୋଇ ସାରିଛି । ସେଗୁଡ଼ିକ :

୧- ଉତ୍ତର ଓଡ଼ିଶା, ଏହାର ନାମ ତୋଷାଳି

୨- ଦକ୍ଷିଣ ଓଡ଼ିଶା, ଯାହାର ନାମ କଳିଙ୍ଗ

୩- ପଶ୍ଚିମ ଓଡ଼ିଶା, ଦକ୍ଷିଣ କୋଶଳ, ବା କୁହା ଯାଉଥିଲା ତ୍ରିକଳିଙ୍ଗ ଏବଂ

୪- ମଧ୍ୟ ଓଡ଼ିଶା ନାମ ଥିଲା କୋଙ୍ଗଦ ।

ଷଷ୍ଠ ଶତାବ୍ଦୀ ଉତ୍ତର ଓଡ଼ିଶା ଓ ମଧ୍ୟ ଓଡ଼ିଶା ମୌଦ୍‌ଗଳ ଏବଂ ବିଗ୍ରହନାମାନ୍ତ ରାଜା ମାନଙ୍କ ଦ୍ୱାରା ହେଉଥିଲା ଶାସିତ । ସେମାନଙ୍କ ତାମ୍ରଶାସନ ଲିପି ଖାରବେଳଙ୍କ ଲିପିର କ୍ରମ ବିକାଶ ରୂପ ବା ଆକୃତି । ପଶ୍ଚିମ ଓଡ଼ିଶା ମହାରାଜ ଭୀମସେନଙ୍କ ଆରଙ୍ଗ ତାମ୍ର ଶାସନ ଲିପିର ସମୟ ସପ୍ତମ ଶତାବ୍ଦୀ ପ୍ରାରମ୍ଭ ବୋଲି ହୁଏ ଅନୁମାନ । ଦକ୍ଷିଣ ଓଡ଼ିଶା ରାଜା ଦକ୍ଷିଣ ଭାରତୀୟ ଚୋଳ, ଚାଲୁକ୍ୟ ପ୍ରଭୃତି ରାଜବଂଶ ସହିତ ବୈବାହିକ ସମ୍ବନ୍ଧ ହେତୁ ଓଡ଼ିଶା ଦରବାରରେ ବହୁ ଦାକ୍ଷିଣାତ୍ୟ ଲେଖକ ହୁଅନ୍ତି ନିଯୁକ୍ତ । କଳିଙ୍ଗନଗର ସମ୍ବନ୍ଧ



Source: Author, Digitized by PPRACHIN, SOA

ହେତୁ ଓଡ଼ିଶା ଦରବାରରେ ବହୁ ଦାକ୍ଷିଣାତ୍ୟ ଲେଖକ ହୁଅନ୍ତି ନିଯୁକ୍ତ । କଳିଙ୍ଗନଗର ଗଙ୍ଗ ଓ ଶ୍ୱେତକ ଗଙ୍ଗମାନଙ୍କ ଉପରେ ପଡ଼ିଛି ଦାକ୍ଷିଣାତ୍ୟର ପ୍ରଭାବ । ଦାକ୍ଷିଣାତ୍ୟ ଲିପି ଦ୍ରାବିଡୀୟ ଲିପିଦ୍ୱାରା ପ୍ରଭାବିତ ।

ସପ୍ତମ ଶତାବ୍ଦୀ, ଶୈଳୋଦ୍‌ଭବ ବଂଶୀୟ ରାଜାମାନଙ୍କ ତାମ୍ରଲିପିରୁ ଅକ୍ଷରମାନଙ୍କ ଆକୃତିର ଦୃଷ୍ଟାନ୍ତ ମିଳିଛି । ପୁରୀରୁ ପ୍ରାପ୍ତ ଶୈଳୋଭବ ବଂଶ ମାଧବ ବର୍ମାଙ୍କ ତାମ୍ର ସନନ୍ଦ । ଅଷ୍ଟମ ଶତକ ବେଳକୁ ଶାସକ ଭୌମବଂଶ ପୂର୍ବୋତ୍ତର ଅଞ୍ଚଳ ଦଖଲ କରି ରାଜଧାନୀ କଲେ ଗୁହେଶ୍ୱର ପାଟକ ଓ ପରେ ବିରଜାନଗର (ଯାଜପୁର) । ଶୈଳୋଦ୍‌ଭବ ବଂଶକୁ ଉଚ୍ଛେଦ କରି ଉତ୍ତର ତୋଷାଳୀ ଦକ୍ଷିଣ ତୋଷାଳୀ ଓ କୋଙ୍ଗଦ ମଣ୍ଡଳ କଲେ ଶାସନ । ଫଳତଃ ପୂର୍ବଭାରତୀୟ ଲିପି ଓ ସଂସ୍କୃତି ଓଡ଼ିଶାରେ କଲା ପ୍ରବେଶ । ଦଶମ ଶତାବ୍ଦୀ ବେଳକୁ ଭୌମ ବଂଶ ହୁଏ ଅସ୍ତମିତ । ସୋମବଂଶୀ ରାଜା ଯଯାତି ନିଜ ପାରଗପଣ ପ୍ରତିପାଦନ ଯେଉଁ ତାମ୍ର ଶାସନରେ କରିଛନ୍ତି ସେହି ଅକ୍ଷରର ଆକୃତି ଏକାଦଶ ଶତକ ବେଳକୁ ବିଭିନ୍ନ ପ୍ରକାର ହୋଇଛି । ଦଶମରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ଲିପିରେ ଦେଖାଯାଏ ଚୂଳ ବ୍ୟବହାର । ସୋମବଂଶୀ ମହାଭବ ଗୁପ୍ତ ଜନ୍ମେଜୟଙ୍କ ଲିପି ଏହାର ଦୃଷ୍ଟାନ୍ତ । କର୍ଣ୍ଣଦେବ କେଶରୀ ବଂଶର ଶେଷ ରାଜା । ଏହାଙ୍କ ସମୟ ଦ୍ୱାଦଶ ଶତକ ପ୍ରାରମ୍ଭ । ଏହାଙ୍କ ପୂର୍ବଜ ଉଦ୍ୟୋତ କେଶରୀଙ୍କ ସମୟର ଲିପି କେତେକ ଆଧୁନିକ ଓଡ଼ିଆ ଲିପି ଆକୃତିର ପାଖାପାଖି ରୂପ ଗ୍ରହଣ ଦୃଷ୍ଟି ଗୋଚର ହୋଇଅଛି ।

ଏହି ସମୟରେ–ଚୋଡ଼ଗଙ୍ଗ ଦେବ କଳିଙ୍ଗର ଗଙ୍ଗବଂଶୀୟ ରାଜାଙ୍କୁ ପରାସ୍ତ କରି ହୁଅନ୍ତି ଉତ୍କଳାଧୀଶ୍ୱର । କଳିଙ୍ଗ ଉତ୍କଳ ସୀମା ଲମ୍ବିଯାଏ ଗଙ୍ଗାଠାରୁ ଗୋଦାବରୀ । ସେତେବେଳେ ପ୍ରଚଳିତ ହୁଏ ଉତ୍ତର ଭାରତୀୟ ଶୈଳୀୟ ପ୍ରତ୍ନ–ଓଡ଼ିଆ ଲିପି । ଅନଙ୍ଗ ଭୀମ ଦେବ ୨ୟଙ୍କ ସମୟ ତ୍ରୟୋଦଶ ଶତାବ୍ଦୀ, ଘୁମୁସରରୁ ସେହି ସମୟର ରାଜା ଜୟ ଭଞ୍ଜଙ୍କ ତାମ୍ର ଶାସନରୁ ମିଳେ ପ୍ରତ୍ନ–ଓଡ଼ିଆ ଲିପି ବିକାଶର ନମୂନା । ଚତୁର୍ଦ୍ଦଶ ଓ ପଞ୍ଚଦଶ ଶତକ ସୂର୍ଯ୍ୟବଂଶୀ ଶାସକଙ୍କ ସମୟ, ଅକ୍ଷରର ବିକାଶ ପଥ ଧୀରେ ଧୀରେ ହୋଇ ଚାଲିଛି ପରିଷ୍କୃତ ଓ ମାର୍ଜିତ । କପିଳେଶ୍ୱର ଦେବଙ୍କ ସମୟକୁ ଅକ୍ଷରର ମାର୍ଜିତ ରୂପ, ପ୍ରସାର ଓ ବିକାଶର ଶୀର୍ଷଠୁ ଆଉ ଥାଏ ତଳେ ମାତ୍ର ଦୁଇ ପାହାଚ । ଭୋଇ ବଂଶ ରାମଚନ୍ଦ୍ର ଦେବଙ୍କ ଶିରଜାଙ୍ଗ ଶିଳାଲିପି ତାଳପତ୍ର ଲିପି ଜନ୍ମ ସହ ସତୀର୍ଥ ଲିପି । ତାଳପତ୍ର, ଲିପିର ଯୁଗ ମଣିଷର ଲେଖାପଢ଼ା ଆବଶ୍ୟକତାକୁ ପୂରଣ କରିବାକୁ ପହଂଚିଛି । ଓଡ଼ିଆ ଅକ୍ଷରର ଆକୃତି ଗୋଲଗୋଲ, ଏହାର କାରଣ ବୀମ୍ସ ଅନୁମାନ କରନ୍ତି [୪] ଭାରତୀୟ କୁଟିଳାକ୍ଷରରୁ ଜାତ, ମାତ୍ର ତାଳପତ୍ର ଓ ଲୌହ ଲେଖନୀରେ ଲେଖା ଯାଉଥିବା ହେତୁ



Source: Author, Digitized by PPRACHIN, SOA

ଏଗୁଡ଼ିକ ହୋଇଛି ବର୍ତ୍ତୁଳାକାର । ଗବେଷକ A.T.R. Hoernte କହନ୍ତି, ସପ୍ତଦଶ ଶତାବ୍ଦୀ ଦ୍ୱିତୀୟାର୍ଦ୍ଧ ପୂର୍ବରୁ ଲିଖିତ କୌଣସି ତାଳ ପତ୍ରପୋଥି ଓଡ଼ିଶାରେ ନାହିଁ । ତେଣୁ ଓଡ଼ିଶାରେ ତାଳପତ୍ର ପୋଥି ମୁକୁନ୍ଦ ଦେବ (ଖ୍ରୀ.ଅ. ୧୬୮୩)ଙ୍କ ପୂର୍ବରୁ ଲେଖା ହୋଇନାହିଁ ।[୪]

-ଦୁଇ-

Pliny ପ୍ରାଚୀନ ଆଶୀରୀୟନ୍‌ଙ୍କୁ ପୃଥିବୀର ପ୍ରଥମ ଲିପି ଉଦ୍ଭାବକ ଜାତି ରୂପେ ଗ୍ରହଣ କରିଛନ୍ତି । ମିଶରର କିମ୍ବଦନ୍ତୀ, Marcury ବା Thoth ଙ୍କ ଠାରୁ ସର୍ବ ପ୍ରଥମେ ସେମାନେ ଅକ୍ଷର ଶିକ୍ଷା ଲାଭ କରିଛନ୍ତି । ପ୍ରାଚୀନ ଶିରୀୟନ୍ (Syrians) ଅକ୍ଷର ଉଦ୍ଭାବକ ଜାତି ବୋଲି କେତେକ ଗବେଷକ ଦାବୀ କରିଛନ୍ତି । ପ୍ଲିନୀ ଲେଖିଛନ୍ତି, ଆଶୀରୟାନ୍‌ଙ୍କ ଠାରୁ ପୃଥକ୍ ଗୋଟିଏ ଜାତି ଶିରୀୟନ୍ ଏବଂ ଉଭୟ ସଂପ୍ରଦାୟ ମଧ୍ୟରେ ସାଂସ୍କୃତିକ ବିକାଶ ଦିଗରେ ଥିଲା ଘନିଷ୍ଠ ସଂପର୍କ । ଲୁକାନ୍ (Lucan)ଫିନିଶୀୟଙ୍କ ସଙ୍ଗେ ଶିରୀୟନ୍‌ଙ୍କୁ ସମ୍ମାନ ଭାବେ ଗ୍ରହଣ କରିଛନ୍ତି ।

ଆଦିମ ବର୍ଣ୍ଣର ମାନ୍ୟତା ହିଏରଟିକ୍ (Hieratic)ଶୈଳୀୟ ଲିପିକୁ ଦିଆଯାଇଛି, ଯାହା ମଧ୍ୟ-ଆଶିୟାରୁ ପ୍ରାପ୍ତ ଏବଂ ଶରଶୀର୍ଷ ଲିପି, (Cuneiform Characters)ର ସମ ସାମୟିକ ବୋଲି କୁହାଯାଉଛି । ଅଷ୍ଟିନ୍ ହେନ୍‌ରୀ ଲେୟାର୍ଡ କହନ୍ତି [୬] ଆଶୀରୀୟନ୍ ମାନଙ୍କ ମଧ୍ୟରେ ପ୍ରଚଳିତ ଲିପି ଦୁଇ ପ୍ରକାର । ୧-ଶରଶୀର୍ଷ ଲିପି, Cuneiform ବା Aerrow headed Characters ଏବଂ ୨-ଶୃଙ୍ଖଳାକ୍ଷର Cursive ବା Hieratic, ଏହା ସର୍ବ ସାଧାରଣରେ ସୁପ୍ରଚଳିତ । ଏହା ଡ଼ାହାଣରୁ ବାମକୁ ଲେଖାଯାଏ Phaenician, Jew, Palmyrene ଓ Babylonion ପ୍ରଭୃତି ଜାତି ମଧ୍ୟରେ ପ୍ରଚଳିତ ବର୍ଣ୍ଣାବଳୀ ସହିତ ଏହାର ରହିଛି ସାମଞ୍ଜସ୍ୟ । ଶୀରୀୟ-ଆରେବିୟନ୍ ଜାତିମାନଙ୍କ ମଧ୍ୟରେ ପ୍ରଚଳିତ ଏକ ପରିବାରଭୁକ୍ତ ଭାଷାମାନଙ୍କ ସହିତ ଏହା ଥିଲା ସଂପୃକ୍ତ ।

ଆଶୀରୀୟନ୍‌ମାନଙ୍କ ଦ୍ୱାରା ପ୍ରଚଳିତ ଶୃଂଖଳାକ୍ଷର ଯାହା ଅଦ୍ୟାବଧି ଆବିଷ୍କୃତ, ତାହା ପ୍ରାଚୀନ ଆଶୀରୀୟ ଦେଶର ସ୍ଥାପତ୍ୟମାନଙ୍କରେ ଅନାବିଷ୍କୃତ । ଗୋଲାକାର ଅକ୍ଷରସ୍ଥାନରେ ସରଳ ରେଖାଯୁକ୍ତ ଅକ୍ଷରମାନ ଆବିଷ୍କୃତ, ଯାହା ପାଷାଣ ଗାତ୍ରରେ ଖୋଦନ ଅଟେ ସୁଗମ । ଶରଶୀର୍ଷ ଲିପି ବାମରୁ ଲେଖାଯାଏ ଡ଼ାହାଣକୁ । ଏହା ମୂର୍ତ୍ତିମାନଙ୍କ ସମ୍ବନ୍ଧରେ ଚିତ୍ରଲିପିର ଅନୁରୂପ (Hieroglyphic Characters)ଅଟେ ।

ଆଫ୍ରିକାର ନୀଳନଦୀ ମୁହାଣର ରୋସେଭ ସହରରୁ ଆବିଷ୍କୃତ ଗୋଟିଏ ଶିଳାଲେଖରୁ[୭] ବିଶ୍ୱର ପ୍ରାଚୀନତମ ଚିତ୍ରଲିପି ୧୭୯୯ ମସିହାରେ ଚିହ୍ନିବାକୁ ମିଳିଥିଲା । ମିଶର ଓ ଗ୍ରୀସ୍‌ରେ ପ୍ରଚଳିତ ଦୁଇଟି ଭାଷାରେ ଥିଲା ତାହା ଲିଖିତ । ପୁଣି ମିଶର ଭାଷା ଅଂଶଟି ଦୁଇ ପ୍ରକାର ଲିପିରେ ଲିଖିତ ।



Source: Author, Digitized by PPRACHIN, SOA

୧-ଚିତ୍ରାକ୍ଷର (Hieroglyphic script)ଏବଂ ୨-ହିଅରେଟିକ୍ (Heiratic) ଶୃଙ୍ଖଳାକାର ଲେଖ । ଚିତ୍ରାକ୍ଷରର ପରବର୍ତ୍ତୀ ସଂସ୍କରଣ ଏହି ହିଅରେଟିକ୍ ଅକ୍ଷର । ଚିତ୍ରାକ୍ଷର ବ୍ୟବହାର କେଉଁ ଆଦିମ କାଳରୁ ସେଠାରେ ଥିଲା ପ୍ରଚଳିତ । Ptolemaic period ରେ ଶୃଙ୍ଖଳାକାରାକ୍ଷରର ହୋଇଥିଲା ପ୍ରଚଳନ ।

୧୮୨୨ ମସିହା, ଫରାସୀ ଲିପିତତ୍ତ୍ୱବିଦ୍ ଜୀନ୍ ଫ୍ରାଙ୍କୋଇସ୍ ଚାମ୍ପୋଲିୟନ୍ ଏହି ପ୍ରାଚୀନତମ ଲିପିମାଳାର କଲେ ବିଶୁଦ୍ଧ ପାଠୋଦ୍ଧାର । ଏହି ରୋସେଟ୍ଟା ଶିଳାଲେଖ ପଠନ କାର୍ଯ୍ୟ ସଂପୂର୍ଣ୍ଣ ହୋଇ ପାରିବା ଦ୍ୱାରା ମିଶରର ଆଦିମ ଯୁଗର ସମସ୍ତ ଲିପି କରିହେଲା ପାଠ ।

ମହେଂଜୋଦାରୋ, ଚାହ୍ନୁଦାରୋ ଓ ହରପ୍ପାରୁ ଆବିଷ୍କୃତ ଲିପି 'ଭାରତୀୟ ଚିତ୍ରଲିପି' । ମିଶର ଓ ବେବିଲୋନ ପ୍ରଭୃତି ରାଜ୍ୟରୁ ଆବିଷ୍କୃତ ଚିତ୍ରଲିପିର ଏଗୁଡ଼ିକ 'ଚିତ୍ରାକାର' । ମାତ୍ର ବେବିଲୋନ୍ ଓ ମିଶର ଚିତ୍ରଲିପି ସହିତ ସାମଞ୍ଜସ୍ୟ ବିହୀନ । ତେଣୁ ଏହା ଦୁର୍ବୋଧ୍ୟ ଏବଂ ଅଦ୍ୟାବଧି ମଧ୍ୟ ଅପଠିତ ହୋଇ ରହିଛି । ଅକ୍ଷରବିଦ୍‌ମାନଙ୍କ ମତ, ସେହି ଅକ୍ଷରଗୁଡ଼ିକ ଦ୍ରାବିଡ଼ମାନଙ୍କ ଦ୍ୱାରା ଥିଲା ପ୍ରଚଳିତ । Rev. H.Heras J ଙ୍କ ମତ ଅନୁଯାୟୀ, ବେଲୁଚିସ୍ଥାନରେ ପ୍ରଚଳିତ ଭାଷା 'ବ୍ରହୁଇ' ସହିତ ଭାରତୀୟ ତାମିଲ ଭାଷାର ରହିଛି ଘନିଷ୍ଠ ସଂପର୍କ । ପ୍ରାଚୀନ ଯୁଗରେ ବେଲୁଚିସ୍ଥାନରେ ପ୍ରତିଷ୍ଠିତ ଥିଲା ଦ୍ରାବିଡ଼ ସଭ୍ୟତା ବୋଲି ଅନୁମାନ କରି 'ବ୍ରହୁଇ' ଭାଷା ସାହାଯ୍ୟରେ ମହେଞ୍ଜୋଦାରୋରୁ ପ୍ରାପ୍ତ ଚିତ୍ରଲିପି ପାଠୋଦ୍ଧାର ପ୍ରୟାସ କରିଥିଲେ ସିଏ ।

'Pictophonic characters' ବା 'ସ୍ୱରିତ ଚିତ୍ରଲିପି' ବୋଲି ଅକ୍ଷରଗୁଡ଼ିକୁ ସିଏ କରିଛନ୍ତି ନାମିତ । ସ୍ୱରର ଉଚ୍ଚାରଣଭଙ୍ଗୀ ଅନୁଯାୟୀ ଅକ୍ଷରଗୁଡ଼ିକର ଆକୃତି ଗଠିତ ବୋଲି ସିଏ ସ୍ଥିର କରିଛନ୍ତି । ଚୀନ ଦେଶର 'Shang' ସଂପ୍ରଦାୟଙ୍କ 'ଯୁକ୍ତ ଶବ୍ଦାକ୍ଷର' (Phraseological Symbol) ଲିଖନ ଶୈଳୀ ଠିକ୍ ଏହିପରି ସ୍ୱରର ନିୟମ ଭିତରେ ଗଠିତ ।

ପ୍ରାଗ୍ ଐତିହାସିକ ଯୁଗ ଲିପିର ଶାଖା ଦୁଇଟି । ୧- ଚିତ୍ରାକ୍ଷର (Heiroglyph) ଏବଂ ୨- ଭାବାକ୍ଷର (Ideograph) । କାଳକ୍ରମେ ଏଥିରୁ ସୃଷ୍ଟି ଭାବାଂଶ ଲିପି ଓ ତହିଁରୁ ସୃଷ୍ଟି ବ୍ରାହ୍ମୀଲିପି ।

ପ୍ରଥମେ ପୂର୍ଣ୍ଣାଙ୍ଗ ଛବିଟିଏ ଅଙ୍କନ କରୁଥିଲେ । ତାହା ପରେ ଆବଶ୍ୟକ ଭାବ ପ୍ରକାଶ ପାଇଁ ଯେଉଁ ଅଂଶ ଆବଶ୍ୟକତା ଚିତ୍ରକଲେ ଅଙ୍କନ, ତାହା ଭାବ ଚିତ୍ର । କାଳକ୍ରମେ ତାହାକୁ ସଂକ୍ଷିପ୍ତ କରି ଆବଶ୍ୟକଙ୍କ ଭାବପ୍ରକାଶ ସ୍ଥାନିଟିର ଚିତ୍ର 'ଭାବାଂଶଚିତ୍ର' ବା ଭାବାଂଶ ଲିପିନିଏ ଜନ୍ମ । ସହସ୍ର ବର୍ଷର ପରିବର୍ତ୍ତନ ଓ ବିକାଶ ଫଳରେ ଯେଉଁ ଧ୍ୱନି ବା



Source: Author, Digitized by PPRACHIN, SOA

ସ୍ୱର ପାଇଁ ଯେଉଁ ଅକ୍ଷର ହେଲା ବ୍ୟବହୃତ ତାହାର ମୌଳିକ ଚିତ୍ରଟିକୁ ଅନ୍ୱେଷଣ କରିବାକୁ ଆଜି କେହି ନୁହନ୍ତି ଆଗ୍ରହୀ । ଚିତ୍ରଲିପି > ଭାବଲିପି > ଭାବାଂଶ ଲିପି, ସରଳ ଓ ବକ୍ରରେଖାରେ ସଜ୍ଜିତ ଏହି ଲିପିମାଳା, ତତ୍‌କାଳୀନ ଲିପିକାରଙ୍କ ଲେଖନୀମୁନରେ ଚାଳିତ ହୋଇ 'ବ୍ରାହ୍ମୀ' ନାମରେ ଦିନେ ହୁଏତ ହୋଇଛି ପରିଚିତ । (୮) ଅଶୋକଙ୍କ ଶିଳାଲେଖ ବୋଧହୁଏ ସେହି ଲିପି ପ୍ରସାରଣର ସବୁଠୁ ବଡ଼ ପୃଷ୍ଠପୋଷକ ଓ ଭାରତୀୟ ଲିପି ସଂସ୍କୃତିର ମୁଖ୍ୟ ବାହକ ।

ବୋଘାଜ୍ କୋଇ (Boghaz koi) ଏସିଆ ମାଇନର ଉତ୍ତର ଭାଗରେ ଅବସ୍ଥିତ ଗୋଟିଏ ସ୍ଥାନ । ଏଠାରୁ ମିଳିଛି ଗୁଡ଼ିଏ ପ୍ରାଚୀନ ଲିପି ଓ ଶବ୍ଦ । ଆର୍ଯ୍ୟ ସଂସ୍କୃତି ସଂପନ୍ନ ଗୁଡ଼ିଏ ଶବ୍ଦ ସହିତ ସେହି ଶବ୍ଦମାନଙ୍କ ରହିଛି ଖୁବ୍ ସାମଂଜସ୍ୟ । ଯଥା-ସେଠାରୁ ପ୍ରାପ୍ତ ଶବ୍‌ଦ 'ମିଥ୍ର', ସଂସ୍କୃତର 'ମିତ୍ର', ସେଠାରୁ ପ୍ରାପ୍ତ 'ଦଶରତ୍ତ', ସଂସ୍କୃତରେ 'ଦଶରଥ' ପ୍ରଭୃତି । ମିତ୍ର, ଇନ୍ଦ୍ର ବରୁଣ ପ୍ରଭୃତି ବେଦୋକ୍ତ ଦେବତାଙ୍କ ଉପାସନା ବୋଘାଜ୍ କୋଇ ଲିପିମାଳାରୁ ପ୍ରାପ୍ତ ହୋଇ ଗବେଷକ ଅନୁମାନ କରନ୍ତି ଆର୍ଯ୍ୟମାନେ ବେବିଲୋନିଆ ଓ ପାରସ୍ୟ ଖ୍ରୀ.ପୂ. ୨୦୦୦ ବା ତାହା ପୂର୍ବରୁ ଆକ୍ରମଣ କରି ଦଖଲ କରି ଆର୍ଯ୍ୟ ସଂସ୍କୃତି ବିସ୍ତାର କରିଛନ୍ତି । ବୋଘାଜ୍ କୋଇ ଲିପିରୁ ବ୍ରାହ୍ମୀଲିପି ହୁଏତ ହୋଇପାରିଥାଏ ବିକାଶିତ ।

'ତନ୍ତ୍ରସାର'ରେ ପାଞ୍ଚ ପ୍ରକାର ଲିପିର ନାମୋଲ୍ଲେଖ ରହିଛି, ୧-ମୁଦ୍ରାଲିପି, ୨-ଶିଳ୍ପଲିପି, ୩-ଲେଖ ସମ୍ଭବାଲିପି, ୪-ଗୁଣ୍ଡିକଲିପି ଏବଂ ୫-ଘୂଣ ଲିପି । ଗୁଣ୍ଡିକା ଲିପିଟିକୁ ଗୁଣ୍ଡିକ ବା ମୁରୁଜ ସାହାଯ୍ୟରେ ଯଜ୍ଞ ଓ ଉପାସନା ସ୍ଥଳ ଆଦିରେ ମଣ୍ଡଳ ଅଙ୍କନକୁ ଅନେକ ବୁଝନ୍ତି । ଅନ୍ୟ ଚାରୋଟି ଲିପି ଅବୋଧ୍ୟ ରହିଛି । ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀ ପୂର୍ବରୁ ଭାରତ ଷୋହଳ ମହାଜନପଦରେ ଥିଲା ବିଭକ୍ତ । ପ୍ରତିଜନପଦରେ ସ୍ୱତଂତ୍ର 'ରୁପ୍ୟକ' ବା ମୁଦ୍ରା ଥିଲା ପ୍ରଚଳିତ ଏବଂ ତହିଁରେ ଭାବ ଚିତ୍ରାତ୍ମକ ଲିପି ଖୋଦିତ । ଚନ୍ଦ୍ରଗୁପ୍ତ ମୌର୍ଯ୍ୟ, ଖ୍ରୀ.ପୂ. ଚତୁର୍ଥ ଶତାବ୍ଦୀ, ସାମ୍ରାଜ୍ୟ ଯେତେଦୂର ବିସ୍ତାରିତ ସବୁଠୁ ଘଟିଛି ଏକ ପ୍ରକାର ମୁଦ୍ରା ପ୍ରାପ୍ତି । ମହେଞ୍ଜୋଦାରୋରୁ ଆବିଷ୍କୃତ ସୀଲ୍‌ରେ ଥିବା ଚିତ୍ରାକ୍ଷର ପଞ୍ଚମାର୍କ ମୁଦ୍ରାଗୁଡ଼ିକରେ ମଧ୍ୟ ଅଙ୍କିତ । ବ୍ରାହ୍ମୀଲିପି ପ୍ରଚଳନ ପୂର୍ବରୁ ଭାରତରେ ଗୋଟିଏ ଲିପି ପ୍ରଚଳିତ ଥିଲା, ଏହା ନିଶ୍ଚିତ । ପୁନଶ୍ଚ ବାଜସନେୟୀ ସଂହିତାରେ ଗୁଡ଼ିଏ ଛନ୍ଦ ଓ ଛନ୍ଦବିଷୟକ ବର୍ଣ୍ଣନା ମିଳେ । ଯଦି ଅକ୍ଷର ନଥିଲା ଛନ୍ଦ ରଚିତ ହେଲା କିପରି ?

ଖ୍ରୀ.ପୂ. ୫୦୦ରେ ଭାବଲିପି ଆକୃତି ସରଳରେଖା ଯୋଗଦ୍ୱାରା ଚତୁଷ୍କୋଣ, ତ୍ରିକୋଣ ଓ ସରଳକୋଣ ରୂପ । କଳାହାଣ୍ଡି ଗୁଡ଼ହାଣ୍ଡି ପାହାଡ଼ର କେତେକ ଗହ୍ୱର ସମ୍ମୁଖଲିପି ଏହାର ନିଦର୍ଶନ । ବିଦେଶୀ Creatan ଓ Sabaean ଲିପି ସହିତ ସମାନ । କଟକ



Source: Author, Digitized by PPRACHIN, SOA

ନରାଜ ପାହାଡ ଓ ବ୍ରଜରାଜ ନଗର ବିକ୍ରମଖୋଲ ଅକ୍ଷର ଚିତ୍ରଲିପି । Indian Antiquary, VoL. LXII (1933), Page 58-60ff ଡ଼.ପି. ଜୟସ୍ୱାଲ ଲେଖିଛନ୍ତି, ସବୁ ଅକ୍ଷର ଖୋଦିତ ନ ହୋଇ ବିଭିନ୍ନ ରଂଗରେ ଚିତ୍ରିତ ବିକ୍ରମଖୋଲ ଲିପି । ମହେଞ୍ଜୋଦାରୋର କେତୋଟି ଅକ୍ଷର ସଂକେତର ସାଦୃଶ ନରାଜ ଓ ବିକ୍ରମଖୋଲ ଲିପିମାନଙ୍କରେ ରହିଅଛି । ଡ଼ାହାଣରୁ ବାମକୁ ଲିଖନ ପଦ୍ଧତି ଗତି କରିଥିବା ସମ୍ଭବ । ବୋଧହୁଏ ହ୍ରସ୍ୱ ଓ ବ୍ୟଞ୍ଜନ ବର୍ଣ୍ଣାତ୍ମକ ବର୍ଣ୍ଣମାଳା ବ୍ୟବହୃତ ହୋଇଅଛି । ଏହା ପ୍ରାୟ ଖ୍ରୀଷ୍ଟପୂର୍ବ ୧୫୦୦ବର୍ଷରେ ଖୋଦିତ । Dr. Giuseppi Piccoli ଲେଖିଛନ୍ତି Confiming ourselves here to the scqept found at Mahinjo Daro we may note that it contains signs in common with the Vekremokhol inscription. (Vide Indian Antiquary, Vol. LXII, 1933, Page 213. ଚିତ୍ରଲିପି ଯୁଗର ଅନ୍ୟ ଏକ ଦୀର୍ଘ ଶିଳାଲିପି ବିହାର ପ୍ରଦେଶସ୍ଥ ସିଂହାଣ ପୁରରୁ ଆବିଷ୍କୃତ ବୋଲି C.W.Andevron ଉଲ୍ଲେଖ କରିଛନ୍ତି ।

ମହେଂଜୋଦାରୋରୁ ଆବିଷ୍କୃତ କିଛି ସୀଲ୍‌ମାନଙ୍କ ଉପରେ ଥିବା ସାଙ୍କେତିକ ଚିହ୍ନ ଆକୃତି ସହିତ ଗୁଡ଼ିଏ ବ୍ରାହ୍ମୀଲିପିର ରହିଛି ସାଦୃଶ୍ୟ । ଏଣୁ ବ୍ରାହ୍ମଲିପି ପ୍ରାଚୀନ ସୈନ୍ଧବ ଲିପିର କ୍ରମବିକାଶ ଓ କ୍ରମ ପ୍ରକାଶ । କୁହାଯାଇଛି ବ୍ରହ୍ମା ବ୍ରାହ୍ମୀର ଉଦ୍ଭାବକ । ଜୈନ ଧର୍ମଗ୍ରନ୍ଥ ପନ୍ନବଣା ସୂତ୍ରରେ ଅଷ୍ଟାଦଶ ପ୍ରକାର ଲିପିର ରହିଛି ନାମୋଲ୍ଲେଖ । ସେଗୁଡ଼ି ୧- ବଂଭୀ, ୨-ଜବଶାଳୀ, ୩-ଦୋସା ପୁରିଆ, ୪-ଖରୋଟ୍ଟୀ, ୫- ପୁକ୍‌ଖରସାରିଆ, ୬- ଭୋଗବରିୟା, ୭-ପହାରାରିୟା, ୮-ଭୟଅନ୍ତରିକ୍‌ଖିଆ, ୯- ଅକ୍‌ଖରପିଛିୟା, ୧୦- ଦେବତାଇୟା, ୧୧-ଣିଡାହାଇଆ, ୧୨-ଅଙ୍କଲବି, ୧୩-ଗଣିତଲିବି, ୧୪- ଗନ୍ଧବ୍‌ବଲିବି, ୧୫-ଅଦଂସଲିବି, ୧୬-ମାହେସରୀ, ୧୭-ଦାମିଲୀ ଏବଂ ୧୮- ପୋଳିଂଦୀ । 'ବାଂଭୀ' ବୋଧହୁଏ 'ବ୍ରାହ୍ମୀ' ଲିପି । ବୁଦ୍ଧଦେବ ଶିକ୍ଷା କରିଥିଲେ ଚୌଷଠୀ ପ୍ରକାର ଲିପି । ଲଳିତ ବିସ୍ତରରେ 'ବଂଭୀ'ର ଉଲ୍ଲେଖ ରହିଛି, ଉକ୍ତ ଚୌଷଠୀ ମଧ୍ୟରୁ ତାହା ଏକ । ଖରୋଷ୍ଟୀ ଲିପିର ନାମ ଲଳିତ ବିସ୍ତରରେ ଥିବା ପରିବ୍ରାଜକ ହୁଏନ୍‌ସାଂ ଉଲ୍ଲେଖକରିଛନ୍ତି ।

ଭାରତର ଲିପିସଂସ୍କୃତି ଅତି ପ୍ରାଚୀନ । ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତକରେ ବର୍ଷ ଆରମ୍ଭରେ ଭାରତରେ ପଂଜିକା ପାଠ ପରଂପରା ପ୍ରଚଳନ ଥିଲା, ଲେଖିଛନ୍ତି ମେଘାସ୍ଥିନିସ୍ । [୯] ଯଦି ଅକ୍ଷର ନ ଥିଲା ପଂଜିକା କିପରି ହେଉଥିଲା ରଚିତ ? ଅକ୍ଷରର ସୁଲଭ ପ୍ରସାର ହୁଏ ତ ନଥିଲା ଏବଂ ନଥିଲା ଇତିହାସ ପାଇଁ ସଂରକ୍ଷଣ ଚିନ୍ତା । 'ଅକ୍ଷରିକା' କଳା ଏଇ ଦେଶର ନାଗରିକ ଥିଲେ ଅବଗତ । ବ୍ରାହ୍ମୀଲିପି ଏବଂ ମାଗଧୀ ପ୍ରାକୃତ ଭାଷା ପ୍ରାପ୍ତ ହୋଇଥିଲା ଶ୍ରେଷ୍ଟତ୍ୱ, ତେଣୁ ଗୌତମ-ବୁଦ୍ଧଙ୍କ ବଚନ ତହିଁରେ ହୋଇଛି ପ୍ରଚାରିତ ।



Source: Author, Digitized by PPRACHIN, SOA

## THE EVOLUTION TABLE OF INDIAN ALPHABETS

ବାହ୍ମୀ (ଅଶୋକାକ୍ଷର, ଖ୍ରୀ.ପୂ. ୩୦୦)
ପରବର୍ତ୍ତୀ ବ୍ରାହ୍ମୀଲିପି (ଖାରବେଳ ଓ କୁଷାଣ ଲିପି)




(୧) Mahenjo-daro and the Indus civilazation, by Sir John Marshall, (1930)
(୨) The Alphabet 2 Page 314 ff
(୩) Gen. Cunningham's Coins of India, Vol.1, Page-52
(୪) Comparative Grammer of The Modern Aryan Language of India, Intruduction, Page 63 FF.
(୫) J.A.S.B, Vol LXV (1896), Page 231, ନଗେନ୍ଦ୍ର ନାଥ ବସୁ A.T.R. Hoernte ଙ୍କ ମତକୁ ଉଦ୍ଧୃତ କରିଛନ୍ତି ।
(୬) Nineveh and its remains, Vol. II, Page 164 by Austin Henry Layard.
(୭) The Rosetta Stone, Published by the Trustees of the British Musium, London, 1950,
(୮) ଓଡ଼ିଆ ଲିପି /ଡ଼. ସତ୍ୟ ନାରାୟଣ ରାଜଗୁରୁ, କୋଣାର୍କ ୪ର୍ଥ ବର୍ଷ, ୨ୟ ସଂଖ୍ୟା ।
(୯) 'Megasthenis' Indica, Page 91, Ed. by. Schwanbeck.



Source: Author, Digitized by PPRACHIN, SOA

# ଶାସ୍ତ୍ରୀୟ ଓଡ଼ିଆ ଭାଷାର ପୁରାତତ୍ତ୍ୱ

ସଂପ୍ରତି ଯେଉଁ କ୍ଷେତ୍ରକୁ କୁହାଯାଉଛି ଓଡ଼ିଶା, ତାହାର ଐତିହାସିକ ନାମ ଉତ୍କଳ ଓ କଳିଙ୍ଗ । କିନ୍ତୁ ସଂପ୍ରତି ନା ଅଛି ଉତ୍କଳ କି କଳିଙ୍ଗ । ସେହି ସମୟର ଓଡ଼ିଶା ବର୍ତ୍ତମାନ ଓଡ଼ିଶା ଠାରୁ ଖୁବ୍ ବୃହତ । (ଉତ୍କଳ କୀ ଭୌଗୋଳିକ ରୂପରେଖା/ ଶ୍ରୀ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ରାଷ୍ଟ୍ରଭାଷା ରଜତ ଜୟନ୍ତୀ ଗ୍ରନ୍ଥ, ପୃଷ୍ଠ- ୨୯, ୧୯୮୦ ମସିହା)

ଓଡ଼ିଶାର କ୍ଷେତ୍ରଫଳ ୬୦,୦୦୦ ବର୍ଗ ମାଇଲ୍‌ରୁ ଅଧିକ ଏବଂ ତେରଟି ଜିଲ୍ଲାରେ ଥିଲା ବିଭକ୍ତ । (ଓଡ଼ିଶାକା ପୁରତତ୍ତ୍ୱ / ଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ରାଷ୍ଟ୍ରଭାଷା ରଜତ ଜୟନ୍ତୀ ଗ୍ରନ୍ଥ, ପୃଷ୍ଠା ୩୬) । ସମଗ୍ର ପ୍ରଦେଶ ବନ ପର୍ବତ ପୂର୍ଣ୍ଣ ଏବଂ ବଙ୍ଗୋପସାଗର ପଶ୍ଚିମ ତଟରେ ବିରାଜମାନ । ପଶ୍ଚିମ ପାର୍ବତ୍ୟାଞ୍ଚଳରୁ ବାହାରିଛନ୍ତି ଋଷିକୁଲ୍ୟା, ମହାନଦୀ, ବ୍ରାହ୍ମଣୀ, ବୈତରଣୀ, ସାଳନ୍ଦୀ, ବୁଢ଼ାବଳଙ୍ଗ ଓ ସୁବର୍ଣ୍ଣରେଖା ଆଦି ନଦୀ, ବଙ୍ଗୋପସାଗରରେ ହୋଇଛନ୍ତି ମିଳିତ ।

ମାନବ ସଭ୍ୟତା ନଦୀ ଓ ପର୍ବତ ଦ୍ୱାରା ଖୁବ୍ ପ୍ରଭାବିତ । ବିଶ୍ୱର ସମସ୍ତ ସଭ୍ୟତାର ଜନ୍ମସ୍ଥଳ ନଦୀକୂଳ । ନଦୀ ମାର୍ଗ ଦେଇ ଭାରତର ପୂର୍ବରେ ଅବସ୍ଥିତ ଏହି ରାଜ୍ୟଟିକୁ ଆସିଛି ସଭ୍ୟତା । ମାନବ ସଭ୍ୟତା କେବେ ଏହି ନଦୀ ଓ ବନ ସମୃଦ୍ଧ ଭୂମି ଓଡ଼ିଶାକୁ କରିଛି ସମୃଦ୍ଧ ତାହାର ନାହିଁ ଇତିହାସ । କିନ୍ତୁ ମାନବ ସଭ୍ୟତାର ଏହା ଏକ ଆଦିଭୂମି । ଏହି ଭୂମି ଦେଖିଛି ମାନବ ସଂସ୍କୃତିର ଶୈଶବ ।

ପୁରାତତ୍ତ୍ୱକୁ ପ୍ରାଧାନତଃ ଦୁଇ ଭାଗରେ କରାଯାଇଛି ବଣ୍ଟନ । ପ୍ରାଗୈତିହାସିକ ପ୍ରଥମ ଏବଂ ଦ୍ୱିତୀୟ ଐତିହାସିକ । ପ୍ରାଗୈତିହାସିକ ଲିପି ବ୍ୟବହାରର ସୂଚନା ନାହିଁ, କିନ୍ତୁ ଐତିହାସିକ ଯୁଗ ଆରମ୍ଭରେ ଲିପି ବ୍ୟବହାରର ମିଳିଛି ପ୍ରମାଣ । ଓଡ଼ିଶାରୁ ଆବିଷ୍କୃତ ସର୍ବ ପ୍ରାଚୀନ ଲିପି ଅଶୋକଙ୍କ ଧଉଳୀ ଓ ଜଉଗଡ଼ ଶିଳାଲେଖ, ଏହାର ସମୟ ଖ୍ରୀଷ୍ଟ ପୂର୍ବ ତୃତୀୟ ଶତକ । ଡ. ହରମନ୍ ଓଲଡ଼ନବର୍ଗ 'ବିନୟ ପିଟକ' ଭୂମିକାରେ ଉଲ୍ଲେଖ କରିଛନ୍ତି 'ପାଲି' ଭାଷା ଥିଲା କଳିଙ୍ଗର ରାଷ୍ଟ୍ରଭାଷା । ଡ. ଏଡ୍‌ୱାର୍ଡ ମୁଲର ମଧ୍ୟ ଦର୍ଶାଇଛନ୍ତି, 'ପାଲି' ଭାଷାର ଉଦ୍‌ଗମ ସ୍ଥାନ କଳିଙ୍ଗ, କଳିଙ୍ଗର ଜାତୀୟ ରାଷ୍ଟ୍ର ଭାଷାଥିଲା ପାଲି



Source: Author, Digitized by PPRACHIN, SOA

(ସିଂପଲୀଫାଏଡ୍ ଗ୍ରାମର୍ ଅଫ୍ ଦି ପାଲି ଲାଙ୍ଗୁଏଜ୍, ଭୂମିକା ପୃଷ୍ଠା-୩) । ବ୍ରାହ୍ମୀଲିପି ଓ ଭାଷା ପାଲି ଖ୍ରୀଷ୍ଟପୂର୍ବ ତୃତୀୟ ଶତକ ଅଶୋକଙ୍କ ଶିଳଲେଖ ଓଡ଼ିଆ ଭାଷା ସରସ୍ୱତୀଙ୍କ ମାତୃଅଙ୍କ ।

ପୁରାତତ୍ତ୍ୱ ଓ ଭୂତତ୍ତ୍ୱବିଦଙ୍କ ମତ ପ୍ରସ୍ତର ଯୁଗୀୟ ମାନବ ନଦୀଗର୍ଭରୁ ପ୍ରାପ୍ତ ପ୍ରାଚୀନ ପ୍ରସ୍ତର ଅସ୍ତ୍ର । ମସ୍ତିଷ୍କ ସଂଚାଳନ ଓ ହସ୍ତ କାର୍ଯ୍ୟଦ୍ୱାରା ସେହି ଅସ୍ତ୍ର କାଟିବା ଓ ଛେଦିବା କାର୍ଯ୍ୟ ପାଇଁ ହୋଇଛି ପ୍ରସ୍ତୁତ । ଏହି ପ୍ରତ୍ନ ପ୍ରସ୍ତର ଯୁଗୀୟ ଅସ୍ତ୍ର ଓଡ଼ିଶାର ମୟୂରଭଞ୍ଜ, ଢ଼େଙ୍କାନାଳ ଓ ସମ୍ବଲପୁର ଜିଲ୍ଲାର ବିଭିନ୍ନ ଅଞ୍ଚଳରୁ ହୋଇଛି ଆବିଷ୍କୃତ । ନବ୍ୟ ପ୍ରସ୍ତର ସଭ୍ୟତା କାଳ ଅସ୍ତ୍ର ମୟୂରଭଞ୍ଜ, କେଉଁଝର, ଢ଼େଙ୍କାନାଳ ଓ ସୁନ୍ଦରଗଡ଼ ଜିଲ୍ଲାରୁ ଗବେଷକ ହୋଇଛନ୍ତି ପ୍ରାପ୍ତ । ପୁରାଣ -ସାହିତ୍ୟ କରେ ସୂଚିତ ମୟୂରଭଞ୍ଜ, ଢ଼େଙ୍କାନାଳ, ସମ୍ବଲପୁର ଓ ଏହାର ଆଖପାଖ ସ୍ଥାନମାନଙ୍କରେ ପ୍ରାଚୀନ ଆର୍ଯ୍ୟ ସଭ୍ୟତା ହୋଇଥିଲା ପ୍ରସାରିତ । ବୈବସ୍ୱତ ମନୁଙ୍କ ପୂର୍ବ ବୁଧଙ୍କ ଔରସ ଓ ଇଳା ଗର୍ଭରୁ ଚନ୍ଦ୍ରବଂଶୀ ରାଜାଙ୍କ ଆଦିପୁରୁଷ ହୋଇଥିଲେ ଜନ୍ମ । ସେହି ଇଳା ଶିବଙ୍କ ବରଦାନ ଦ୍ୱାରା ପୁରୁଷ ପାଲଟି ଧାରଣ କରେ ସୁଦ୍ୟୁମ୍ନ ନାମ । ସୁଦ୍ୟୁମ୍ନ ଙ୍କ ହୁଅନ୍ତି ତିନିପୁତ୍ର । ଉତ୍କଳ, ଜୟ ଓ ବିଶଳ । ଏହି ଉତ୍କଳଙ୍କ ନାମାନୁଯାୟୀ ଏହି ରାଜ୍ୟର ନାମ ! ଅନ୍ତତଃ ଉତ୍କଳ ଆର୍ଯ୍ୟଙ୍କ ପ୍ରାଚୀନ ବାସସ୍ଥାନ । ଅନୁମାନ କରାଯାଏ ଆଧୁନିକ ମୟୂରଭଞ୍ଜ, ସମ୍ବଲପୁର ଓ ଢ଼େଙ୍କାନାଳ ଆଦି ଜିଲ୍ଲା ସେହି ପ୍ରାଚୀନ ଉତ୍କଳ ଅନ୍ତର୍ଗତ ଥିଲା ।

ନୂତନ ପ୍ରସ୍ତର ଯୁଗ ଶେଷ ପାଦ, ମାନବ ପ୍ରଗତିର ପରିଚାୟକ କୁରାଢ଼ୀ ଓ ବର୍ଚ୍ଛା, କର୍ତ୍ତନ ଓ ଛେଦନ ଅସ୍ତ୍ର ବ୍ୟବହାର ଆସେ ସାମ୍ନାକୁ । ତାମ୍ର ନିର୍ମିତ ଅସ୍ତ୍ର ମିଳେ ପାର୍ବତ୍ୟାଂଚଳରୁ, ତାମ୍ର ଯୁଗର ପ୍ରାରମ୍ଭ । ଛୋଟ ନାଗପୁର ଓ ମୟୂରଭଞ୍ଜ ଜିଲ୍ଲାରୁ ପ୍ରସ୍ତର ଅସ୍ତ୍ର ସହିତ ତାମ୍ର ହୋଇଛି ଆବିଷ୍କୃତ । ଓଡ଼ିଶା ଆଦିମାନବଙ୍କ ଭୂମି ପ୍ରମାଣିତ କରିଛି ସୁନ୍ଦରଗଡ଼ ପ୍ରାକୃତିକ ଗହ୍ୱର (ଗୁମ୍ଫା)ରୁ ପ୍ରାପ୍ତ ଗେରୁମାଟି (ଢାଉରଂଗ)ର ଆବିଷ୍କୃତ ଚିତ୍ର । ମଧ୍ୟ ପ୍ରଦେଶ ଅନ୍ତର୍ଗତ ରାୟଗଡ଼ ଓ ବିହାର ଅନ୍ତର୍ଗତ ଚକ୍ରଧର ପୁର (ସିଂହଭୂମି ଜିଲ୍ଲା)ରୁ ପ୍ରାପ୍ତ ଚିତ୍ରର ଏହା ସମସାମୟିକ ବୋଲି ପୁରାତତ୍ତ୍ୱବିଦ୍ ପରମାନନ୍ଦ ଆଚାର୍ଯ୍ୟ କରିଛନ୍ତି ଉଲ୍ଲେଖ ।

ସବୁ ଉପତ୍ୟକାରେ ବୈଦିକ ଯୁଗର ବିକାଶ ବେଳେ ଅଦ୍‌ଭୂତ ପରିବର୍ତ୍ତନର ଗୋଟିଏ ନୂତନ ସ୍ରୋତ ବ୍ୟାପିଛି ସମଗ୍ର ଭାରତ ଭୂଖଣ୍ଡ । ଆସିଛି ଲୌହ ଯୁଗ । ପ୍ରାଚୀନ ଓଡ଼ିଶାର ସୁବର୍ଣ୍ଣରେଖା ଓ ବ୍ରାହ୍ମଣୀ ନଦୀ ମଧ୍ୟବର୍ତ୍ତୀ ଅଞ୍ଚଳରେ ଥିଲା କେତୋଟି ଲୌହ ଓ ତାମ୍ରଖଣି । ଭୂମିପୁତ୍ର ଉଡ୍ରଙ୍କ ସହିତ ନିଃସନ୍ଦେହ ଏହା ଥିଲା ସମୃଦ୍ଧ ଆର୍ଯ୍ୟ ବାସଭୂମି । ପୁରାଣ ଓ କାହାଣୀରୁ ଆସେ ଯେଉଁ ଆର୍ଯ୍ୟ ସଭ୍ୟତାର ଚିତ୍ର, ତହିଁରେ କଳିଙ୍ଗ, ଉଡ୍ର ଓ



Source: Author, Digitized by PPRACHIN, SOA

ଉତ୍କଳ ଶୀର୍ଷକ ଭୌଗଳିକ ଶବ୍‌ଦ ତିନୋଟି ଏବେ ମଧ୍ୟ ଜାତିବାଚକ ଶବ୍‌ଦ ରୂପେ ରହିଚି ଜୀବିତ । ବୌଦ୍ଧ ଗ୍ରନ୍ଥରୁ ହେଉ ଅବଗତ, ବୁଦ୍ଧଦେବଙ୍କ ଗୋଟିଏ ଦନ୍ତ ଆସିଥିଲା କଳିଙ୍ଗ ଓ କଳିଙ୍ଗର ରାଜଧାନୀରେ ହୋଇଥିଲା ସ୍ଥାପିତ । ତେଣୁ ଦନ୍ତପୁର ଭାବେ ତାହା ନାମିତ । ଦନ୍ତପୁରର ଭୌଗୋଳିକ ଅବସ୍ଥିତି ପ୍ରମାଣିକ ଭାବେ ନିର୍ଣ୍ଣୟ କରି ହୁଏ ନାହିଁ କେଉଁଠି । ତେବେ ଅନେକ ଶ୍ରୀକ୍ଷେତ୍ର ପୁରୀକୁ କହୁଥିବା ବେଳେ, ବୁଦ୍ଧଦେବଙ୍କ ଦନ୍ତ ରତ୍ନଗିରିରୁ ପ୍ରାପ୍ତ ଓ ତାହା ଭୁବନେଶ୍ୱର ମିୟୁଜିୟମ୍ ନିଷିଦ୍ଧ ପ୍ରକୋଷ୍ଠରେ ସୁରକ୍ଷିତ । ଗୌତମ ବୁଦ୍ଧଙ୍କ ଜନ୍ମ ଖ୍ରୀ.ପୂ. ୫୬୩ ଏବଂ ନିର୍ବାଣ ଖ୍ରୀ. ପୂର୍ବ. ୪୮୩, ସେତେବେଳକୁ ଓଡ଼ିଶା ଏକ ସମୃଦ୍ଧ ରାଜ୍ୟ ତାଙ୍କ ଏଇ ଦନ୍ତ ସ୍ଥାପନ କଥା କରେ ସୂଚିତ ।

ମୟୂରଭଞ୍ଜ, ବାଲେଶ୍ୱର, କଟକ ଓ ପୁରୀ ଆଦି ସମୁଦ୍ର ତଟୀୟ ଜିଲ୍ଲାମାନଙ୍କରୁ ପୁରାତତ୍ତ୍ୱବିଦ୍ ପ୍ରାପ୍ତ ହୋଇଛନ୍ତି ପ୍ରଚୁର ସଂଖ୍ୟକ କୁଶାଣ ତାମ୍ର ମୁଦ୍ରା । ଗୁପ୍ତଯୁଗ ମୁଦ୍ରା, କୁମାର ଗୁପ୍ତଙ୍କ କିଛି ମିଳିଛି ଏବଂ ମିଳିଛି ବାଲେଶ୍ୱର ଅନ୍ତର୍ଗତ ଗଣ୍ଡିବେଢ଼ ଠାରୁ 'ଶୀନଳ' ଲିପି ଯୁକ୍ତ ମୁଦ୍ରା । କୁଶାଣ ମୁଦ୍ରାରେ ପ୍ରଥମେ ନଥିଲା କିଛି ଲିପି । ପରବର୍ତ୍ତୀ ମୁଦ୍ରା ଏକ ପାର୍ଶ୍ୱରେ ଲିଖିତ 'ଟଙ୍କା'ଏବଂ ଅନ୍ୟ ପାର୍ଶ୍ୱ ରଥ ସଦୃଶ ରହିଛି ତିନି ଚିହ୍ନ । ପ୍ରତ୍ନତତ୍ତ୍ୱବିଦ୍ T.D.M. Beglar ଲେଖିଛନ୍ତି, ମୟୂରଭଞ୍ଜ ବାମନଘାଟୀ ଅନ୍ତର୍ଗତ ରାୟରଙ୍ଗପୁରରୁ ମିଳିଛି କେତୋଟି ରୋମାନ୍ ସ୍ୱର୍ଣ୍ଣମୁଦ୍ରା । ରୋମ୍ ସମ୍ରାଟ କାଂଷ୍ଟେଣ୍ଟାଇନ୍ ଓ ଗୋର୍ଡ଼ିୟନ ସମ୍ରାଟଙ୍କ ଚିତ୍ର ଅଙ୍କିତ । ରୋମ୍‌ରେ ଗୋଡ଼ିୟନ୍ ସମ୍ରାଟଙ୍କ ସମୟ ୨୩୫ରୁ ୨୪୪ ଖ୍ରୀଷ୍ଟାବ୍ଦ ଏବଂ ଦୁଇ ଜଣ କାଂଷ୍ଟେଣ୍ଟାଇନ୍‌ଙ୍କ ଶାସନ ସମୟ ୩୨୩ରୁ ୩୫୩ ଏବଂ ୩୫୩ରୁ ୩୬୧ ଖ୍ରୀଷ୍ଟାବ୍ଦ । ଏହା ଆସିଲା କିପରି ଏଠାକୁ ? ଓଡ଼ିଶାର ନୌବାଣିଜ୍ୟ ଦ୍ୱାରା ବୋଲି ବେଗ୍‌ଲାରଙ୍କ ମତ । ପ୍ରସିଦ୍ଧ ତାମ୍ରଲିପି ବନ୍ଦର ପଥ ଦେଇ ପର୍ବତମାଳା ଘେର ରାୟରଂଗପୁର ଆସିଥିଲା ସେହିସ୍ୱର୍ଣ୍ଣ ଅର୍ଥ । ଷଷ୍ଠ-ସପ୍ତମ ଖ୍ରୀଷ୍ଟାବ୍ଦରୁ ଉତ୍କଳ ନୌବାଣିଜ୍ୟ ସମୃଦ୍ଧ । ଓଡ଼ିଶାର ନ ଥିଲା । ସ୍ୱତନ୍ତ୍ର ମୁଦ୍ରା । କିନ୍ତୁ ଗଙ୍ଗ ରାଜାଙ୍କ ସମୟର ସ୍ୱର୍ଣ୍ଣମୁଦ୍ରା କେଉଁ କେଉଁ ବଣରୁ ମିଳିଛି । ୧୮୩୫ ମସିହା ପର୍ଯ୍ୟନ୍ତ ମୋଗଲ ସମ୍ରାଟଙ୍କ ନାମରେ ଏଠାରେ ପ୍ରଚଳିତ ଥିଲା ମୁଦ୍ରା ।

ପ୍ରତ୍ନତତ୍ତ୍ୱର ଏକ ପ୍ରଧାନ ବିଭାଗ ଲିପିତତ୍ତ୍ୱ । ସମ୍ବଲପୁର ଅନ୍ତର୍ଗତ ବିକ୍ରମ ଖୋଲ ଶିଳାଲେଖ ଓ କଟକ ଅନ୍ତର୍ଗତ ନରାଜ ପାହାଡ଼ ଶିଳା ଲେଖ ଲିପି ଓଡ଼ିଶାର ପ୍ରାଚୀନତମ ଲିପି । ଦୁଇଟିରେ ସାମଞ୍ଜସ୍ୟ ରହିଛି ଓ କଟକ ଅନ୍ତର୍ଗତ ନରାଜ ପାହାଡ଼ ଶିଳାଲେଖ ସମୟ ନିରୂପଣ କରିବା ଓ ପାଠୋଦ୍ଧର ଅଦ୍ୟାବଧି ହୋଇପାରିନାହିଁ । Boghaz-koi ଲିପି ପରବର୍ତ୍ତୀ ସୃଷ୍ଟି (ଖ୍ରୀ.ପୂ.୨୦୦୦)ପୂର୍ବରୁ ବୋଲି ମନେ ହୁଏ । ବୋଘାଜ କୋଇ ଲିପିରୁ ବ୍ରାହ୍ମୀ ଲିପି ହୋଇଛି ବିକଶିତ । ପରବର୍ତ୍ତୀ ଲିପି ମୌର୍ଯ୍ୟ ସମ୍ରାଟ ଅଶୋକଙ୍କ ଧଉଳି ଓ



Source: Author, Digitized by PPRACHIN, SOA

ଗଞ୍ଜାମ ଜଉଗଡ଼ ଶିଳାଲେଖ । ୨୫୭ ଖ୍ରୀଷ୍ଟପୂର୍ବ ଲିଖିତ ଏହି ବ୍ରାହ୍ମୀ ଲିପି । ବ୍ରାହ୍ମୀଲିପି ସମଗ୍ର ଭାରତରେ ଥିଲା ମୌର୍ଯ୍ୟ କାଳରେ ପ୍ରଚଳିତ । ପରବର୍ତ୍ତୀ ବ୍ରାହ୍ମୀ ଲିପି ଖଣ୍ଡଗିରି ଓ ଉଦୟଗିରି ହାତୀଗୁମ୍ଫାରୁ ମିଳିଅଛି । ଗଣ୍ଡିବେଢ଼ରୁ ପ୍ରାପ୍ତ ପୁରୀକୁଶଣ ମୁଦ୍ରା ଲିପି ଏବଂ ୫୮୨ ଖ୍ରୀଷ୍ଟାବ୍ଦ ପଟିଆ କିଲ୍ଲା ତାମ୍ର ଶାସନ ଲିପି ଓଡ଼ିଆ ଲିପି ସଂସ୍କୃତିର ଐତିହାସିକ ଭିତ୍ତି । ଲିପିତତ୍ତ୍ୱର ଗୋଟିଏ ନିରୋଳା ସତ୍ୟ ଯେ ପୁରୁଷାନୁଯାୟୀ ଲେଖିଲା ବେଳେ ଏହା ହୋଇଥାଏ ପରିବର୍ତ୍ତିତ । ଏପରିକି ଦୁଇଜଣଙ୍କ ହସ୍ତଲିପି, ଏକ; ମାତ୍ର ଆକୃତି ହୋଇଥାଏ ଅଲଗାଅଲଗା । ପ୍ରତ୍ନ ଲିପିର ପରିବର୍ତ୍ତିତ ଆଜିର ଏହି ଗୋଲ ଲିପି ସ୍ୱାଭାବିକ ଏବଂ ପ୍ରାକୃତିକ ।

ଖ୍ରୀଷ୍ଟାବ୍ଦ ୬୫୦ରୁ ୯୫୦, ଭୌମବଂଶୀ ରାଜନ ବୃନ୍ଦଙ୍କ ଶାସନାଧୀନ ଥିଲା ଓଡ଼ିଶା । ଏହି ବଂଶର ମିଳିଛି କିଛି ତାମ୍ରପତ୍ର । ରାଣୀମାନଙ୍କ ମଧ୍ୟରେ ତ୍ରିଭୁବନ ମହାଦେବୀ ଓ ଦଣ୍ଡୀମହାଦେବୀଙ୍କ ମିଳଛି ତାମ୍ରପତ୍ର । ପୁନଶ୍ଚ ଭୌମବଂଶ ରାଜା ଶୁଭକର କେଶରୀ ସ୍ୱ ହସ୍ତ ଲିଖିତ 'ଅବଂତଂସକ' ନାମକ ଏକ ଗ୍ରନ୍ଥ ଚୀନ ରାଜାଙ୍କ ନିକଟକୁ 'ପ୍ରଜ୍ଞ' ନାମକ ଜନୈକ ବୌଦ୍ଧ ଭିକ୍ଷୁକଙ୍କ ହସ୍ତରେ କରିଥିଲେ ପ୍ରେରିତ । ଭୌମ ରାଜତ୍ୱ କାଳ ଉତ୍କଳୀୟ ନୌବାଣିଜ୍ୟର ଖୁବ୍ ପ୍ରସାର ସମୟ । ଭୌମବଂଶୀ ଥିଲେ ବୌଦ୍ଧ । ଆଧୁନିକ ଯାଜପୁର ଜିଲ୍ଲା ଅନ୍ତର୍ଗତ ରତ୍ନଗିରି, ଉଦୟଗିରି ଓ ଲଳିତ ଗିରି ସେମାନଙ୍କ କୀର୍ତ୍ତିକୁ ବହନ କରିଛି ।

ଭୌମ୍ୟବଂଶୀ ଶକ୍ତି ଦୁର୍ବଳ ହୋଇଛି, ଆସିଛନ୍ତି ଭଞ୍ଜ, ତୁଙ୍ଗ, ବରାହ, ସ୍ତମ୍ଭ ଆଦି ରାଜା । ସ୍ୱନାମରେ ପ୍ରଦାନ କରିଛନ୍ତି ତାମ୍ରପତ୍ର । ମୂର୍ତ୍ତି ଓ ମନ୍ଦିରମାନ ଗଢ଼ିଛନ୍ତି । ପ୍ରାୟ ୯୫୦ ଖ୍ରୀଷ୍ଟାବ୍ଦରୁ ୧୧୧୦ ପର୍ଯ୍ୟନ୍ତ ସୋମକୁଳୀ କେଶରୀ ବଂଶ, ମିଳିଛି ଏମାନଙ୍କ ତାମ୍ରପତ୍ର ଓ ଶିଳାଲେଖ । ଭୁବନେଶ୍ୱରସ୍ଥ ଲିଙ୍ଗରାଜ ମନ୍ଦିର ଓ ବ୍ରହ୍ମେଶ୍ୱର ମନ୍ଦିର ଏମାନଙ୍କ କୀର୍ତ୍ତି ଅନ୍ତର୍ଗତ । ୧୧୧୧ ଖ୍ରୀଷ୍ଟାବ୍ଦରୁ ୧୪୩୪ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଗଙ୍ଗବଂଶୀ ନରପତି ଶାସିତ । ତାମ୍ର ଓ ମନ୍ଦିର ଗାତ୍ରରେ ଖୋଦିତ ଶିଳାଲେଖ ଓଡିଆ ଆଦି ସାହିତ୍ୟର କ୍ରମ ବିକାଶକ । ଏହି ରାଜାମାନେ ଓଡ଼ିଶାର ସ୍ୱାଧୀନତା ଓ ସ୍ୱାତନ୍ତ୍ର୍ୟ ମୁସଲମାନ ଆକ୍ରମଣରୁ ରଖିଥିଲେ ସୁରକ୍ଷିତ ।

ଅନ୍ତିମ ଗଙ୍ଗ ନରପତିଙ୍କ ଜଣେ କର୍ମଚାରୀ ସୂର୍ଯ୍ୟବଂଶୀ କପିଳେଶ୍ୱର ଦେବ (କପିଳେନ୍ଦ୍ରଦେବ) ୧୪୩୫ ଖ୍ରୀଷ୍ଟାବ୍ଦରେ ଉତ୍କଳ ସିଂହାସନ କଲେ ଅଧିକାର । ଗଙ୍ଗାତଟରୁ କାବେରୀ ନଦୀ ତଟ ପର୍ଯ୍ୟନ୍ତ ସାମ୍ରାଜ୍ୟ କରନ୍ତି ବିସ୍ତୃତ । ଓଡ଼ିଆ ସାହିତ୍ୟ ଏହି ସମୟକୁ ଅତିକ୍ରମ କରୁଛି ଶୈଶବ । ସୂର୍ଯବଂଶୀ ପ୍ରତାପରୁଦ୍ର ଦେବ ପୁତ୍ରଙ୍କୁ ହତ୍ୟାକରି ଗୋବିନ୍ଦ ବିଦ୍ୟାଧର ନାମକ ରାଜକର୍ମଚାରୀ ୧୫୩୩ ଖ୍ରୀଷ୍ଟାବ୍ଦରୁ ୧୫୫୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଦଖଲ



Source: Author, Digitized by PPRACHIN, SOA

କଲେ ଶାସନ । ଏହି ବଂଶର ରାଜା ରାମଚନ୍ଦ୍ର ଦେବ ମୋଗଲ ରାଜତ୍ୱ ପ୍ରାରମ୍ଭ କାଳରେ ଖୋର୍ଦ୍ଧାଠାରେ ସ୍ଥାପନ କଲେ ଭୋଇବଂଶ । ୧୫୫୯ ରେ ଶେଷ ସ୍ୱାଧୀନ ରାଜା ମୁକୁନ୍ଦ ଦେବ ଥିଲେ ଚାଲୁକ୍ୟବଂଶୀ, ଆରୋହଣ କଲେ ସିଂହାସନ । ୧୫୬୮ ଖ୍ରୀଷ୍ଟାବ୍ଦ ବଂଗଳାର ଆଫଗାନମାନେ ମୁକୁନ୍ଦ ଦେବଙ୍କୁ କଲେ ହତ୍ୟା ଏବଂ ଓଡ଼ିଶା ହେଲା ସେମାନଙ୍କ ଅଧିକୃତ । ଏହି ସମୟକୁ ଲିପିତତ୍ତ୍ୱ ଠାରୁ ସାହିତ୍ୟ ହୋଇଛି ଅଧିକ ପରିପକ୍ୱ । ସାରାଳାଦାସଙ୍କ ପରି ମାଟିର ମହାକବିଙ୍କୁ ପାଇଛି ଉତ୍କଳ ।

ଆର୍ଯ୍ୟ-ଭାରତୀୟ ମାଗଧୀ ଗୋଷ୍ଠୀ ଅନ୍ତର୍ଭୁକ୍ତ ଭାଷା ଓଡ଼ିଆ । ଏହାର ଉତ୍ତରରେ ବଂଗଳା ଓ ଭୋଜପୁରୀ ଭାଷା ପ୍ରଚଳିତ ଥିବାବେଳେ ଦକ୍ଷିଣରେ ଦ୍ରାବିଡ଼ ପରିବାର ଅନ୍ତର୍ଭୁକ୍ତ ଭାଷା ତେଲୁଗୁ ପ୍ରଚଳିତ । ପଶ୍ଚିମରେ ବହୁ ଦୂର ପର୍ଯ୍ୟନ୍ତ ଓଡ଼ିଆ ଭାଷା ପରିବ୍ୟାପ୍ତ । ପଶ୍ଚିମ ହିନ୍ଦୀ ଉପଭାଷା ଓ ଓଡ଼ିଆ ଉପଭାଷା ମିଶ୍ରଣରେ 'ଛତିଶଗଡ଼ୀ' ଓ ବସ୍ତରର 'ଭତ୍ରୀ', ସେହିପରି ମରାଠୀ ଉପଭାଷା ମିଶ୍ରଣରେ 'ହଲବୀ' ଭାଷାରେ ପରିଣତ ହୋଇଛି । ଓଡ଼ିଆ ସାଧୁଭାଷା ମାଗଧୀ ପ୍ରାକୃତ ଓ ଅଶୋକଙ୍କ ଶିଳାଲେଖର ପ୍ରାଚ୍ୟ ଉପଭାଷା ମଝିରେ ପଶି ଶେଷକୁ ବୈଦିକ ଭାଷାରୁ ବ୍ୟୁତ୍ପନ୍ନ ହୋଇ ହୋଇଛି ଗଠିତ । ଅଶୋକଙ୍କ ଶିଳାଲେଖ ଭାଷା ଓ ବୈଦିକ ଭାଷା, ଏହି ଦୁହିଁଙ୍କ ମଝିରେ ପାଲି ଓ ସଂସ୍କୃତ ବିଦ୍ୟମାନ । ଏଣୁ ଓଡ଼ିଆ ଭାଷା ମଧ୍ୟ ପାଲି ସହିତ ସଂପୃକ୍ତ । ଡ. କୁଞ୍ଜବିହାରୀ ତ୍ରିପାଠୀ ଅଶୋକଙ୍କ ଶିଳାଲେଖ Eastern dialect ସହିତ ଗିରନାରରେ ବ୍ୟବହୃତ Western dialect ତୁଳନା ପ୍ରସଂଗରେ କରିଛନ୍ତି ଉଲ୍ଲେଖ, "ଅଶୋକଙ୍କ ଧଉଳୀ ଓ ଜଉଗଡ଼ ଶିଳାଲେଖ ଏବଂ ଅଧିକାଂଶ ସ୍ତମ୍ଭ-ଲେଖାମାନଙ୍କରେ ବ୍ୟବହୃତ ପ୍ରାଚ୍ୟ ଭାଷାର ରହିଛି କେତେକ ବିଶିଷ୍ଟ ଲକ୍ଷଣ । ଯେପରି 'ର' ସ୍ଥାନରେ 'ଲ' ବ୍ୟବହାର, ଅକାରାନ୍ତ ଶବ୍ଦର କର୍ତ୍ତୃକାରକ ଏକ ବଚନରେ 'ଏ' ବିଭକ୍ତି ଏବଂ ଅଧିକରଣ କାରକ ଏକ ବଚନରେ 'ଅସି' ବିଭକ୍ତି ପ୍ରୟୋଗ ତଥା ସଂଯୁକ୍ତ-ବ୍ୟଞ୍ଜନ ବର୍ଣ୍ଣମାନଙ୍କରେ ସମୀକରଣ । କିନ୍ତୁ ଗିରନାରରେ ବ୍ୟବହୃତ ପ୍ରତୀଚ୍ୟ ଭାଷାରେ 'ର' ବ୍ୟବହାର, ଏକାରାନ୍ତ ପୁଲିଙ୍ଗ ଶବ୍ଦର କର୍ତ୍ତୃକାରକ ଏକ ବଚନରେ 'ଓ' ବିଭକ୍ତି ଓ ଅଧିକରଣ କାରକ ଏକ ବଚନରେ 'ଅମ୍ହି' ବିଭକ୍ତି ପ୍ରୟୋଗ ତଥା ସଂଯୁକ୍ତ ବ୍ୟଂଜନମାନଙ୍କ ବ୍ୟବହାର (ଯଥା-ପ୍ର.ତ୍ର ଆଦି) ମଧ୍ୟ ଦୃଷ୍ଟିଗୋଚର ହୋଇଛି । ପ୍ରଥମୋକ୍ତ ଦୁଇ ଭାଷାଗତ ବୈଶିଷ୍ଟ୍ୟ ସଂସ୍କୃତ ନାଟ୍ୟ ସାହିତ୍ୟରେ ବ୍ୟବହୃତ ଏବଂ ବୈୟାକରଣ ମାନଙ୍କ ଦ୍ୱାରା ଉଲ୍ଲିଖିତ ମାଗଧୀ ପ୍ରାକୃତରେ ଦେଖାଯାଉଛି । ସୌରସେନୀପରି ଧଉଳୀ ଓ ଜଉଗଡ଼ ଭାଷାରେ ମଧ୍ୟ କେବଳ 'ସ' ର ବ୍ୟବହାର ମିଳିଛି । ନାଟ୍ୟ ସାହିତ୍ୟର ମାଗଧୀରେ କିନ୍ତୁ 'ଶ' ର ବ୍ୟବହାର ଘଟିଛି । ନାଟ୍ୟ ସାହିତ୍ୟ ମାଗଧୀରୁ କେତେକ ଲକ୍ଷଣ ମିଳେ ଯାହା ଧଉଳୀ ଓ ଜଉଗଡ଼ ଶିଳାଲେଖରେ ନାହିଁ । ଯଥା:-



Source: Author, Digitized by PPRACHIN, SOA

ଦ୍ୟ < ଯ୍ୟ (ଧଉଳୀ ଓ ଜଉଗଡ଼ରେ, ସଂସ୍କୃତ ଅଦ୍ୟ < ଅଜ)

ନ୍ୟ < ଞ୍ଞ (ଧଉଳୀ ଓ ଜଉଗଡ଼ରେ , ଅନ୍ୟ-ଅନ୍ନ)

ଶ୍ଚ ପ୍ରୟୋଗ ଧଉଳୀ ଓ ଜଗଡ଼ରେ 'ଛ' ।

ସଂଯୁକ୍ତ ବ୍ୟଂଜନର ପ୍ରାରମ୍ଭରେ 'ସ'ର ସଂରକ୍ଷଣ ଯଥା-ହସ୍ତେ, ସଂସ୍କୃତରେ 'ହସ୍ତଃ' । ଗିରନାରରେ ଏହି ସ୍ଥାନରେ ଅଛି 'ଅସ୍ତି' ପ୍ରୟୋଗ, ମାତ୍ର ଏହା ଧଉଳୀ କି ଜଉଗଡ଼ରେ ନାହିଁ । ଜୈନ ଧର୍ମଶାସ୍ତ୍ରୀୟ ଅର୍ଦ୍ଧ ମାଗଧୀ ସହିତ ଧଉଳୀ ଓ ଜଉଗଡ଼ ପ୍ରାଚ୍ୟ ଭାଷାର ନାହିଁ ଐକ୍ୟ ।"

ନାଟକରେ ବ୍ୟବହୃତ ସାହିତ୍ୟିକ ମାଗଧୀର ଉପରୋକ୍ତ ତ୍ରିଲକ୍ଷଣ, 'ର' ସ୍ଥାନରେ 'ଲ', 'ଷ' ଓ 'ସ' ସ୍ଥାନରେ 'ଶ'ର ବ୍ୟବହାର ଓ ଅକାରାନ୍ତ ପୁଲିଙ୍ଗ ଶବ୍ଦର କର୍ତ୍ତୃକାରକ ଏକ ବଚନରେ 'ଏ' ର ପ୍ରୟୋଗ ହୁଏ ଦୃଷ୍ଟିଗୋଚର । ଡକ୍ଟର ତ୍ରିପାଠୀ ଏହାର ଗୋଟିଏ ଉଦାହରଣ, ବିହାର ଯୋଗୀ ମରା ଗୁମ୍ଫା 'ସୁତନୁକା' .ଶିଳାଲେଖରୁ ହୁଏ ଦୃଷ୍ଟିଗୋଚର ବୋଲି କରିଛନ୍ତି ଉଲ୍ଲେଖ । ସେହି ଶିଳାଲେଖଟି – 'ସୁତନୁକା ନାମ ଦେବଦାସୀକ୍ୟ ତଂ କାମୟିଥ ବାଳା ନାଚସାୟଦେବ ଦିନ୍ନେ ନାମ ଲୁପଦ କଥିଛୋ' ଏହା ମାଗଧୀ ଓ ମୌର୍ଯ୍ୟ କୀର୍ତ୍ତି । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ ପାଖାପାଖି ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖ ଭାଷା ଧଉଳୀ ଓ ଜଉଗଡ଼ରେ ବ୍ୟବହୃତ ପ୍ରାଚ୍ୟ ଭାଷାର ନୁହେଁ ପରିଣତି, ଏହା ପାଲି ସଦୃଶ ।

ଖାରବେଳଙ୍କ ଲେଖରେ ରହିଛି ଅ, ଆ, ଇ, ଈ, ଉ, ଊ, ଏ, ଐ ବ୍ୟବହାର । 'ଏରେନ' ଶବ୍ଦର ବୈକଳ୍ପିକ ପାଠରେ 'ଏ' ଥରୁଟିଏ ଦେଖା ଯାଇଛି । ପଦରେ କେଉଁଠି କେଉଁଠି ସଂସ୍କୃତ' 'ର' ଓ କେଉଁଠି 'ଅ' କେଉଁଠି 'ଇ' ଓ ଅତ୍ୟନ୍ତ ବିରଳ 'ଉ' (ଯଥା- 'ବୃକ୍ଷ' ହୋଇଚି 'ରଖ')ର ପ୍ରୟୋଗ । କ, ଖ, ଗ, ଘ, ଚ, ଛ, ଜ, ଟ, ଠ, ଡ, ତ, ଥ, ଦ, ଧ, ପ, ବ, ଭ, ପ୍ରଭୃତି ବ୍ୟଞ୍ଜନ ବର୍ଣ୍ଣଙ୍କ ହୋଇଛି ପ୍ରୟୋଗ । ପୁନଶ୍ଚ ହୁଏ ଦୃଷ୍ଟି ଗୋଚର ଅନୁନାସିକ -ଣ, ନ, ମ ଓ ଅନୁସ୍ୱାର । ଅନ୍ତସ୍ଥ-ଯ, ର, ଳ, ବ, ହ ଏବଂଉଷ୍ମ ବର୍ଣ୍ଣ କେବଳ 'ସ' ! 'ଶ' ଓ 'ଷ' ସ୍ଥାନରେ ମଧ୍ୟ । ଜୈନ ପ୍ରାକୃତ ପଦରେ ଅନ୍ତିମ ଅକ୍ଷର ଓ ମଝିରେ 'ଓ' ସ୍ଥାନରେ 'ଏ' କେଉଁଠି କେଉଁଠି ହୋଇଛି । ଖାରବେଳଙ୍କ ଲେଖ ପାଲିରେ କୌଣସି ଠାରେ 'ଓ' ସ୍ଥାନରେ 'ଏ'ର ପ୍ରୟୋଗ ନାହିଁ ।ପାଲି ଓ ଅର୍ଦ୍ଧମାଗଧୀରେ ସଂସ୍କୃତ 'ର' ସ୍ଥାନରେ 'ଲ' ନ ହେବା ପ୍ରବୃତ୍ତି ସହିତ ଖାରବେଳଙ୍କ ଲେଖର ରହିଛି ସାମଂଜସ୍ୟ । 'ନ' କୁ 'ଣ'ରେ ପରିବର୍ତ୍ତନ ନକରିବାର ଯେଉଁ ପ୍ରଧାନ ପ୍ରବୃତ୍ତି ପାଲିରେ ଦେଖାଯାଏ ତାହା ଖାରବେଳଙ୍କ ଲେଖ ଭାଷାରେ ଅଛି କିନ୍ତୁ ଅର୍ଦ୍ଧମାଗଧୀରେ ନାହିଁ । ଖାରବେଳଙ୍କ ଲେଖର ଭାଷା କେତେକ ଦୃଷ୍ଟିରୁ ଅର୍ଦ୍ଧମାଗଧୀ ସହିତ ସାମ୍ୟ ଓ ପାଲି ଠାରୁ ବୈଷମ୍ୟ ହୁଏ ଦୃଷ୍ଟିଗୋଚର ।



Source: Author, Digitized by PPRACHIN, SOA

ନିଜ ପ୍ରବନ୍ଧର ପାଦଟୀକାରେ ଡ. ତ୍ରିପାଠୀ ସୂଚିତ କରିଛନ୍ତି ଅଶୋକଙ୍କ ଧଉଳି-ଜଉଗଡ଼ ଲେଖର କେତେକ ଶବ୍ଦ ଓ ଧାତୁ (Root) ଆଜି ମଧ୍ୟ ପୂର୍ବପରି ତଥା କିଛି ପରିବର୍ତ୍ତିତ ହୋଇ ଓଡ଼ିଆରେ ବ୍ୟବହୃତ ହେଉଅଛି । ଯଥା- 'କିଛି' (Some), ସଂସ୍କୃତ-କିଂଚିତ୍ । 'ତିନି=ତିନି । 'ନତିପନତି'= ନାତି ବା ପଣନାତି, ସଂସ୍କୃତ-ନପ୍ତୃ ପ୍ରନପ୍ତୃ, 'ମହାଲକେ' = ମହାଲିକେ (A surname) ଚ ଘ୍= ଚାହଁ (Desire) ପଭୃତି ।

ଅକାରାନ୍ତ ଶବ୍‌ଦର କର୍ତ୍ତୃକାରକ ଏକ ବଚନରେ 'ଏ' ବିଭକ୍ତିର ପ୍ରୟୋଗ ଯାହା ଅଶୋକଙ୍କ ଲେଖ ଓ ନାଟ୍ୟ ସାହିତ୍ୟର ମାଗଧୀ ପ୍ରାକୃତରେ ଦେଖାଯାଉଛି । ଆଧୁନିକ ଓଡ଼ିଆ ଭାଷାର କେତେକ ସ୍ଥାନ ତାହା ପ୍ରାପ୍ତ ହେଉଛି । ଯେମିତି ଯେ, ସେ, ଜଣେ, ଦଣ୍ଡେ, (ଏକ କ୍ଷଣ), ଟଙ୍କେ (ଏକ ଟଙ୍କା), ହାତେ, ଗଛେ, (ଗୋଟିଏ ଗଛ) ପ୍ରଭୃତି । ଆଧୁନିକ ଓଡ଼ିଆରେ 'ର' ଓ 'ଲ' ଦୁହିଁଙ୍କ ବ୍ୟବହାର ଅଛି । 'ସ' ର ଉଚ୍ଚାରଣ ଏକ ପ୍ରକାର କିନ୍ତୁ ଲେଖିବା ସମୟରେ ସଂସ୍କୃତ ବର୍ଣ୍ଣମାଳା ଅନୁଯାୟୀ 'ଶ' 'ଷ' ଓ 'ସ'ର କରାଯାଏ ବ୍ୟବହାର । ଜଉଗଡ଼ ଓ ଧଉଳୀ ଭାଷାରେ ଅଧିକରଣ କାରକ ଏକ ବଚନରେ 'ଅସି' ପ୍ରତ୍ୟୟ ଥିଲା କିନ୍ତୁ ଆଧୁନିକ ଓଡ଼ିଆରେ ବ୍ୟବହୃତ 'ଯହିଁ', 'ତହିଁ', 'କାହିଁ', ରେ 'ହିଁ' ବିଭକ୍ତି ତଥା ପ୍ରତ୍ୟୟର ହୁଏ ବ୍ୟବହାର । ଅନୁମାନ କରାଯାଏ କୃଷ୍ଣାଚାର୍ଯ୍ୟଙ୍କ ଚର୍ଯ୍ୟାପଦରେ ସପ୍ତମୀ ଏକ ବଚନର 'ହି' ପ୍ରୟୋଗ (ଚର୍ଯ୍ୟା ୭/୫) 'ଅସି'ରୁ ଏହା ଆସିଅଛି । ଏହି ଦୃଷ୍ଟାନ୍ତକୁ ଆଧାର କରି ଡ଼ ତ୍ରିପାଠୀ ମତ ଦିଅନ୍ତି, ଓଡ଼ିଆ ଭାଷା ମାଗଧୀ ପ୍ରାକୃତ ଓ ମାଗଧୀ ଅପଭ୍ରଂଶରୁ ବିକଶିତ ହୋଇ ଅଛି । ପୁନଶ୍ଚ ତାଙ୍କର ଅନୁମାନ ଏହା ଉପରେ ଅର୍ଦ୍ଧମାଗଧୀର ମଧ୍ୟ ପ୍ରଭାବ ପଡ଼ିଅଛି ।

୧୯୦୧ ମସିହା, ହର ପ୍ରସାଦ ଶାସ୍ତ୍ରୀ 'ବୌଦ୍ଧଗାନ ଓ ଦୋହା' ଶୀର୍ଷକ ନେପାଳରୁ ଖଣ୍ଡିଏ ପ୍ରାଚୀନ ପୋଥି ପ୍ରାପ୍ତ ହୁଅନ୍ତି । ୧୯୧୩ରେ ତାହାର ସଂପାଦନା କରି କରନ୍ତି ପ୍ରକାଶ । ତାହାର ଭାଷା ପ୍ରଧାନ ରୂପରେ ମାଗଧୀ ଅପଭ୍ରଂଶ । ମାଗଧୀ ପ୍ରାକୃତ ଯେଉଁ ଯେଉଁ ଭାଷାଗୁଡ଼ିକ ଉତ୍ପତ୍ତି ମୂଳରେ ବିଦ୍ୟମାନ ସେମାନେ ଦାବୀ କଲେ ଏହା ସେମାନଙ୍କ ଭାଷାରେ ଲିଖିତ । ସେହି ସହଜିଆ ସାଧକ ଓଡ଼ିଆ, ବଂଗାଳୀ, ମୈଥିଳୀ ଓ ଆସାମ ଅଧିବାସୀ ହୋଇ ପାରନ୍ତି । ଏହାର ଦ୍ୱିତୀୟ ସଂସ୍କରଣ, ଶାସ୍ତ୍ରୀ ମହାଶୟ ଉଲ୍ଲେଖ କରିଛନ୍ତି ଚୌରାଶୀ ନାଥ ବା ସିଦ୍ଧଙ୍କ ତାଲିକା, ତହିଁରେ ପଞ୍ଚସ୍ତରୀ ଜଣଙ୍କୁ କରିଛନ୍ତି ଚିହ୍ନଟ । ସେମାନଙ୍କ ମଧ୍ୟରେ ଗୋରଖ ନାଥ, ମୀନନାଥ, ଚୌରାଙ୍ଗୀ ନାଥ, ଶବର ନାଥ ଓ ଜଳନ୍ଧର ନାଥଙ୍କ ନାମ ଉଲ୍ଲେଖ ଅମରକୋଷ ନାମକ ପ୍ରାଚୀନ ଓଡ଼ିଆ ତାଳପତ୍ର ପୋଥିସ୍ଥ ପ୍ରଥମ ଅଧ୍ୟାୟ ପ୍ରାରମ୍ଭରୁ ମିଳେ । ଲୁଇପାଙ୍କ ନାମ ଲୋହିଦାସ । 'ଶୂନ୍ୟ ସଂହିତା'ରେ ୧୫-୧୬ଶ ଶତକରେ ଅଚ୍ୟୁତାନନ୍ଦ କରିଛନ୍ତି ଉଲ୍ଲେଖ, 'ଲୋହିଦାସ ମଠ କରିଥାନ୍ତି ଏଠାରେ । ଲୟ କରିଥାନ୍ତି ନିରାକାର ଧ୍ୟାନପରେ, ଏଠାରେ' ।



Source: Author, Digitized by PPRACHIN, SOA

ହର ପ୍ରସାଦ ଶାସ୍ତ୍ରୀ ଏହାର ଭୂମିକାରେ ସ୍ୱୀକାର କରିଛନ୍ତି, 'କେତେକ ପଦକର୍ତ୍ତା ଓ ଦୋହାକାର ଓଡ଼ିଶା ସହିତ ଥିଲେ ସଂପୃକ୍ତ । 'ମୟୂରଭଞ୍ଜରେ ତାହାଙ୍କ (ଲୁଇପା ଙ୍କ) ପୂଜା ହେଉଅଛି ।' (ବୌଦ୍ଧଗାନ ଓ ଦୋହା, ଭୂମିକା ପୃଷ୍ଠା ୧୫) । ବଂଗଳା ପଦରେ ଯେଉଁଠି କ୍ରିୟା ପରେ ରହେ 'ଲ' ସେଇଠି ଏଠାରେ ରହିଛି 'ଡ' । ଯେମିତି ବଂଗଳା 'ଗାହିଲ', ଏଠାରେ 'ଗାଇଡ', ଅତଃ ଏହାକୁ ଓଡ଼ିଆ ପଦ ବୋଲି ମାନୁଛି । ତଥ୍ୟଟିକୁ ଡ. କରୁଣାକର କର ପ୍ରାଞ୍ଜଳ ଭାବେ 'ସିଦ୍ଧଚାର୍ଯ୍ୟଙ୍କ ପରିଚୟ' ଅଧ୍ୟାୟ (ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ, ପୃଷ୍ଠା ୨୬-୨୭)ରେ କରିଛନ୍ତି ଉଲ୍ଲେଖ-ଋଗ୍‌ବେଦରେ ଦୁଇ ସ୍ୱର ମଧ୍ୟରେ 'ଡ' ଥିଲେ ତାହା 'ଳ' ହୋଇଥାଏ; ଯଥା -ଅଗ୍ନିମୀଳେ ପୁରୋହିତଂ । ଓଡ଼ିଆ ଭାଷାରେ ସେହି ବୈଦିକ ସଂସ୍କୃତର ଚିହ୍ନ 'ଳ' ବୋଲି ଅଧିକ ଅକ୍ଷରଟିଏ ରହିଅଛି । ଓଡ଼ିଆ 'ଳ' ଅକ୍ଷରକୁ ଅନ୍ୟ ଭାଷାଭାଷୀମାନେ 'ଡ' ବୋଲି ଉଚ୍ଚାରଣ କରନ୍ତି । ଚାଉଳ=ଚାଉଡ୍, ଶୁକ୍ଳ=ଶୁକଳ (ଓଡ଼ିଆ)=ଶୁକଡ । କୁକ୍‌କୁରୀପାଙ୍କ 'ଗାଇଲ' ହୋଇଛି 'ଗାଇଡ' । 'ଳ' ସ୍ଥାନରେ 'ଡ' ପ୍ରୟୋଗ ବୈଶିଷ୍ଟ୍ୟକୁ ଲକ୍ଷ୍ୟ କରି ହର ପ୍ରସାଦ ଶାସ୍ତ୍ରୀ କୁକ୍‌କୁରୀପା ଓ ସବରୀ ପାଙ୍କ କବିତା ଓଡ଼ିଆ ବୋଲି ଗ୍ରହଣ କରିଛନ୍ତି ।

ସବରୀପାଙ୍କ 'ତଇଲା' ପଦ ବଙ୍ଗଭାଷାରେ ନାହିଁ ଏବଂ ଏହା ଅଳ୍ପ ଜଙ୍ଗଲିଆ ପାହାଡ଼ ତଳିଆ ଜମି ଅର୍ଥରେ ଓଡ଼ିଆ ଭାଷାରେ ପ୍ରଚଳିତ । ସେହିଭଳି ଓଡ଼ିଆରେ ଦ୍ୱିତୀୟ ବିଭକ୍ତି ବହୁବଚନରେ 'ନ୍ତ' ପ୍ରତ୍ୟୟ, 'ଗଅଣତ ଲାଗେଲୀ'= 'ଗଗନନ୍ତ ଲାଗିଲା' । 'ଇ' ଓ 'ଇଣ' ପ୍ରତ୍ୟୟ ଖାଇ, ପୋହାଇ, ପରହିଣ ପ୍ରଭୃତି ସବରୀପାଙ୍କ ବ୍ୟବହାର ସୂଚିତ କରେ ଚର୍ଯ୍ୟାଗୀତ ପ୍ରତ୍ନଓଡ଼ିଆ ସ୍ୱରୂପ । ଚଯ୍ୟାର ଧ୍ୱନିତତ୍ତ୍ୱ (Phonology), ପଦ ଗଠନରୀତି (Morphology) ଏବଂ ଶବ୍‌ଦତତ୍ତ୍ୱ (Vocables)କୁ ନିରୀକ୍ଷଣ କଲେ ଅତି ସହଜରେ ହୃଦବୋଧ୍ୟ ହୁଏ କେବଳ ସବରୀପା ନୁହନ୍ତି ଅନେକ ସିଦ୍ଧ ଓଡ଼ିଆ (ଦ୍ରଷ୍ଟବ୍ୟ ଗ୍ରନ୍ଥ 'ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ'/ ଡ. କରୁଣାକର କର, ଓଡ଼ଆ ସାହିତ୍ୟ ଏକାଡ଼େମୀ ପ୍ରକାଶିତ, ୧୯୮୯, ଦ୍ୱିତୀୟ ସଂସ୍କରଣ ।) ଏହି ଧାର୍ମିକ ଧାରା 'ବ୍ରଜଯୋଗିନୀଉପାସନା' । ଏହାର ଉତ୍ପତ୍ତି ସ୍ଥଳ ଓଡିୟାନ୍ ବା ଓଡ଼ିଶା । ଆର୍.ସି. ମଜୁମଦାରଙ୍କ ଇତିହାସରୁ ଡ. କର ଉଲ୍ଲେଖ କରିଛନ୍ତି, ଆଦିସିଦ୍ଧ ସହରଙ୍କ ତିନିଜଣ ଶିଷ୍ୟଥିଲେ ବୁଦ୍ଧଜ୍ଞାନ, ନାଗାର୍ଜୁନ ଓ ଶବରପା । B.Stan Tangyur Cordier ଲେଖିଛନ୍ତି, ଏହି ଶବରପା ଲୁଇପାଙ୍କ ଗୁରୁ ଥିଲେ । ଲାମା ତାରାନାଥଙ୍କ ମତ ଦୁଇ ଜଣ ଥିଲେ ସରହ । ପ୍ରଥମ ରାହୁଳ ଭଦ୍ର ଏବଂ ଦ୍ୱିତୀୟ ସବରୀପାଦ । (ଶରହସ୍ତ ହେତୁ ତାହାଙ୍କୁ କହନ୍ତି ସରହ) । ଦୁହେଁ ଗୁରୁଶିଷ୍ୟ । ଶିଷ୍ୟ ଗୁରୁଙ୍କ ନାମରେ ଥିଲେ ପରିଚିତ ଏବଂ ଦୁହେଁ ଯାକ ଓଡ଼ିଶା ଜନ୍ମିତ (Taranath's Account, the Journal of the Dept. of W. History, Cal Uni. Vol. I , Page 375)। ଶିଷ୍ୟ ସରହ ସବରୀପାଙ୍କ



Source: Author, Digitized by PPRACHIN, SOA

ଅନେକ ସଂସ୍କୃତ ଗ୍ରନ୍ଥ ମଧ୍ୟରୁ ଏକ 'ବ୍ରଜ ଯୋଗିନୀ ସାଧନ' । ତହିଁରେ ବର୍ଣ୍ଣିତ-ଓଡ଼ିୟାନ ତଥା ଓଡ଼ିଶାର ରାଜା ଇନ୍ଦ୍ରଭୂତି ପ୍ରଥମେ ବଜ୍ରଯୋଗିନୀ ଉପାସନାର କରିଥିଲେ ପ୍ରଚାର । ତାହାଙ୍କର ଭଗ୍ନୀ ଲକ୍ଷ୍ମୀଙ୍କରା ବିଶେଷ ଭାବରେ ତାହାଙ୍କୁ କରିଥିଲେ ସାହାଯ୍ୟ । ସବରୀପା ଥିଲେ ସେହି ଦଳର ସାଧକ ଓ ସାଧନାର ପ୍ରସାରକ ତଥା ପ୍ରଚାରକ । ତାଙ୍କ ପ୍ରଚାରର ମାଧ୍ୟମ ଏହି ଗାନ ଓ ଦୋହା ବା ଚର୍ଯାପଦ ! ବୌଦ୍ଧଗାନ ଓ ଦୋହାର ମୁଖବନ୍ଧ, ହରପ୍ରସାଦ ଶାସ୍ତ୍ରୀଙ୍କ ସ୍ୱଷ୍ଟ ବୟାନ- 'କୃଷ୍ଣଚାର୍ଯ୍ୟ ତେଗୁରେ ମନ ଜୟ ଗାୟ ତାହା କେ ଭାରତବାସୀ ବଲିୟା ଗିୟା ଛେ । କେବଲ ଏକ ଜାୟେଗାୟ ଲେଖା- ତିନି ବ୍ରାହ୍ମଣ ଓଡ଼ିଶା ହଇତେ ଆଗତ, ସେ ଓ ଆବାର ତର୍କମାକାର ମହାପଣ୍ଡିତ କୃଷ୍ଣ, ତିନି ଗ୍ରନ୍ଥକାର ନହେକ ।' ପୃଷ୍ଠା ୨୪- 'ଓଡ଼ିଶାର ରାଜା ଇନ୍ଦ୍ରଭୂତି ବଜ୍ରଯୋଗିନୀ ଉପାସନା ପ୍ରଚାର କରେନ, ତାହାର କନ୍ୟା ଲକ୍ଷ୍ମୀକଂରା ଏଇ ବିଷୟରେ ତାହାକେ ବିଶେଷ ସହାୟତା କରିୟା ଛିଲେନ ଏବଂ ସଂସ୍କୃତେ ଅନକେ ପୁସ୍ତକ ଲିଖିୟା ଛିଲେନ ।' ୩୪ ପୃଷ୍ଠା- 'ଓଡ଼ିଶାନିବାସୀ ତେଲୀ ପେର ଏକଖାନୀ ଦୋହାକୋଷ ଛିଲ' । ପୁନଶ୍ଚ ୨୯ ପୃଷ୍ଠାରେ ରହିଛି ଗୋଟିଏ ପଂକ୍ତି- 'ଶବରୀଶ୍ୱର ବା ସବର ସେହି ଦଲେଇର ଲୋକ ଛିଲେନ ।' 'ଶବର' ଓଡ଼ିଶାର ଗୋଟିଏ ମୂଳ ବନଜାତି ।

ବୌଦ୍ଧଗାନ ଓ ଦୋହାରୁ ଆଧୁନିକ ଓଡ଼ିଆ ଭାଷାର ଉତ୍ପତ୍ତି, ଅକାଟ୍ୟ ଏହି ବାକ୍ୟଟି । ଓଡ଼ିଆ ଭାଷାର ପୁରାତତ୍ତ୍ୱ ନାଥ -ସିଦ୍ଧଙ୍କ 'ଚର୍ଯ୍ୟାପଦ'ରେ ଆରକ୍ଷିତ । ଡ. ତ୍ରିପାଠୀ ଲେଖିଛନ୍ତି- ଓଡ଼ିଆ ଭାଷାର ଦ୍ୱିତୀୟ ଏକ ବଚନର ବିଶିଷ୍ଟ ଅନୁସର୍ଗ (post position) 'କୁ' ଓ ଷଷ୍ଠୀ ଏକବଚନର ଅନୁସର୍ଗ 'ର' କ୍ରମଶଃ କୃଷ୍ଣାଚାର୍ଯ୍ୟ ଓ ଶବରୀ ପାଦଙ୍କ ଚର୍ଯ୍ୟା-ଗାନରେ ମିଳନ୍ତି । ଯଥା-ଅବିଦ୍ୟା କରିକୁଁ ଦମ ଅକିଲେସେ । ୯/୫ ଆଧୁନିକ ଓଡ଼ିଆରେ ହୁଏ- ଅବିଦ୍ୟା କରିକୁ ଦମ ଅକିଲେସେ । ତଇଲା ବାଡ଼ିର ପାସଁର ଜୋହ୍ନାବାଡ଼ୀ ଉଏଲା । ୫୦ /୪ । ଆଧୁନିକ ଓଡ଼ିଆରେ ହୁଏ-ତଇଲା ବାଡ଼ିର ପାଶରେ ଉଁଇଲା ।

ଚର୍ଯ୍ୟାପଦ ଭାଷା ଆଧୁନିକ ଓଡ଼ିଆଭାଷାର ଅତି ନିକଟତମ ବା ଘନିଷ୍ଠପୂର୍ଣ୍ଣ । ଏହା ଓଡ଼ିଆ ଲେଖକଙ୍କ ସମକାଳ ଭାଷା ପ୍ରତି ଏକ ଅତୁଳନୀୟ ଅବଦାନ । ଲୁଇପାଦଙ୍କ ଦୁଇଟି ଧାଡ଼ି-'କାଆ ତରୁବର ପାଞ୍ଚ ବି ଡାଳ । ଚଞ୍ଚଳ ଚିଏ ପଇଠ କାଳ ।' ଆଧୁନିକ ଓଡ଼ିଆ - 'କାୟା ତରବର ପଞ୍ଚ ବି ଡାଳ । ଚଞ୍ଚଳ ଚିତ୍ତେ ପଇଠ କାଳ ।

କାହ୍ନୁପାଦଙ୍କ ଦୁଇଟି ଧାଡ଼ି- 'ନଗର ବାହାରିରେ ଡୋମ୍ବି ତୋହୋରି କୁଡ଼ିଆ । ଛୋଇଁ ଛୋଇ ଜାଇସୋ ବ୍ରାହ୍ମଣ ନାଡ଼ିଆ' । ଆଧୁନିକ ଓଡ଼ିଆ- ନଗର ବାହିରିରେ ଡୋମ୍ବି ତୋହାର କୁଡ଼ିଆ । ଛୁଇଁ ଛୁଇଁ ଯାଉ ସେ ବ୍ରାହ୍ମଣ ନାଳିଆ । 'ନାଳିଆ' ବା 'ନାଳୁଆ' ଗୋଟିଏ କଞ୍ଚା ଓଡ଼ିଆ ପଦ, ଯାହାର ଅର୍ଥ ଲମ୍ପଟ ବା ଲାଳସାସିକ୍ତ ପୁରୁଷ । ଚର୍ଯ୍ୟାପଦରେ ବ୍ୟବହୃତ ଅନ୍ୟ ଗୋଟିଏ ପଦ 'ରାଉତ', ଏହା ଅନ୍ୟ କୌଣସି ଭାଷାରେ ନାହିଁ ।



Source: Author, Digitized by PPRACHIN, SOA

ଅନେକ ତଦ୍‌ଭବ, ଦେଶଜ ଓ ଗ୍ରାମ୍ୟ ଶବ୍‌ଦ ଆଧୁନିକ ଓଡ଼ିଆ ବ୍ୟତୀତ ଅନ୍ୟ କେଉଁ ଭାଷାରୁ ମିଳିବା ଅସମ୍ଭବ ।

ଉପରୋକ୍ତ ଦୃଷ୍ଟାନ୍ତ ପ୍ରମାଣିତ କରେ ପ୍ରାଚୀନ ଓଡ଼ିଆ ଭାଷାର ପୂର୍ବରୂପ କେତେକ ଚର୍ଯ୍ୟାଗୀତରେ ବିଦ୍ୟମାନ । ଚର୍ଯ୍ୟାର ରଚନା କାଳ ଅଷ୍ଟମ-ନବ ଶତାବ୍ଦୀ । ୧୦୫୧ ଖ୍ରୀଷ୍ଟାବ୍ଦ ଖୋଦେଇ ଚିକାକୋଲର ଉରଜୋ ଗ୍ରାମର ଶିଳାଲେଖ । ଗଙ୍ଗବଂଶୀ ସମ୍ରାଟ ଚୋଡ଼ଗଙ୍ଗ ଦେବଙ୍କ ପିତାମହଙ୍କ ଦ୍ୱାରା ହୋଇଥିଲା ଏହି ଲେଖ । ମଡର୍ଣ୍ଣ ଇଣ୍ଡୋ ଆର୍ଯନ ଲାଙ୍ଗୁଏଜ୍‌ର ପ୍ରାଚୀନତମ । ଏହାର ୫ମରୁ ୧୦ମ ପର୍ଯ୍ୟନ୍ତ ପଂକ୍ତି-ଶ୍ରୀମଦ୍ ଅନଂତ ବର୍ମ୍ମଦେବ ବିଜୟ ରାଜ୍ୟ ସମ୍ବସର ୧୫ ତୁଳା ମାସ ଶୁକ୍ଳ ପକ୍ଷ ପଞ୍ଚମୀ ସନିବାର- (ଶନିବାର) ଯୁରୁଜ ମେଳାଣ ଦୟ କରିଲା ପଟ୍ଟସ୍ଥିତ ।

ଔଡ୍ରୀ ବିଭାଷାର ସ୍ୱରୂପ ଷୋଡ଼ଶ ଶତକରେ ମାର୍କଣ୍ଡେୟ କବୀନ୍ଦ୍ର ତାଙ୍କ ରଚିତ 'ପ୍ରାକୃତ ସର୍ବସ୍ୱ'ରେ କରିଛନ୍ତି ଉଦ୍ଧୃତ-'ଦେବ ଜସୋଆ-ଣନ୍ଦଂଣ କରମଇ କରୁଣା ଲେସ/ ଏତିକେ ଜମଉ ଅଛଇ ପିଟଇ ସଧକିଳେସ ।'

ଓଡ଼ିଆ ବର୍ଣ୍ଣମାଳାର ରହିଛି ବୈଶିଷ୍ଟ୍ୟ । ହ୍ରସ୍ୱ, ଦୀର୍ଘ ଓ ସନ୍ଧ୍ୟକ୍ଷର ସ୍ୱରବର୍ଣ୍ଣ ପରେ ଆସେ ବ୍ୟଞ୍ଜନ ବର୍ଣ୍ଣ । ଅଳ୍ପପ୍ରାଣ, ମହାପ୍ରାଣ, ସଘୋଷଅଳ୍ପ ପ୍ରାଣ, ସଘୋଷ ମହାପ୍ରାଣ ବ୍ୟତୀତ ରହିଛି ଚାରୋଟି ଅନୁନାସିକ ବର୍ଣ୍ଣ, ଙ, ଣ, ନ ଏବଂ ମ । ସେମାନଙ୍କ ମଧ୍ୟରେ କଣ୍ଠ୍ୟ ବର୍ଣ୍ଣ ପାଞ୍ଚ, ତାଲବ୍ୟ ଉଚ୍ଚାରିତ ବର୍ଣ୍ଣଚାରି, ମୂର୍ଧନ୍ୟ, ଦନ୍ତ୍ୟ ଓ ଓଷ୍ଠ୍ୟ ଉଚ୍ଚାରିତ ବର୍ଣ୍ଣମାନଙ୍କ ସଂଖ୍ୟାପାଞ୍ଚ । ଅନ୍ତସ୍ଥ ବର୍ଣ୍ଣ 'ୟ' ଏବଂ 'ଯ' ଆସେ ସାମ୍ନାକୁ ।

ଅନ୍ତସ୍ଥ ବର୍ଣ୍ଣ 'କ୍ଷ' ମାତ୍ର ତାହାକୁ ଯୁକ୍ତାକ୍ଷର ରୂପେ କରାଯାଏ ବିବେଚନା । ମାଗଧୀ ପ୍ରସୂତ ଭାଷାଗୋଷ୍ଠୀ ମଧ୍ୟରେ ଓଡ଼ିଆ 'ଳ' ଧ୍ୱନିର ରହିଛି ବୈଶିଷ୍ଟ୍ୟ । ଏହା Highly flapped sound, ଅତୀଶୟ ତଡ଼ିତ ଧ୍ୱନି । ଓଡ଼ିଆରେ ତିନୋଟି ଶ, ଷ, ସ ତିନି ଉଷ୍ମବର୍ଣ୍ଣ, ଉଚ୍ଚାରଣ କିନ୍ତୁ ଗୋଟିଏ 'ସ' ରୂପରେ ହୁଏ । ବାସ୍ତବରେ 'ସ'ଟି ଦନ୍ତ୍ୟ । ଓଡ଼ିଆ ଭାଷାର ଅନ୍ୟ ଏକ ବୈଶିଷ୍ଟ୍ୟ, ସାଧାରଣତଃ ଅକାରାନ୍ତ ଶବ୍ଦ ବିରାମାନ୍ତକ ନ ହୋଇ ଅକାରାନ୍ତ ହୋଇ ହୁଏ ଉଚ୍ଚାରିତ । ଯେମିତି- ରାମ୍ (ହିନ୍ଦୀ ଓ ବଂଗଳା)= ରାମ (ଓଡ଼ିଆ), ସେହିପରି ବନ୍ (ହିଂନ୍ଦୀ ଓ ବଂଗଳା) = ବନ (ଓଡ଼ିଆ) ।

ସଂସ୍କୃତ କିମ୍ବା ପ୍ରାକୃତ ବ୍ୟାକରଣ ଅନ୍ତର୍ଗତ ଲିଙ୍ଗ ଓଡ଼ିଆ ଭାଷାରେ ଚଳେ ନାହିଁ । ସାଧାରଣତଃ ସ୍ତ୍ରୀ ଲିଙ୍ଗ ଓ ପୁଲିଙ୍ଗ । କ୍ଳୀବ ଲିଙ୍ଗ ଆକୃତି ପୁଲିଙ୍ଗ ଠାରୁ ରଖେ ନାହିଁ ପାର୍ଥକ୍ୟ । ସଂସ୍କୃତ ବ୍ୟାକରଣ ଅନୁଯାୟୀ ଶବ୍‌ଦ ରୂପରେ ପ୍ରଚଳିତ କାରକ । କିନ୍ତୁ ଷଷ୍ଠୀଟି କ୍ରିୟାନ୍ୱୟୀ ନ ହେଉଥିବା ହେତୁ 'ସମ୍ବନ୍ଧ ପଦ' ।





Source: Author, Digitized by PPRACHIN, SOA

# ଶାସ୍ତ୍ରୀୟ ଓଡ଼ିଆ ଭାଷାର ସକାଳ ଓ ଶିଶୁବେଦର ସୌରଭ

**ଉତ୍କଳୀ ବିଭାଷାର ଉତ୍ପତ୍ତି ଓ ବିକାଶ କ୍ରମ:**

ଓଡ଼ିଆ ସାହିତ୍ୟ ଆଲୋଚନା ସୁଗମ ପାଇଁ କରାଯାଇଛି ଐତିହାସିକ କାଳ ବିଭାଜନ । ଚାର୍ଯ୍ୟାପଦ ଠାରୁ ସାରଳା ଦାସଙ୍କ ପର୍ଯ୍ୟନ୍ତ ଓଡ଼ିଆ ଭାଷା ଓ ସାହିତ୍ୟର ଆଦିକାଳ । ସାରାଳାଦାସଙ୍କ ଠାରୁ କବି ଦୀନକୃଷ୍ଣ ଦାସଙ୍କ ପର୍ଯ୍ୟନ୍ତ ଆଦିକାଳର ମଧ୍ୟାହ୍ନ ଏବଂ ଦୀନକୃଷ୍ଣ ଦାସଙ୍କ ଠାରୁ ରାଧାନାଥ ରାୟଙ୍କ ପର୍ଯ୍ୟନ୍ତ ମଧ୍ୟକାଳ । କବି ରାଧାନାଥଙ୍କ ରାୟ ନୂତନ ଯୁଗସ୍ରଷ୍ଟା । ତାଙ୍କରି ଠାରୁ ଫିଟିଛି ବୌଦ୍ଧିକ କାଳର ସିଂଦୂରା । ଦ୍ୱିତୀୟ ମହାଯୁଦ୍ଧ ପର ଠାରୁ ଓଡ଼ିଆ ସାହିତ୍ୟ ଭିତରକୁ ପଶି ଆସିଛି ଆନ୍ତର୍ଜାତିକ ପରମାଣୁ ବୋମାର ଦୁର୍ଗନ୍ଧ । ଇଲିୟଟ୍, ଜୟସ୍, ବେକେଟ ଓ ଯାକ୍‌ସନ୍ ପୁଲୋକୀୟ ଖ୍ରୀଷ୍ଟିୟାନିଟୀ ସାହିତ୍ୟକୁ ଧର୍ମାନ୍ତରିତ କରିଛି । ଶିକ୍ଷାର ବିକାଶ ଓ ସ୍ୱାଧୀନତା ସଂଗ୍ରାମ ଯେଉଁ ନୂତନ ଚେତନାର ଉଦ୍ଦୀପନା କଲା ସୃଷ୍ଟି, ତାହା ହେଲା ଉତ୍କଳୀୟ ଆଧୁନିକତାର ପୃଷ୍ଠଭୂମି ।

ଉତ୍କଳ ଏକ ଆଦିମ ମାନବ ଜାତିର ଜନ୍ମଭୂମି ବା ଆଦିଭୂମି । ପ୍ରାଚୀନ ପ୍ରସ୍ତର ଯୁଗୀୟ ଓ ନୂତନ ପ୍ରସ୍ତର ଯୁଗୀୟ ଅସ୍ତ୍ର-ଶସ୍ତ୍ରାଦି ପ୍ରାପ୍ତ ହୋଇଛନ୍ତି ପ୍ରତ୍ନତତ୍ତ୍ୱବିଦ୍ । 'ମନୁସଂହିତା' କିମ୍ବା ଭରତଙ୍କ 'ନାଟ୍ୟଶାସ୍ତ୍ର' ରଚନା ପୂର୍ବରୁ ଥିଲା ଉଦ୍ରଦେଶ ଏବଂ ଭାବ ବିନିମୟ ପାଇଁ ଉଡ୍ରମାନେ ବ୍ୟବହାର କରୁଥିଲେ ଏକ ଅଷ୍ଟ୍ରିକଭାଷା । 'ନନ୍ଦିକେଶ୍ୱରୀ'ରେ ବ୍ୟବହୃତ- 'ବନାନ୍ତେ ପଶିଲି ଯାହାଇ ଗିରି ଟଙ୍କେ,' କିମ୍ବା - 'ଯା କଟକ ଟେକ ଟଙ୍କିଳ ଛତିଆ'ରୁ 'ଟଙ୍କ' ଶବ୍ଦ, ସେହିପରି ଟାଙ୍ଗି, ଡଙ୍ଗା, ଯୋର, ଢ଼େଙ୍କି, ଗଣ୍ଡି, ଟାଙ୍ଗିଆ, କଉଡ଼ି, ବାଇଗଣ, ଚୁଆ, କୋଡ଼ି, ପଣ (ସଂଖ୍ୟାବାଚକ) ଆଦି ଅନେକ ଅଷ୍ଟ୍ରିକ ଶବ୍ଦ ଏବେ ମଧ୍ୟ ଆମ ଭାଷାରେ ହେଉଛି ବ୍ୟବହୃତ । ବହୁ ଅଷ୍ଟ୍ରିକ ଶବ୍ଦ ସଂସ୍କୃତ ଶବ୍ଦକୋଷକୁ କରିଛି ବୃହତ୍ । ପ୍ରାକୃତ ମଧ୍ୟ ବହୁ ଅଷ୍ଟ୍ରିକ ଶବ୍ଦରେ ସମୃଦ୍ଧ ।

ଉଡ୍ର ଭାଷାରେ ଉତ୍ପତ୍ତି ପ୍ରାକୃତ ଭାଷାବିଦ୍ କବୀନ୍ଦ୍ର ମାର୍କେଣ୍ଡେୟ ସୂଚିତ କରିଛନ୍ତି, 'ଶାବର୍ଯ୍ୟାମେବୌଡ୍ରୀ ଯୋଗାତ୍ ତଦ୍‌ଦେଶ୍ୟ ସୌରସେନ୍ୟାଦେଃ' ଅର୍ଥାତ୍ ଉଡ୍ରଦେଶଜ ଶବ୍ଦ ଓ ସୌରସେନୀ ଆଦି ଶବ୍ଦର ଶବରୀରେ ମିଶ୍ରିତ ହୋଇ ହୋଇଛି ଔଡ୍ରୀ ଉପଭାଷା ।' 'ଚାଣ୍ଡାଲ୍ୟାଃ ଶାବରୀ ସିଦ୍ଧଃ ତନ୍ ମୂଳେଭ୍ୟ', ଶାବରୀ ମୂଳରେ ରହିଛି ଚାଣ୍ଡାଳୀ, ବା ଚାଣ୍ଡାଳିକା



Source: Author, Digitized by PPRACHIN, SOA

ଉପଭାଷା । କେବଳ ଚାଣ୍ଡାଳିକା ଶାବରୀକୁ ସମ୍ବନ୍ଧ କରିନାହିଁ, 'ଚାଣ୍ଡାଳୀ ମାଗଧୀ ଶୌରସେନୀଭ୍ୟାଂ ପ୍ରାୟଶୋଭବେତ୍', ମାଗଧୀ ମଧ୍ୟ ଶୌରସେନୀଙ୍କୁ କରିଛି ସମ୍ବନ୍ଧ ।

'ନାଟ୍ୟଶାସ୍ତ୍ର' ସପ୍ତଦଶ ଅଧ୍ୟାୟ, 'ଭରତ' ଯେତେବେଳେ କଲେ ଉଲ୍ଲେଖ-

'ଶକାରାଭୀର-ଚଣ୍ଡାଳ-ଶବର-ଦ୍ରାବିଡ଼ୌଡ୍ରଜାଃ ।

ହୀନା ବନେଚରାଣାଞ୍ଚ ବିଭାଷା ନାଟକାଶ୍ରୟାଃ ।'

ସେତେବେଳେ ସଂଭ୍ରାନ୍ତ ସଂସ୍କୃତ ସହିତ ପାର୍ଶ୍ୱ ଭାଷା ଭାବେ ନାଟକ ମଞ୍ଚରେ ବ୍ୟବହୃତ ହେଲାଣି ବନବାସୀମାନଙ୍କ କଥିତ ଉପର୍ଯ୍ୟୁକ୍ତ ଭାଷାଗୁଡ଼ିକ । ଏଗୁଡ଼ିକ ଭାଷା ନୁହେଁ, ଭାଷା ଏକମାତ୍ର ସଂସ୍କୃତ,ଏଗୁଡ଼ିକ ବିଭାଷା ।

'ପ୍ରାକୃତ କଳ୍ପତରୁ'ରେ ରାମଶର୍ମା ତର୍କବାଗୀଶ କରିଛନ୍ତି ଉଲ୍ଲେଖ ବିଭାଷା ନଅ ପ୍ରକାର । ସେଗୁଡ଼ିକ-୧- ଶାକାରୀକା, ୨- ଚାଣ୍ଡାଳିକା, ୩- ଶାବରୀ, ୪- ଆଭୀରିକା, ୫- ଦ୍ରାବିଡ଼ିକା, ୬- ଔଡ୍ରୀ ବା ଔତ୍କଳୀ, ୭- ବନୈକସୀ, ୮- ମାଣ୍ଡୁରିକା ଏବଂ ୯- ଟାକ୍‌କୀ, ଏମାନେ ପ୍ରାକୃତ ପରିବାରରୁ ଜନ୍ମ ହୋଇଛନ୍ତି ।

ଔଡ୍ରୀ ବିଭାଷା ବା ଔତ୍କଳୀ ଉପଭାଷାର ଗୋଟିଏ ଉଦାହରଣ ମାର୍କେଣ୍ଡେୟ କବୀନ୍ଦ୍ର ତାହାଙ୍କ 'ପ୍ରାକୃତସର୍ବସ୍ୱ'ରେ କରିଛନ୍ତି ସଂଗ୍ରହ, ସେହି ଉଦ୍ଧୃତ ଉଦାହାରଣଟି-

ଦେବ ଜସୋଆଣନ୍ଦନ କର ମଇ କରୁଣା ଲେଶ

ଏତିକି ଜମଉ ଅଚ୍ଛଉଇ ପିଟ୍ଟଇ ସବ୍‌ବ କିଲେଶ ।

ଅର୍ଥାତ୍-ଦେବ ଯଶୋଦାନଂଦନ କର ମୋତେ କରୁଣା ଲେଶ / ଏତକି ଜନ୍ମୁ ଅଛଇ ପିଟଇ ସରବ କ୍ଳେଶ । ଏହି ଭାଷା ସହିତ ରହିଛି ବୌଦ୍ଧଗାନ ଓ ଦୋହାର ସମ୍ବନ୍ଧ । ଯଥା, ତୁଳନାତ୍ମକ ଭାବେ ଉଦ୍ଧୃତ କରା ଯାଇ ପାରେ ନିମ୍ନ ଉଚ୍ଚାରିତ ଭାଷା-

୧) ଏବେ ଚିଅରାଅ ମୁକୁ ମେଠା
ଗଅଣ ସମୁଦେ ଟଳିଆ ପଇଠା

କିମ୍ବା- (୨) ନଗର ବାହିରେ ଡୋମ୍ବି ତୋହର କୁଡ଼ିଆ
ଛୋଇ ଛୋଇ ଜାଇ ସୋ ବ୍ରାହ୍ମ ନାଡ଼ିଆ

ଓଡ଼ିଆ ଭାଷା ଓ ସାହିତ୍ୟର ଏହା ଆଦିକାଳର ଦୃଷ୍ଟାନ୍ତ । ଏହି ସମୟରେ ଚର୍ଯ୍ୟାପଦ ରଚିତ । ଚର୍ଯ୍ୟାପଦ ଗୋଟିଏ ସମୟର ରଚନା ନୁହେଁ । ଭିନ୍ନଭିନ୍ନ ସମୟରେ ଭିନ୍ନ ଭିନ୍ନ ଆଚାର୍ଯ୍ୟ ପାଦ ସେଗୁଡ଼ିକ କରିଛନ୍ତି ରଚନା ।

ଭାଷାର ବିକାଶ କ୍ରମରେ ସମ୍ମୁଖକୁ ଆସିଛି ଷଷ୍ଠ-ସପ୍ତମ ଶତକ ଗଣ୍ଡିବେଢ଼ା ଶିଳାଲିପି, 'ଦେବହୀ ଭଗତି କରୁଣା ଅଛନ୍ତି ଭୋ କୁମାର ସେଣ'....। ଶୈଳୋଦ୍ଭବ ମହାରାଜାଧିରାଜ ଧର୍ମରାଜ ଦେବ ୨ୟଙ୍କ ଅଭିଲେଖ, ପଶ୍ଚିମ ଦିଶହି ତୃକୁଟ ଆଡ଼ପୋପାଦି



Source: Author, Digitized by PPRACHIN, SOA

ବଣରାଇ ବାଲ୍ମୀକ ବଙ୍କସିଳ ବଣରାଇ'...। ଏକାଦଶ ଶତକ ଅନନ୍ତ ବର୍ମା ଦେବଙ୍କ ନୃସିଂହ ମନ୍ଦିର ଶିଳାଲେଖ ପ୍ରଭୃତିର ରହିଛି ଉଦାହାରଣ । ଏଗୁଡ଼ିକ ଭାଷାର ଗୌଣ ବ୍ୟବହାର । ମାତ୍ର ଭାଷାର ବିକାଶରେ ଏମାନଙ୍କ ପ୍ରମାଣିକତା ଆମ ଇତିହାସର ଅକ୍ଷୁର୍ଣ୍ଣ ସୋପାନ ।

ଦ୍ୱାଦଶ ଶତାବ୍ଦୀ ପରେ ପ୍ରାୟ ସମସ୍ତ ଭାରତୀୟ ଭାଷା ନିଜ ନିଜ ସ୍ୱରୂପରେ ହୋଇ ଯାଇଥିଲେ ବିକାଶିତ । ସୌରସେନୀ-ମାଗଧୀ ଉପଭାଷାରୁ ମୁକ୍ତ ହୋଇ ଯାଇଥିଲା ଔଡ୍ରୀ ଏବଂ ସ୍ୱତନ୍ତ୍ର ଓ ପୂର୍ଣ୍ଣରୂପେ ହୋଇଛି ବିକଶିତ । ଯଦିଓ ତତ୍‌କାଳୀନ ପ୍ରାପ୍ତ ସାହିତ୍ୟ ଚର୍ଯ୍ୟାପଦ ମାତ୍ର । ଚର୍ଯ୍ୟାପଦ ପରବର୍ତ୍ତୀ ସୃଷ୍ଟି 'ରୁଦ୍ରସୁଧାନିଧି' । ଅବଧୂତ ନାରାୟଣ ସ୍ୱାମୀଙ୍କ ସ୍ୱାରସ୍ୱତ କୃତି । ନାରାୟଣ ସ୍ୱାମୀଙ୍କ ପୂର୍ବବର୍ତ୍ତୀ ସ୍ରଷ୍ଟା ନାଥପନ୍ଥୀ । କବି ଗୋରେଖ ନାଥଙ୍କ କବିତା କେନ୍ଦ୍ର ସାହିତ୍ୟ ଏକଡେମୀ 'ରେଖ ନାହିଁ ରୂପ ନାହିଂ' କୁ 'ସଞ୍ଚୟନ' (୧୯୭୪)ରେ ସ୍ଥାନୀତ କରିଅଛି । କବିତାର ଆଙ୍ଗିକ, ଭାଷା ଓ ଆରମ୍ଭ ନିମ୍ନ ପ୍ରକାର–

'ଯେହ୍ନେକ ବକା ନ ହଲଇ ନୀର
ତେହ୍ନେ ମନ ପବନ କରି ଥିର ।
ବଗ ମଛ ନୀରେ ସମ କରି ଜାଣ
ତେବେ ସେ ପିଣ୍ଡକୁ ପରତେ ପ୍ରାଣ ।
କେବଳ ଚକ୍ରେ ବହଇ ସମୀର
କେବଳ ଚକ୍ରେ ମନ ହୋଇ ଥିର
କେବଣ ଚକ୍ରେ ଲାଗଇ ସୁସ୍ୱାଦି
କେବଳ ଚକ୍ରେ ଲାଗଇ ସମାଦି ।'

'ରୁଦ୍ର ସୁଧାନିଧି' ଚତୁର୍ଦ୍ଦଶରୁ ପଞ୍ଚଦଶ ଶତାବ୍ଦୀ, ଗଦ୍ୟ ପଦ୍ୟ ମିଶ୍ରଣ ସଂସ୍କୃତ ପ୍ରଭାବ ଦୀପ୍ତ ଭାଷା । ନିରୀକ୍ଷଣ କରାଯାଇପାରେ ସାରସ୍ୱତ କଳାଟିର ଆଙ୍ଗିକ–

'ଏବଂ ଭୂତ ପ୍ରକାରେ, ରୁଦ୍ର କ୍ରୀଡ଼ା ବନରେ ଜୀବେ ଅଜୀବେ କାମାନ୍ଧକାରେ
ମଜିଲେ ଯହୁଁ ଆକର୍ଣ୍ଣ ପରିଯନ୍ତେ ପଞ୍ଚବାଣ ପୂରୋଇ ମନ୍ମଥ ବିଚାରିଲା
ତହୁଁ । ସେ ପାଞ୍ଚ ଶରକୁ ଶିଖାଇ, ବସାଇ, ଅଧ୍ୟାନ, ସନ୍ଧାନ, ମୋକ୍ଷ ମଣ୍ଡଳ
କରି ପ୍ରତିଜ୍ଞା କଲା ତହୁଁ । ପ୍ରତିଜ୍ଞା କରଇ ହାଇ ହାଇ ହାଇ । ଆଜ
ଜାଣିମାନା ସିଦ୍ଧଙ୍କର ଗର୍ବ, ମୋତେ ପୂର୍ବେ ଜିଣିଲା ପରା ବିଚାରନ୍ତି ସର୍ବ ।'

(ରୁଦ୍ରସୁଧାନିଧି, ପୃ–୬–୭ଷ୍ଠା ସଂ. ଡକ୍ଟର କରୁଣାକର କର )



Source: Author, Digitized by PPRACHIN, SOA

ପଞ୍ଚଦଶ ଶତକ ଶ୍ରେଷ୍ଠ ସାରସ୍ୱତ ସନ୍ତକ ସାରଳାଙ୍କ ମହାଭାରତ । ରୁଦ୍ରସୁଧାନିଧି କିମ୍ବା ଗୋରେଖ ନାଥଙ୍କ ଶଦ୍ଧ ବସାଣ ଏବଂ ଶବ୍ଦ ସ୍ୱରୂପ ଠାରୁ ନାହିଁ ବିଶେଷ କିଛି ପାର୍ଥକ୍ୟ । ଲକ୍ଷ୍ୟ କରାଯାଇପାରେ ନିମ୍ନ ପଂକ୍ତି କେତେକ-

ଜାରା ବୋଇଲା ସ୍ୱାମୀ ହେ ମୁହିଂ ସତ୍ୟ କଲଇଂ ।
ମୋହର ଶିର କମଳ ମାଗିଲେହେଂ କାଟି ଦେବଇଂ ||୯୧|
ଜ୍ୟେଷ୍ଠ ଆଙ୍ଗୁଳି ଗୋଟେ ଧଇଲେ ଗୁରୁ ଟାଣି
ନାରାଚ ବିନ୍ଧନ୍ତେ ହାଥେ ତୋହର ନଥିବ କଷୁଣି ||୯୨||

ଅନ୍ୟ ଏକ ଦୃଷ୍ଟାନ୍ତ-

ଏହୁ ମହାସମ୍ଭାରେ ଲାଖ ଯେ ବିନ୍ଧିବ ଗୋସେଇଂ ।
ଲାଖର ଚରିତ୍ର କହଇ ଶୁଣ ସାବଧାନ ହୋଇଂ ||୩୮||
ରାଧାଚକ୍ରେ ବୁଲଇ ଯେ ସହସ୍ରେକ ଧାରା
କଣୟର ମାଛ ଅଛି ତହିଂର ଉପର ||୩୯||

ଚର୍ଯ୍ୟାପଦ ଠାରୁ ସାରଳା ଦାସଙ୍କ ମଧ୍ୟରେ ସୃଷ୍ଟି ସାହିତ୍ୟ ଓ ଭାଷାର ସ୍ୱରୂପ ସମକାଳ ଶୁଦ୍ଧ ଓଡ଼ିଆ ଠାରୁ ଯଥେଷ୍ଟ ତଫାତ୍ । ସମୟ ଅନୁଯାୟୀ ଭାଷା ପରିଷ୍କୃତ ଓ ବିକଶିତ ହୋଇଛି । ଆଦିକାଳ ଭାଷାର କ୍ରମବିକାଶର ଏହି ସ୍ତର ଆଦିକାଳର ମଧ୍ୟାହ୍ନ ପାଇଁ ଭିତ୍ତିଭୂମି ।

**ଶାସ୍ତ୍ରୀୟ ଇତିହାସର ଐଶ୍ୱର୍ଯ୍ୟ ଶିଶୁବେଦ**

ଚର୍ଯ୍ୟାପଦ ପରବର୍ତ୍ତୀ ସୃଷ୍ଟି ନାଥସିଦ୍ଧଙ୍କ ବହି ଦୁଇଟି, ୧– 'ସିଷୁବେଦ' ଏବଂ ୨– 'ସପ୍ତାଙ୍ଗ ଯୋଗ ଧାରଣ', ବହି ଦୁଇଟି, ଏହାକୁ ଓଡ଼ିଶା ସାହିତ୍ୟର ଛାତ୍ର ପ୍ରାୟତଃ ଜାଣି ନାହାନ୍ତି କି ଦେଖି ନାହାନ୍ତି । ଏ ବହିକୁ ତାଳପତ୍ର ବନ୍ଧନରୁ ମୁକ୍ତ କରି ଆଧୁନିକ ମୁଦ୍ରିତ ଫର୍ଦ୍ଦକୁ ଆଣିବାକୁ ଆମ ପ୍ରକାଶନ ଅନୁଷ୍ଠାନମାନେ ମଧ୍ୟ ସଚେତନ ନୁହନ୍ତି । ଇତିହାସ ମାଟିରେ ମିଶିଗଲା ପରେ ଆମ ଭାଷା ଶାସ୍ତ୍ରୀୟ ଲେବ୍‌ଲ୍ ଲାଭ କଲେ ଲାଭ କ'ଣ ? ହଁ ଲାଭ ହେବ ସାହିତ୍ୟ ସଂଗଠକମାନଙ୍କ, କେନ୍ଦ୍ରୀୟ ବିପୁଳ ଅନୁଦାନ ସେମାନଙ୍କ ପକେଟସ୍ଥ ହେବ !

ସାରଳା ଦାସ ଯେଉଁ ମହାଦ୍ରୁମଟି ଏ ଜାତିକୁ ଉତ୍ସର୍ଗ କରିଛନ୍ତି, ସେହି ମହାଦ୍ରୁମ ଆଲୋକ ଦିଗକୁ ବଢ଼ି ଉଠିବା ବେଳେ ତା ତଳେ ଓ ତାହା ଛାୟା ତଳେ ଥିବା ସମସ୍ତ ଦୂବଘାସ ବି ପୋଛି ସଫା କରି ଦେଇଛି ! ଚର୍ଯ୍ୟାପଦ ଛୋଟ ଛୋଟ ଗୀତି । ତିନୋଟି ଚତୁର୍ଦ୍ଦଶପଦୀ ବ୍ୟତୀତ ଦଶପଦୀ ଓ ଦ୍ୱାଦଶପଦୀ, ଏହିଭଳି ତାହା ଆକୃତି ପରବର୍ତ୍ତୀ 'କଳସା' କିମ୍ବା 'କେଶବ କୋଇଲି' ହେବା ବେଳକୁ ହୋଇଛି ଚୌତ୍ରିଶପଦୀ ଦୈର୍ଘ୍ୟ ।



Source: Author, Digitized by PPRACHIN, SOA

ମହାଭାରତପରି ବୃହତ୍‌କାୟ ସୃଷ୍ଟିଟିଏ ହେବାକୁ ହଠାତ୍ ଆଦୌ ଦୀର୍ଘ ଭୂମିଟିଏ ମିଳିନାହିଁ । ବରଂ ରୁଦ୍ର ସୁଧାନିଧି ପରି ଅନେକ ରଚନା ହୁଏତ ରଚିତ ହୋଇଛି, ସେ ସମସ୍ତ ତତ୍‌କାଳୀନ ତାଳପତ୍ର ଖେଦା ସମୟ ଗର୍ଭରେ ହଜମ ହୋଇ ଯାଇଛି । ରସାଳ ଓ ଆଗ୍ରହ ପୂର୍ଣ୍ଣ କଥା ସଂକଳନ ହେତୁ ମହାଭାରତଟି ଜୀବିତ ରହିଛି । ପୁନଶ୍ଚ ମହାଭାରତରେ କାବ୍ୟ ଭୂମି ପଛରେ ଥିବା ଧାର୍ମିକ କାଳଜୟୀ ଅନୁଚିନ୍ତା ମଧ୍ୟ ଅନ୍ୟ ଏକ କାରଣ, ଯାହା ପୁରୁଷ ପୁରୁଷ ଧରି ଏହାକୁ ଉତାରି ରଖିଥିବାର ହେତୁ । ଚର୍ଯ୍ୟାପଦ ଓ ମହାଭାରତ ମଧ୍ୟରେ ଆଦିକାଳର ଦୁଇଟି ପ୍ରସିଦ୍ଧ ରଚନା, ପୂର୍ବରୁ କୁହାଯାଇଛି, 'ସପ୍ତାଙ୍ଗ ଯୋଗ ଧାରଣ' ଓ 'ସିଷୁବେଦ' । ମହାଭାରତ ମଧ୍ୟପର୍ବରେ ଉଲ୍ଲେଖ ରହିଛି, 'ଋକ୍ ଯଜୁ ସାମ ଅଥର୍ବ ଚାରିବେଦ ଘୋଷଇ ।/ ପଞ୍ଚମ ମୁଖ୍ୟରେ ଶିଶୁବେଦ ଅଭ୍ୟାସଇ ।/' ସେହି ପର୍ବରେ ମଧ୍ୟ ବର୍ଣ୍ଣିତ-ଯେବଣ ମୁଖରେ ଶିଶୁବେଦ ଅଭ୍ୟାସଇ । ସେହି ପର୍ବରେ ମଧ୍ୟ ବର୍ଣ୍ଣିତ-ଯେବଣ ଶାସ୍ତ୍ର ବାହାର ଶିଶୁମୁନା ବେଦୁ ।/ ଶୂଦ୍ର ମୁନି ପଦ ମୋ ଶ୍ରୀସାରଳା ପ୍ରସାଦୁ ।

ନାଥସିଦ୍ଧି ସନ୍ଥ ଗୋରେଖନାଥଙ୍କ ଦ୍ୱାରା ପ୍ରଣୀତ 'ଶିଶୁବେଦ' । ଏହି ଅଧ୍ୟାତ୍ମିକ ମତବାଦ ଉତ୍ପତ୍ତି ସମୟ ଦଶମ ଶତାବ୍ଦୀ ବୋଲି ଅନୁମାନ କରିଛନ୍ତି ଐତିହାସିକ ଯେ.ସି. ଘୋଷ । ମାତ୍ର ବଙ୍ଗଳା ସାହିତ୍ୟରେ ଯେଉଁ ନାଥପନ୍ଥୀ ରଚନା ରହିଛି ତାହାର ରଚନାକାଳ ସମ୍ଭବତଃ ଅଷ୍ଟାଦଶ ଶତକ ବୋଲି ଐତିହାସିକ ଘୋଷ କରିଛନ୍ତି ଉଲ୍ଲେଖ । 'ଓଡ଼ିଆ ସାହିତ୍ୟ ଆଦି ପର୍ବ' (ପୃଷ୍ଠା ୪୫, ପଞ୍ଚମ ପରିଚ୍ଛେଦ) ସ୍ୱର୍ଗତ ସୁରେନ୍ଦ୍ର ମହାନ୍ତି କହିଛନ୍ତି ସୂଚିତ, ମିଳିଥିବା ନାଥପନ୍ଥୀ ମାନଙ୍କର ସ୍ୱଳ୍ପ ପରିମିତ ସାହିତ୍ୟକୁ ସହଜିଆ ଚର୍ଯ୍ୟାପଦର ପରବର୍ତ୍ତୀ ଓଡ଼ିଆ ସାହିତ୍ୟ ବୋଲି ଅନୁମାନ କରାଯାଇ ପାରେ । ନାଥପନ୍ଥୀଙ୍କ ମର୍ମବାଣୀ ଶିଶୁବେଦରୁ ସିଏ କରିଛନ୍ତି ଉଦ୍ଧୃତ-

ଏକ ହୋଇ ଦୁଇ ଅଲଗ ବିଲଗ
ନିରାହୁଁ ନିରନ୍ତର ସେହି ଅଲଗ ।
ସିଷମୁନା ମଧ୍ୟେ ସଯୋତି ପ୍ରକାଶ
ବନ୍ଦନ୍ତି ନାଥେ ଯେତି ସିଦ୍ଧଙ୍କ ବିଶୁଆସ ।

ଏହି ଉଦ୍ଧୃତିଟିକୁ ଶ୍ରୀଯୁକ୍ତ ମହାନ୍ତି ରାଷ୍ଟ୍ରଭାଷା ରଜତ ଜୟନ୍ତୀ ଗ୍ରନ୍ଥ ଡକ୍ଟର ବଂଶୀଧର ମହାନ୍ତିଙ୍କ ପ୍ରବନ୍ଧ 'ଓଡ଼ିଆ ସାହିତ୍ୟ ବିକାଶ କ୍ରମ'ରୁ କରିଛନ୍ତି ସଂଗୃହୀତ । ପ୍ରାଚୀନ ଓଡ଼ିଆ ଗଦ୍ୟର ନିଦର୍ଶନ ଶିଶୁବେଦର କେତେକ ପଂକ୍ତି ଡ. ବଂଶୀଧର ମହାନ୍ତି କରିଥିଲେ ସୂଚିତ ପରେ ତାହାକୁ 'ପଦ୍ୟ ଉଦ୍ଧୃତି' ବୋଲି ରାଷ୍ଟ୍ରଭାଷା ରଜତ ଜୟନ୍ତୀ ଗ୍ରନ୍ଥ (ପୃଷ୍ଠା-୧୧୧) କରିଛନ୍ତି ବ୍ୟକ୍ତ ।



Source: Author, Digitized by PPRACHIN, SOA

ସେହି ଉଦ୍ଧୃତିଟି ନିମ୍ନରେ କରାଗଲା ପ୍ରଦତ୍ତ-
ଦଶମ ଗୁରୁ ବଂଦିଲେ ପାଇବା ସରୂପ ବିଚାର ।
ଅଚଳ ଯେ ଶୂନ୍ୟଟି ସେ ।
ଯେ ଦୁହିଁଙ୍କର ରୂପରେଖ ନାହିଁ ।
ଚକ୍ଷୁ ନିରଂଜନ ଶୂନ୍ୟ ଘେନି ବର୍ଣ୍ଣ ତିନି ନାହିଁ ।
ଭିତର ନିରାକାର ପୁରୁଷଙ୍କୁ ଦେଖି ରହିଲେ,
ଏହାକୁ ନିସ୍ୱତୀ ଯୋଗ ସମ୍ବାଦି ବୋଲି ।

ପ୍ରକୃତରେ ଏହା ପ୍ରାଚୀନ ଗଦ୍ୟ । ଗଦ୍ୟର ଏହି ପ୍ରାଚୀନ ସ୍ୱରୂପ 'ରୁଦ୍ରସୁଧାନିଧି'ରୁ ହେଲା ଉଦ୍ଧୃତି-

'ଆତ୍ମା ଜଗତକୁ ବସ୍ତୁମୟ କର ଜାଣୁ ଅଛି । ଅନାତ୍ମା ଯେ ଶରୀର ।
ଏହାକୁ ମୁଁ ଅପରତେ ହେଉଅଛି । ପୁତ୍ର ଦାରା କଳତ୍ରକୁ ମୋହର
ବୋଲି ପରତେ ହେଉଅଛି । ଏଥୁ ଏହା ଭାବକୁ ଛାଡ଼ି ଗଲେ ବିପରୀତ ଭାବନା ନିବୃତ୍ତି ବୋଲି ।

(ରୁଦ୍ର ସୁଧାନିଧି, ପୃଷ୍ଠା ୬୦)

ସାରଳା ଦାସ ଲେଖିଛନ୍ତି 'ଶିଶୁବେଦୀ ହୋଇବେ ପାଞ୍ଚବିଂଶ ସହସ୍ର ବ୍ରାହ୍ମଣ' ଅର୍ଥାତ୍ ତତ୍‌କାଳୀନ ସମାଜରେ ଶିଶୁବେଦୀ ବ୍ରାହ୍ମଣ ଥିଲେ । ବିରାଟ ପର୍ବରେ ରହିଛି ଉଲ୍ଲେଖ, ଶିଶୁମୁନା ବେଦେଣ ଯେ ଲକ୍ଷେକ ଦ୍ୱିଜ / ସିନ୍ଧୁ ଘୋଷ ପ୍ରାୟେ ଶୁଭଇ ସମ୍ଭବ ତେଜ । ସେହି ଶିଶୁ ବେଦୀମାନେ ବର୍ତ୍ତମାନ ନିଶ୍ଚିହ୍ନ । ଏହାର କାରଣ ହୁଏତ ଅନ୍ୟ ଧର୍ମୀ ରାଜାଙ୍କ ଦ୍ୱାରା ପୀଡ଼ନ ଓ ଧର୍ମାନ୍ତର ଶିଶୁବେଦୀଙ୍କୁ କରିଛି ମହାଶୂନ୍ୟ ।

ଓଡ଼ିଆ ଶିଶୁବେଦ ଗୋରେଖ ନାଥଙ୍କ କେତେକ ହିନ୍ଦୀ ପଦର ଅନୁବାଦ, କହିଛନ୍ତି ଡ. ନଟବର ସାମନ୍ତରାୟ । ଶିଶୁବେଦରେ ରହିଛି ଶିବପୁରାଣ (ଦ୍ୱାରିକା ଦାସଙ୍କ ରଚନା, ୧୭୩୭ ଖ୍ରୀଷ୍ଟାବ୍ଦ)ର କେତେକ ପଦ ଓ ବ୍ୟାଖ୍ୟା, ତେଣୁ ତାହାକୁ ଶିବ ପୁରାଣର ଅଂଶ ବୋଲି ସିଏ ଦେଇଛନ୍ତି ମତ ।

ଶିଶୁବେଦର ଭାଷା ଓ ଶୈଳୀ ସମ୍ବନ୍ଧରେ ଡ. ମାୟାଧର ମାନସିଂହ କରିଛନ୍ତି ଉଲ୍ଲେଖ-It undoubtedly belongs to the same category as the temple inscriptions of 12th-13th centuries. There is no doubt that this is the earliest literary prose in Oriya.

ସପ୍ତମରୁ ନବମ ଶତାବ୍ଦୀ ମଧ୍ୟରେ ବୌଦ୍ଧ ଧର୍ମର ପ୍ରଚାର ଓ ପ୍ରସାର ପାଇଁ ରଚିତ ଅପଭ୍ରଂଶ ଚର୍ଯ୍ୟାପଦର ପ୍ରତିଧ୍ୱନି ଅଟେ ଶିଶୁବେଦର ଧ୍ୱନି । ଶୈବ ଚେତନାର ଏଥିରେ



Source: Author, Digitized by PPRACHIN, SOA

କରାଯାଇଛି ପ୍ରସାର । ଉତ୍କଳୀୟ ଶୈବ ସଂସ୍କୃତିରେ ଏହା ଖଣ୍ଡିଏ ଶିଶୁ ଗ୍ରନ୍ଥ । ଡକ୍ଟର ମାୟାଧର ମାନସିଂହ କରିଛନ୍ତି ଉଲ୍ଲେଖ, Sisuveda is a remarkable production in more ways then one. Saivite in content, it is linguistcally the last lingering echeo of the Budhist Apabhramsa compositions of the 7th-9th centuries that we have already discussed.This Sisudeva is the unmistakable visible link between that Apabhramsa and the modean Oriya of Sarala Das or Markanda Das.

ଦାଶରଥି ପୁସ୍ତକାଳୟ, କଟକଙ୍କ ପ୍ରକାଶିତ 'ବିଷ୍ଣୁଗର୍ଭପୁରାଣ' ତହିଁରେ ବର୍ଣ୍ଣିତ ହୋଇଛି ଶିଶୁବେଦରେ କ'ଣ ରହିଚି ? ନିମ୍ନ ପଂକ୍ତି କେତୋଟି ଶିଶୁବେଦର ବିଷୟବସ୍ତୁକୁ ସୂଚିତ କରୁଅଛି—

ଶିଶୁବେଦ ପୁରାଣେ ଅଛି ମୁକତି ସାଧ୍ୟ ବୀଜା ।<br>
ରୁଷିଙ୍କର ଯୋଗ ଘର ଯେ ଜ୍ଞାନୀମାନଙ୍କ ତତ୍ତ୍ୱ<br>
ଯେତେ କର୍ମେ ସଂସାର ହୁଅନ୍ତି ସାଧୁସନ୍ଥ ମହତ ।<br>
ଏ ସବୁ ବିଦ୍ୟା ଅଛି ଶିଶୁବେଦ ପୁରାଣରେ<br>
ପଦ ଅର୍ଥ ଯେତେକ ଗୁପତ ପରକାରେ ।<br>
ଶିଶୁବେଦ ପୁରାଣ ପଢ଼ନ୍ତି ଯେତେ ପ୍ରାଣୀ<br>
ଏ ମହୀ ମଣ୍ଡଳେ ସେମାନେ ବୋଲନ୍ତି ବ୍ରହ୍ମଜ୍ଞାନୀ ।

(ବିଷ୍ଣୁ ଗର୍ଭ ପୁରାଣ / ଶ୍ରୀଚୈତନ୍ୟ ଦାସ, ପୃଷ୍ଠା ୩୫୧-୩୫୨)

ଶ୍ରୀଚୈତନ୍ୟଙ୍କ ଠାରୁ ମଧ୍ୟ ଶୁଣିବାକୁ ମିଳିଛି ଶିଶୁବେଦର ମାହାତ୍ମ୍ୟ । ଷୋଡ଼ଶ ଶତକ ବେଳକୁ ଉତ୍କଳରେ ଥିଲା ଶିଶୁବେଦ ତାଳପତ୍ର ଗ୍ରନ୍ଥ ଓ ତାହାର ପାଠ୍ୟ ସୁରକ୍ଷିତ । 'ବିଷ୍ଣୁଗର୍ଭ ପୁରାଣ'ରେ ଶ୍ରୀଚୈତନ୍ୟ ଦାସ କରିଛନ୍ତି ଉଲ୍ଲେଖ-

ଜୀବ ପରମ ଭେଟ, ଅଷ୍ଟାଙ୍ଗ ଯୋଗର ସାଧ୍ୟ ଭେଦ<br>
ଚଉବେଦର ଉତ୍ପତ୍ତି ସ୍ଥିତି ପ୍ରଳୟର ସମ୍ବାଦ ।<br>
ଓଁକାର ଜାତ କର୍ମ ଅର୍ଦ୍ଧ ମାତ୍ରାର ଉତ୍ପନ୍ନ<br>
ଏହାଙ୍କର ଭେଦ ସାଧ୍ୟରେ ଗୁଣାଗୁଣ ।<br>
ଗାୟତ୍ରୀ ଛନ୍ଦର ଯେ ଅଟଇ ଭେଦମୁଦ୍ରା<br>
ରାକାର ଆଦି ଶିଶୁବେଦର ପ୍ରତିଶୋଧା ।

ପୁନଶ୍ଚ କୁହାଯାଇଛି, xxx 'ନିର୍ଗୁଣ ନିଗମ ଭେଦ ଗୁପତ ସହିତେ । ଗୁରୁଘର ବିଧି ଯେତେ ନିର୍ଗୁଣ ଗୁପ୍ତ ତତ୍ତ୍ୱମାନେ । ବେଦବ୍ୟାସ ଥୋଇଲେ ଆଣି ଶିଶୁବେଦ ପୁରାଣେ ।' ଯୋଗ ସାଧନାର ଗୂଢ଼ ରହସ୍ୟ ସମ୍ବଳିତ ଗ୍ରନ୍ଥ, ଗୁରୁଘର ବିଧି ଅନୁଯାୟୀ ଯୋଗ୍ୟ ଶିଷ୍ୟ ହିଁ



Source: Author, Digitized by PPRACHIN, SOA

ଗୁରୁଙ୍କ ଠାରୁ ହୁଏ ଏହାର ଉତ୍ତରାଧିକାରୀ । ତେଣୁ ତାହା ସମକାଳ ସାହିତ୍ୟପରି ହେଉ ନ ଥିଲା ସୁଲଭ ପ୍ରସାରିତ ।

ସୁଷୁମ୍ନା ଶବ୍ଦରୁ ସିଷୁବେଦ ବନାନ ସଠିକ୍ । ସାଧନା ପାଇଁ ଗ୍ରନ୍ଥଟିକୁ ତାଳପତ୍ରରେ ଲେଖି ରଖୁଥିବା ଲିପିକାର ଭାଷା ବନାନ ପରିବର୍ତ୍ତିତ କରିଥିବା ସମ୍ଭବ । ସିଷୁ ଓ ଶିଶୁ ସାଧକ ଅନୁଭବ କରି ନଥିବେ ଭାଷାଗତ ପ୍ରଭେଦ । ପୁନଶ୍ଚ ସାଧକ ଯେତେ ବୟସ୍କ ହେଲେ ମଧ୍ୟ ସେ ଗୁରୁଙ୍କ ସମ୍ମୁଖରେ ଶିଶୁ ! ଶିଶୁ ପାଇଁ ଯାହା ବେଦ୍ୟ ତାହା ତାଙ୍କ ଦୃଷ୍ଟିରେ ହୁଏତ ହୋଇଥିବ ଶିଶୁବେଦ ! ତେବେ ଶିଶୁର ପାଠ୍ୟ, ନାଡୀ, ନାଦ ଓ ପ୍ରଣବ ! ଯୋଗୀର ସାଧନ ତତ୍ତ୍ୱ ।

ସୂକ୍ଷ୍ମ ଶରୀରରେ ବିରାଜିତ ନାଡୀ ତ୍ରୟ ମଧ୍ୟରେ ଶ୍ରେଷ୍ଠ ସୁଷୁମ୍ନା । ଗୁହ୍ୟଦ୍ୱାର ବା ମୂଳାଧାର ଚକ୍ରରୁ ମସ୍ତିଷ୍କସ୍ଥ ସହସ୍ରାର ପର୍ଯ୍ୟନ୍ତ ଗତିକରି ପୁଣି ଦୁଇ ଭ୍ରୂ ମଧ୍ୟ ଦେଇ ମୂଳାଧାରକୁ ଫେରି ସର୍ପିଣୀ ପରି ପୁଚ୍ଛ ଭିତରେ ମୁଖ ଲୁକ୍‌କାୟିତ କରି କରିଛି ଶୟନ । ତାହାକୁ ଜାଗ୍ରତ କରାଇବା କ୍ରିୟାକୁ କହନ୍ତି କୁଣ୍ଡଳିନୀ ଜାଗରଣ । ସନ୍ଥ କବି ଅଚ୍ୟୁତାନନ୍ଦ ଦାସ 'ଜ୍ଞାନ ପ୍ରଦୀପ ଗୀତା' ରେ ଶିଶୁବେଦ ତତ୍ତ୍ୱ କରିଛନ୍ତି ବର୍ଣ୍ଣନା-

ପଞ୍ଚବେଦ ସେ ଯେ କୁଣ୍ଡଳିନୀ ବୋଲି
        ମହାଶକ୍ତି ନାମ ତାର
ତ୍ରିପୁରା ଘାଟ ସେ ବାଟ ଜଗିଛଇଁ
        ଦୋମୁହାଁ ସର୍ପ ଯହିଁର । (ପୃଷ୍ଠା ୧)

ପୁନଶ୍ଚ ଅନ୍ୟ ଏକ ଉଦାହାରଣ ତାହାଙ୍କ 'ଶବ୍ଦ ବ୍ରହ୍ମ ଗୀତା' କରିଛନ୍ତି ବ୍ୟକ୍ତ-

ସହସ୍ର ଦଳ କମଳ ପରେ
        ଭ୍ରଂସଳ ଉଡ଼ି ତୁମ୍ଭେ ମତ ଭୋଳେ ।
ତହିଁ ଉପରେ ନିରାକାର ଭୂମି
        ଅଲେଖ ବିଜେ ନିରଞ୍ଜନ ସ୍ୱାମୀ ।
ଯେବଣ ଜ୍ୟୋତି ଅନ୍ତରୀକ୍ଷ ମଧ୍ୟେ
        ଶିଶୁବେଦ ପୁରି ଜ୍ଞାନ ହୃଦୟେ । (ପୃଷ୍ଠା ୨୧)

ଏହି ଦୁଇ ଉଦାହରଣ ସ୍ପଷ୍ଟ କରେ ଯେ ଶିଶୁବେଦର ବିଷୟ ଅଟେ ନାଡୀତତ୍ତ୍ୱ । ନାଦତତ୍ତ୍ୱ ପାଇଁ ଲକ୍ଷ୍ୟ କରି ହେବ 'ହରିବଂଶ'ର ନିମ୍ନ ପଂକ୍ତିତକ-

ଚଞ୍ଚୁପୁଟ ଚାଞ୍ଚପୁଟ ଭର ହର ଭେଦ
        ତୁମ୍ଭେ ଅନାଦି ଈଶ୍ୱର ମହ୍ନି ଶିଶୁବେଦ
ଜପ ନିୟମ ଧାରଣ ଆଦି ମହାଯୋଗ
        କାୟା ବିଶୁଦ୍ଧି ନିମନ୍ତେ ବହି ଅଛ ଅଙ୍ଗ । (ପୃଷ୍ଠା ୯୩୧)



Source: Author, Digitized by PPRACHIN, SOA

ଗୋରେଖ ନାଥଙ୍କ ରଚନାରୁ ସଂଗୃହୀତ ପଚିଶଟି ଶ୍ଳୋକର ଉତ୍କଳୀୟ ଭାଷା ରୂପ ପ୍ରାପ୍ତ ହୋଇଛି 'ଶିଶୁବେଦ' ଶୀର୍ଷକ । ଏହା ଏକ ଯୋଗ -ତ୍ରାଂତ୍ରିକ ଆଧ୍ୟାତ୍ମିକ ଗ୍ରନ୍ଥ । ସୁଷୁମ୍ନା ନାଡ଼ୀ, ଯାହା ସମ୍ବନ୍ଧରେ କୁହାଯାଇଛି, ସାହଂ ସୁଷୁମ୍ନା ରୂପେଣ ବର୍ତ୍ତେ ଦେହେଷୁ ଦେହିନାମ୍, ମୁଁ ଜୀବ ଶରୀରରେ ସୁଷୁମ୍ନା ରୂପରେ କରେ ଅବସ୍ଥାନ । 'ଲକ୍ଷ୍ମୀତନ୍ତ' କରିଛନ୍ତି ପ୍ରତିପାଦନ-

ପଞ୍ଚାକ୍ଷରୋ ହ୍ୟୟଂ ମଂତ୍ରଃ ସର୍ବଭୋଗ ସମୃଦ୍ଧିଦଃ
ସୁଷୂମ୍ନା ନାମ ଯା ନାଡ଼ୀ ନାଡ଼ୀଚକ୍ରସ୍ୟ ନାୟିକା । ୧୮୧ ।
ମୁକ୍ତିଯାନଂ ମହାଯାନଂ ଯୋଗିଯାନମିତି ଶ୍ରୁତା
ଶକ୍ତିର୍ଯା ବୈଷ୍ଣବୀ ସୂକ୍ଷ୍ମା ମନ୍ମୟୀ ପରିକୀର୍ତ୍ତିତା ।୧୮୨।

ଅର୍ଥାତ୍ ନାଡ଼ୀଚକ୍ର ମଧ୍ୟରେ ସୁଷୁମ୍ନା ନାମକ ନାଡ଼ୀ ଅଟେ ନାୟିକା । ଏହା ମୁକ୍ତିଯାନ, ମହାଯାନ ନାମରେ ପରିଚିତ । ସେ ବୈଷ୍ଣବୀ ଶକ୍ତି, ଯିଏ ସୂକ୍ଷ୍ମା ଓ ମନ୍ମୟୀ ରୂପେ ବିଦିତା । ସମସ୍ତ ସଂକଳ୍ପର ବିଷୟବସ୍ତୁ ଏହାକୁ ଅବଲମ୍ବନ କରି କରନ୍ତି ଅବସ୍ଥାନ । ପ୍ରତି ଜୀବର ଶରୀରରେ ଏହା ଉର୍ଦ୍ଧ୍ୱ ଓ ନିମ୍ନକୁ ଭେଦ କରି ଯାଇଅଛି । ସେଇ ସୁଷୁମ୍ନା ପରମାକାଶ ବା ବ୍ରହ୍ମରନ୍ଧ୍ର ପର୍ଯ୍ୟନ୍ତ ପରିବ୍ୟାପ୍ତ । ଅଖିଳ ଜୀବଙ୍କୁ ସମସ୍ତ ଦୁଃଖରୁ ମୁକ୍ତି ଦେବା ପାଇଁ ସମସ୍ତ ଜୀବଙ୍କ ଶରୀରରେ, ସାହଂ ସୁଷୁମ୍ନା ରୂପେଣ ବର୍ତ୍ତେ ଦେହେଷୁ ଦେହିନାମ୍, ମୁଁ ସୁଷୁମ୍ନା ରୂପରେ କରିଛି ଅବସ୍ଥାନ ।

ନାଡ଼ୀ ଓ ନାଦ ଆଲୋଚନା ପରେ ଶିଶୁବେଦରେ ଆଲୋଚ୍ୟ ପ୍ରସଙ୍ଗ ଥିଲା ପ୍ରଣବ । ଅଚ୍ୟୁତାନନ୍ଦ ଦାସଙ୍କ 'ହରିବଂଶ'ରେ ବର୍ଣ୍ଣିତ-

ଓଁକାର ମୂଳମଂତ୍ର ଯେ ଶିଶୁବେଦ ବାଣୀ
ଏ ସଂସାର ଯାକ ତାହା ସଂଚିଲାକ ଆଣି ।
ଓଁକାର ପୂର୍ବକ ସାମବେଦର ଯେ ବାଣୀ
ଶିଶୁବେଦ ସହିତରେ ଉଚ୍ଚାରିଲେ ଆଣି ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଏ ଚାରି
ଓଁକାର ମୂଳ ମନ୍ତ୍ରରେ ଶିଶୁବେଦ ଭରି ।

ସେହି ଓଡ଼ିଆ ଭାଷା ସାହିତ୍ୟ ଆଦିକାଳର ଅନ୍ୟ ଖଣ୍ଡିଏ ଦୁଷ୍ପ୍ରାପ୍ୟ ଗ୍ରନ୍ଥ ଗୋରେଖ ନାଥଙ୍କ ରଚିତ 'ସପ୍ତାଙ୍ଗ ଯୋଗ', ଏହାର ଗଦ୍ୟାଦର୍ଶ ତୁଳନା ଓ ତର୍ଜମା ପାଇଁ ଏଠାରେ କରାଗଲା ଉଦ୍ଧୃତ-' ପାର୍ବତୀ ଶକ୍ତି । ଘଣ୍ଟିକା ମହେଶ । ଶଯ୍ୟା ପାର୍ବତୀ । ପାର୍ବତୀ ରୂପେ



Source: Author, Digitized by PPRACHIN, SOA

ସଂସାର ନାଶ କରଇ ସେ ଚାରିମାସେ ଚତୁର୍ବର୍ଗ ହୁଅଇ । ପାଞ୍ଚ ମାସେ ହୃଦୟ ଚକ୍ର ବାର ପାଖୁଡ଼ାରେ ବାର ଅକ୍ଷର ବସନ୍ତି ।'

ଏହାର ପରବର୍ତ୍ତୀ ଗଦ୍ୟ ଷୋଡ଼ଶ ଶତକ 'ତୁଳାଭିଣା' ଜଗନ୍ନାଥ ଦାସଙ୍କ ରଚିତ ଗ୍ରନ୍ଥରୁ ହେଲା ଉଦ୍ଧୃତ- 'ତହିଁ ଅବନା ଆଠ ଅକ୍ଷର କଲା । ତହୁଁ ବ୍ରହ୍ମ ବୀଜ ସଙ୍ଗତେ ମନ ପବନ ମିଶିଲା । ପଚିଶ ପ୍ରକୃତି ହେଲା । ପ୍ରଥମେ କାମ ଜାତ ହେଲା । ତହୁଁ କ୍ରୋଧ ହେଲା ।'

'ରୁଦ୍ର ସୁଧାନିଧି' ଗଦ୍ୟ ଏବଂ 'ସପ୍ତାଙ୍ଗ ଯୋଗ' ଗଦ୍ୟ ସହିତ 'ଶିଶୁବେଦ' ଗଦ୍ୟର ସମ୍ବନ୍ଧ ନିକଟତମ । କିନ୍ତୁ 'ଶିଶୁବେଦ'ର ଭାଷା ଉକ୍ତ ଦୁଇ ଗଦ୍ୟଠାରୁ ବୋଧହୁଏ ଅସ୍ୱଚ୍ଛ । ତେଣୁ 'ଶିଶୁବେଦ' ଗଦ୍ୟ ରୁଦ୍ରସୁଧାନିଧି ଓ ସପ୍ତାଙ୍ଗଯୋଗ ଗଦ୍ୟଠାରୁ ବୟସ୍କ ବା ପ୍ରାଚୀନ । ଷୋଡ଼ଶ ଶତକ 'ତୁଳାଭିଣା' ଗଦ୍ୟ କିମ୍ବା 'ବିଷ୍ଣୁଗର୍ଭ ପୁରାଣ' ଗଦ୍ୟ ନୁହେଁ ସେତେ ନିକଟ ଆତ୍ମୀୟ । ବରଂ ଶେଷୋକ୍ତ ଦୁଇ ପୁସ୍ତକର ଭାଷା ଆଧୁନିକ ଭାଷାର ବେଶ୍ ନିକଟତମ ।

ଯୋଗୀଜନଙ୍କ ଖଣ୍ଡିଏ ଅମୂଲ୍ୟରତ୍ନ, ଶତଶତ ବର୍ଷ ଧରି ବହୁ ପ୍ରସାରିତ ବିଖ୍ୟାତ 'ଶିଶୁବେଦ' ଓଡ଼ିଆ ଭାଷା ବିକାଶ କ୍ରମର ଗୋଟିଏ ସୋପାନ, ଏଥିରେ କେହି ହୋଇ ନାହାନ୍ତି ଭିନ୍ନ ମତ । ମାତ୍ର ପୋଥିଟି ଦୁଷ୍ପ୍ରାପ୍ୟ । ଶିଶୁବେଦ ଉପରେ ଗବେଷଣା କରାଇବାକୁ ଆମ ବିଶ୍ୱବିଦ୍ୟାଳୟରେ ନାହାନ୍ତି ଅଧ୍ୟାପକ କିମ୍ବା ନାହାନ୍ତି ଗବେଷକ । ଆମର ସମୃଦ୍ଧ ଅତୀତ ଓ ଗୋଟିଏ ଉଜ୍ଜ୍ୱଳ ଇତିହାସ ଯେ ରହିଛି ଏକଥା କେମିତି ଜାଣିବେ ଆମ ଦାୟାଦ ? ଏହି ବର୍ତ୍ତମାନକୁ ନେଇ ଗୋଟିଏ ଶାସ୍ତ୍ରୀୟ ମାନ୍ୟତା ପ୍ରାପ୍ତ ଭାଷାର ଗ୍ରନ୍ଥାଗାରରେ କାହିଁ ସେହି ଗ୍ରନ୍ଥ ? ଅନ୍ଧକାରରେ ବୁଡାଇ ସାରିଲୁଣି ଆମ ସାରସ୍ୱତ ଐତିହ୍ୟ ଓ ଇତିହାସର ଐଶ୍ୱର୍ଯ୍ୟ ।





Source: Author, Digitized by PPRACHIN, SOA

# ଯୋଗୀ ଗୋରେଖନାଥ ଓ ଶିଶୁବେଦର ରୂପରେଖ: ଏକ ଦୃଷ୍ଟିପାତ

**ଉଡ୍‌ଡୀୟାନ ପୀଠ ଓ ଯୋଗୀ ଗୋରେଖ ନାଥ:-**

ବୌଦ୍ଧଧର୍ମ ପୃଷ୍ଟପୋଷକ ଓଡ଼ିଆ ଭୌମକର ବଂଶ । ପ୍ରାୟ ଦୁଇ ଶତକବର୍ଷ ଶାସନର ଅବସାନ ଘଟେ ମହାରାଣୀ ଦଣ୍ଡୀ ମହାଦେବୀ (ଖ୍ରୀ.ଅ. ୯୨୩)ଙ୍କ ଠାରେ । ଯଯାତି କେଶରୀ୧ମ, ସୋମବଂଶୀ ଶାସନର ଘଟେ ଅଭ୍ୟୁଦୟ, ସମୟ ୯୭୨ ଖ୍ରୀଷ୍ଟାବ୍ଦ । ସହଜିଆ ଯୌନାଚାର ଗଣ ଜୀବନରେ ସୃଷ୍ଟିକରେ ଘୃଣା ଏବଂ ପୁନର୍ଭୁଦୟ ଘଟେ ବ୍ରାହ୍ମଣବାଦର ଓ ପ୍ରାଧାନ୍ୟ ବଢ଼େ ସଂସ୍କୃତ ଭାଷାର । ବୌଦ୍ଧ ସହଜ ସାଧକ ରାଜ ଆକ୍ରୋଶ ଓ ପ୍ରଜାଙ୍କ ଥିବା ଘୃଣ୍ୟ ନଜରରୁ ନିଜକୁ ରକ୍ଷା କରିବାକୁ ବୁଦ୍ଧଙ୍କ ସ୍ଥାନରେ ସ୍ଥାପିତ କରନ୍ତି ଶିବଙ୍କୁ । ସହଜ-ସାଧକ ନାଥ-ସଂପ୍ରଦାୟରେ ବଦଳାନ୍ତି ନିଜ ପରମ୍ପରାକୁ ।

୮ମରୁ ପ୍ରାୟ ୧୦ମ ଶତକ ମଧ୍ୟରେ ସିଦ୍ଧାଚାର୍ଯ୍ୟ ରଚନା କରନ୍ତି ସାଂଧ୍ୟ ଭାଷାରେ ଶିଷ୍ୟଙ୍କୁ ଶିକ୍ଷାଦାନ ପାଇଁ ଚର୍ଯ୍ୟାପଦ । ଚର୍ଯ୍ୟାପଦ ରଚନାର ଅନ୍ୟ ଏକ ତଥା ମୁଖ୍ୟ ପ୍ରୟୋଜନ ଧର୍ମପ୍ରଚାର ଆଭିମୁଖ୍ୟ ।

ଡକ୍ଟର ବେଣୁଧର ପାଢ଼ୀ 'ଓଡ଼ିଆ ସାହିତ୍ୟର ଅଭିନବ ଇତିହାସ'ରେ କରିଛନ୍ତି ଉଲ୍ଲେଖ, ବୌଦ୍ଧ ଧର୍ମର ପ୍ରଚାର ତଥା ପ୍ରସାର ଆଭିମୁଖ୍ୟରୁ ହିଁ ଜନ୍ମ ନେଇ ଥିଲା ଓଡ଼ିଆ ଭାଷା-ସାହିତ୍ୟ । ଓଡ଼ିଆ ଭାଷା-ସାହିତ୍ୟର ଶୈଶବ ସହଜିଆ ସିଦ୍ଧାଚାର୍ଯ୍ୟଙ୍କ ଚର୍ଯ୍ୟାଗୀତ । ଚର୍ଯ୍ୟାଗୀତ ରଚନାକାଳ କେବଳ ଓଡ଼ିଆ ସାହିତ୍ୟ ଜନ୍ମକାଳ ନୁହେଁ, ବଂଗଳା ଓ ମୈଥିଳୀ ପ୍ରଭୃତି ଅନ୍ୟ କେତେକ ଭାଷାର ସ୍ୱନକ୍ଷତ୍ରକୁ ମଧ୍ୟ ଉତ୍ତରିତ କରିଛି । ଏହି ସିଦ୍ଧାଚାର୍ଯ୍ୟ ବୌଦ୍ଧବିହାରମାନ ସ୍ଥାପନ କରି ଭାରତର ବହୁଅଂଶ ସହିତ ତିବ୍ବତ ଓ ନେପାଳ ଆଦି ବ୍ୟାପି ଯାଇଛନ୍ତି । ସ୍ଥାନୀୟ ବ୍ୟବହୃତ ଆଦିମ ଶବ୍‌ଦ ସହିତ ପାଲି ଓ ଅପଭ୍ରଂଶ ଶବ୍‌ଦକୁ ଫେଣ୍ଟି ତତ୍‌କାଳୀନ ବୋଧ୍ୟ ସୁଗମ ଭାଷାରେ ନିଜ ଧାର୍ମିକ ଧାରାର ପ୍ରସାର ଓ ପ୍ରଚାର କରିଛନ୍ତି ।

ବୌଦ୍ଧ ସାହିତ୍ୟ 'ବୌଦ୍ଧଗାନ ଓ ଦୋହା' ସହଜଯାନର ଧାର୍ମିକ ତତ୍ତ୍ୱ-ଗୀତ ଚର୍ଯ୍ୟାପଦରୁ ଓଡ଼ିଆ ଭାଷା-ସହିତ୍ୟର ଜନ୍ମ ଓ ଏହି ଠାରୁ ଘଟୁଛି ତାହାର କ୍ରମ ବିକାଶ ।



Source: Author, Digitized by PPRACHIN, SOA

ଏହି ଧାର୍ମିକ ଧାରା ନିରୀଶ୍ୱର ସ୍ଥାନରେ ବ୍ରାହ୍ମଣବାଦ ସହିତ ଚତୁର ଭାବେ ସାଲିସ୍‌ଟିଏ କରନ୍ତି ଶିବ ଓ ଶିବାଙ୍କ ମୂର୍ତ୍ତି କରି ଆରାଧିତ ଏବଂ ସିଦ୍ଧ ସାଧକ ହୁଅନ୍ତି ନାଥ ସଂପ୍ରଦାୟ । ସେମାନଙ୍କ ମଧ୍ୟରେ ଜଣେ ଶକ୍ତିଶାଳୀ ସ୍ରଷ୍ଟା 'ଅବଧୂତ ନାରାୟଣ ସ୍ୱାମୀ' ରଚନା କରନ୍ତି ଶିବଙ୍କୁ କେନ୍ଦ୍ରରେ ରଖି 'ରୁଦ୍ରସୁଧାନିଧି' । 'ରୁଦ୍ରସୁଧାନିଧି' ରଚନା ହେବା ବେଳକୁ ତ୍ରୟୋଦଶ ଶତକ ଶେଷ ଏବଂ ଚତୁର୍ଦ୍ଦଶ ଶତାବ୍ଦୀ ଆରମ୍ଭ କରିଛି ତାହାର ରାଜତ୍ୱ । ଅନେକଙ୍କ ମତ ଚର୍ଯ୍ୟାଗୀତ ଦ୍ୱାଦଶ ଓ ତ୍ରୟୋଦଶ ଶତକ ପର୍ଯ୍ୟନ୍ତ ମଧ୍ୟହୋଇଛି ରଚିତ । ଧାର୍ମିକ ଧାରାଟି କ୍ଷୀଣ ହୋଇ ଆସିଛି, ତାହା ଅର୍ଥ ନୁହେଁ ସୋମବଂଶୀ ଶାସନ ପରଠାରୁ ଲୋପ ପାଇ ଯାଇଛି ।

'ଚର୍ଯ୍ୟାପଦ' ଓ 'ରୁଦ୍ରସୁଧାନିଧି' ରଚନା କାଳ ମଧ୍ୟରେ ଯେଉଁ ଫାଙ୍କା ସ୍ଥାନ, ତାହା ଦୁଇଶତ ବର୍ଷ ପ୍ରାୟତଃ କିମ୍ବା ତାହା ଠାରୁ ହୁଏତ ଆହୁରି ଅଧିକ, ଚାରିଶତ ଶତବର୍ଷ ହୋଇପାରେ ମଧ୍ୟ । ଏହି ଫାଙ୍କା ଅବଧିରେ କ'ଣ କିଛି ହୋଇନାହିଁ ରଚିତ ? ବରଂ ତାହା କାଳର ଗର୍ଭସ୍ଥ । ଭାରତୀୟ ଗବେଷକ ଏହି ଗ୍ୟାପ୍ କାଳର ଜଣେ ମହାନ୍ ସ୍ରଷ୍ଟାଙ୍କୁ ହୋଇଛନ୍ତି ପ୍ରାପ୍ତ, ସିଏ ଗୋରକ୍ଷ ନାଥ । ଗୋରକ୍ଷ ନାଥଙ୍କ ରଚନାବଳୀ ଉପରେ ଗବେଷଣା ସଂଦର୍ଭ ରଚନା କରିଛନ୍ତି ଡକ୍ଟର ବଂଶୀଧର ମହାନ୍ତି । 'ଚର୍ଯ୍ୟାପଦ' ଓ 'ରୁଦ୍ରସୁଧାନିଧି' ମଝିରେ ଡ. ମହାନ୍ତି ଗୋରକ୍ଷନାଥଙ୍କ ରଚିତ 'ଶିଶୁବେଦ' ସଂପୂର୍ଣ୍ଣ ସଂଗ୍ରହ କରିଛନ୍ତି । ତତ୍‌ସହିତ ଗୋରକ୍ଷଙ୍କ ରଚିତ ବା ଗୋରକ୍ଷଙ୍କ ନାମ ସଂଲଗ୍ନ ବହୁପଦାବଳୀ କରିଛନ୍ତି ଉପସ୍ଥାପିତ ।

ଡକ୍ଟର ମୋହନ ସିଂହ ତାଙ୍କର 'Gorakhnath and Medieval Hindu Mysticism' ସନ୍ଦର୍ଭରେ ନିରୂପଣ କରିଛନ୍ତି ୯ମ ଓ. ୧୦ମ ଶତକର ନାଥ ସିଦ୍ଧ ଗୋରକ୍ଷ ନାଥ । 'ନାଥ ସଂପ୍ରଦାୟର ଇତିହାସ, ଦର୍ଶନ ଓ ସାଧନ ପ୍ରଣାଳୀ' ଗ୍ରନ୍ଥରେ ବଂଗୀୟ ଗବେଷିକା ଡକ୍ଟର କଲ୍ୟାଣୀ ମଲ୍ଲିକ ଦ୍ୱାଦଶ ଶତକ ପୂର୍ବର ସ୍ରଷ୍ଟା ବୋଲି ତାହାଙ୍କୁ ଦର୍ଶାଇଛନ୍ତି । G.W.Briggs ତାଙ୍କ ରଚିତ "Garakhnath & the Kanfata Yogis" ପୁସ୍ତକରେ କରିଛନ୍ତି ଉଲ୍ଲେଖ ସମ୍ଭବତଃ ଏକାଦଶ ଶତକ ପ୍ରଥମ ଭାଗରେ ସିଏ ଥିଲେ ଜୀବିତ ଏବଂପୂର୍ବବଂଗ ଅଞ୍ଚଳରେ ଘଟିଥିଲା ତାହାଙ୍କ ପ୍ରଥମ ଆବିର୍ଭାବ । ହଜାରି ପ୍ରସାଦ ଦ୍ୱିବେଦୀ ତାଙ୍କ ପୁସ୍ତକ 'ନାଥ ସଂପ୍ରଦାୟ'ରେ ଉଲ୍ଲେଖ କରିଛନ୍ତି ଗୋରକ୍ଷନାଥଙ୍କ ସମୟ ୯୪୩ ଖ୍ରୀଷ୍ଟାବ୍ଦ । "Nirguna School of Hindi Poetry" ରେ P.D.Barthwal ନିର୍ଣ୍ଣୟ କରିଛନ୍ତି ଗୋରକ୍ଷନାଥ ୧୦ମ ଶତକରେ ଆବିର୍ଭୂତ ଓ ସିଏ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ସୃଷ୍ଟି କରିଥିଲେ ଐକ୍ୟ ।



Source: Author, Digitized by PPRACHIN, SOA

'ହିଷ୍ଟୋରୀ ଅଫ୍ ଇଣ୍ଡିଆନ୍ ଫିଲୋସଫୀ'ର ସପ୍ତମ ଖଣ୍ଡ 'ଇଣ୍ଡିଆନ୍ ମିଷ୍ଟିସିଜିମ୍ ଇନ୍ ମହାରାଷ୍ଟ୍ର' ରେ S.K.Belval Kar ଓ R.D.Rana De ଉଲ୍ଲେଖ କରିଛନ୍ତି ମତ୍ସ୍ୟେନ୍ଦ୍ରନାଥଙ୍କ ଠାରୁ ଗୋରକ୍ଷନାଥ ନେଇଥିଲେ ଦୀକ୍ଷା । ଜ୍ଞାନଦେବଙ୍କ ପ୍ରପିତାମହ ଗୋରକ୍ଷନାଥଙ୍କ ଠାରୁ ଗ୍ରହଣ କରିଥିଲେ ଦୀକ୍ଷା । ଜ୍ଞାନଦେବ ୧୨୭୫ ଖ୍ରୀଷ୍ଟାବ୍ଦରେ ଜନ୍ମ, ତେଣୁ ତାଙ୍କ ପ୍ରପିତାମହ ପ୍ରାୟତଃ ୧୨୦୦ ଖ୍ରୀ.ଅ. ପାଖାପାଖି । ଗୋରକ୍ଷ ନାଥଙ୍କ ସ୍ମୃତି ମହାରାଷ୍ଟ୍ରର ସତରା ଜିଲ୍ଲାର 'ଗୋରକ୍ଷ ଛିଞ୍ଚା' ନାମକ କଇଁଆ ଗଛଟିଏ ଅଛି ଏବଂ ମତ୍ସ୍ୟେନ୍ଦ୍ର ନାମକ ପାହାଡ଼ଟିଏ ମଧ୍ୟ ରହିଅଛି । ଓଡ଼ିଶାରେ ଖୁବ୍ ପୁରାତନ ସମୟରୁ ଆଧୁନିକ ଜଗତସିଂହ ପୁର ଜିଲ୍ଲାସ୍ଥ ଲହଙ୍ଗାଠାରେ 'ଗୋରେଖ ଗାଦି' ଅଦ୍ୟାବଧି ମଧ୍ୟ ରହିଅଛି । କିନ୍ତୁ ନାଥସିଦ୍ଧଙ୍କ ମଠ ପୁରୀ, ଭୁବନେଶ୍ୱର, କେନ୍ଦ୍ରାପଡ଼ା, ସମ୍ବଲପୁର, ବୌଦ୍ଧ, ଆଠ ମଲ୍ଲିକ ଓ ଗଞ୍ଜାମ ଆଦି ଜିଲ୍ଲାରେ ପରିବ୍ୟାପ୍ତ । ତିବତୀୟ କିମ୍ବଦନ୍ତୀ ଅନୁଯାୟୀ ଗୋରକ୍ଷନାଥ ଜଣେ ବୌଦ୍ଧ ତାନ୍ତ୍ରିକ । ବ୍ରିଗ୍‌ସ କହନ୍ତି କାନଫଟା ଯୋଗୀ ବୌଦ୍ଧ, କିନ୍ତୁ ୧୨୦୦ ଖ୍ରୀଷ୍ଟାବ୍ଦ ଶେଷ ଭାଗକୁ ସେମାନେ ଶୈବ ହୋଇଯାଇଥିଲେ । ନେପାଳରେ ବୌଦ୍ଧଧର୍ମ ଗୋରକ୍ଷନାଥଙ୍କ ନାଥଧର୍ମ ପ୍ରଭାବରେ ହୋଇଥିଲା ଲୋପ ।

ଡ. ମୋହନ ସିଂହ ନେପାଳର 'ଗୋର୍ଖା' ମାନଙ୍କ ସହିତ ଗୋରକ୍ଷନାଥଙ୍କୁ କରିଛନ୍ତି ସମ୍ବନ୍ଧିତ ଏବଂ ନେପାଳୀ ଅଭିଧାନ 'Name of a Nepalese Saint' ବୋଲି ହୋଇଛି ଉଲ୍ଲେଖ । ଗୋଦାବରୀ ନଦୀକୂଳସ୍ଥ ଚନ୍ଦ୍ରଗିରି ଠାରେ ତାଙ୍କର ଜନ୍ମ ବୋଲି 'ଯୋଗୀ ସଂପ୍ରଦାୟାବିଷ୍କୃତି'ରେ ଚନ୍ଦ୍ରନାଥ ଯୋଗୀ ଦେଇଛନ୍ତି ମତ । ଜର୍ଜ ଗ୍ରୀୟରସନ୍‌ଙ୍କ ମତ ପଶ୍ଚିମ ହିମାଳୟ ଆଖପାଖ ଅଞ୍ଚଳରେ ସିଏ କରୁଥିଲେ ବସବାସ । ବ୍ରିଗ୍‌ସଙ୍କ ଅନୁମାନ ପ୍ରଥମେ ସିଏ ଥିଲେ ବଜ୍ରଯାନୀ ସିଦ୍ଧ, ପରେ ଗ୍ରହଣ କରିଥିଲେ ଶୈବଧର୍ମ । ଭାରତର ପୂର୍ବାଞ୍ଚଳ, ବିଶେଷତଃ ବଙ୍ଗ ଦେଶରେ ସିଏ ଜନ୍ମିତ ବୋଲି ଡ. କଲ୍ୟାଣୀ ମଲ୍ଲିକ କରିଛନ୍ତି ଉଲ୍ଲେଖ ।

ଶ୍ରୀକୁବେର ଦଳାଇ 'ଉତ୍କଳ ସାହିତ୍ୟ' ୪୨ଭାଗ, ଜ୍ୟେଷ୍ଠ ୧୪୩୫ ଦ୍ୱିତୀୟ ସଂଖ୍ୟା 'ଖୋରଧାର ପ୍ରାଚୀନ ସାହିତ୍ୟ' ଶୀର୍ଷକ ଗୋଟିଏ ପ୍ରବନ୍ଧରେ ଓଡ଼ିଆ କବି ତାଲିକାରେ ତାହାଙ୍କୁ ନିମ୍ନ ରୂପରେ କରିଛନ୍ତି ଅବସ୍ଥାପିତ—

'ଗୋରେଖନାଥ-ଅଚ୍ୟୁତାନନ୍ଦ ଦାସଙ୍କ ଶୂନ୍ୟ ସଂହିତାରେ ଗୋରେଖ ନାଥଙ୍କ ନାମ ଲେଖା ଅଛି । ସେ 'ସହଜିୟା' ଧର୍ମର ଜଣେ ପ୍ରଧାନ ପ୍ରଚାରକ । ଭୁବନେଶ୍ୱର ନିକଟସ୍ଥ ପ୍ରାଚୀନଦୀ କୂଳରେ ତାହାଙ୍କ ଆଶ୍ରମ ଥିଲା ଓ ବହୁକାଳ ସେ ସେଠାରେ ଅତିବାହିତ କରିଥିଲେ । ଓଡ଼ିଆ 'ସପ୍ତାଙ୍ଗଯୋଗ' ପୋଥି ଖଣ୍ଡି ଏହାଙ୍କ ଦ୍ୱାରା ରଚିତ । ଓଡ଼ିଆ ଛଡ଼ା ଏ ହିନ୍ଦୀ ଓ ବଂଗଳା ଭାଷାରେ ମଧ୍ୟ ଗ୍ରନ୍ଥ ରଚନା କରି ଯାଇଛନ୍ତି । ×××



Source: Author, Digitized by PPRACHIN, SOA

ଗୋରେଖନାଥ କେଉଁ ଦେଶର ଲୋକ ସେ ବିଷୟରେ କୌଣସି ସିଦ୍ଧାନ୍ତ ଏ ପର୍ଯ୍ୟନ୍ତ ହୋଇନାହିଁ, କିନ୍ତୁ ସେ ଯେଉଁ ଦେଶର ଲୋକ ହୁଅନ୍ତୁ ପଛକେ, ଭୁବନେଶ୍ୱର ନିକଟରେ ସେ ଜୀବନର ଅଧିକାଂଶ କାଳ କଟାଇ ଥିବାରୁ ଓ ଓଡ଼ିଆ ଭାଷାରେ ପୁସ୍ତକ ରଚନା କରି ଯାଇଥିବାରୁ ତାଙ୍କୁ ଓଡ଼ିଆ କବିସମାଜରେ ସ୍ଥାନ ଦିଆଯାଇଛି ।'

ଗୋରକ୍ଷନାଥ ବା ଗୋରେଖନାଥ 'ଶିଶୁବେଦ' ଭାଷାରେ ଅପଭ୍ରଂଶ ଅପେକ୍ଷା ବହୁଳ ଓଡ଼ିଶା ଶବ୍ଦ ଓ ପ୍ରତ୍ୟୟ ହୁଏ ଉପଲବ୍ଧ । ଏହି ଏକମାତ୍ର ଟେକ୍‌ନିକାଲ୍ କାରଣ ସୂଚିତ କରେ ସିଏ ଓଡ଼ିଶା ଜନ୍ମିତ ସନ୍ଥ । ଗୋ-ରକ୍ଷ ଅର୍ଥାତ୍ ଗୋପାଳନ ସମ୍ବନ୍ଧୀୟ ବୃତ୍ତିର ଉତ୍ର ଦୈଶିକ ଶବ୍ଦ ଗୋରଖ । ପୁନଶ୍ଚ ଉତ୍କଳ ଉଡ୍‌ଡୀୟାନ ପୀଠ 'ଗୋରେଖ ଶତକ' ଲେଖକ ମହାନ୍ ଯୋଗୀ ଉତ୍କଳ ସମ୍ଭୂତ ନ ହୋଇ ଅନ୍ୟ କେଉଁ ଠାରୁ ଆସି ଏଭଳି ଅଦ୍ୱୟ ସିଦ୍ଧି ପ୍ରାପ୍ତ ହୋଇଛନ୍ତି ଆଶା କରିବା ଅନୁଚିତ । ପୁନଶ୍ଚ 'ଶିଶୁବେଦ' ସମ୍ବନ୍ଧରେ ତଥ୍ୟ ଦେଇଥାଏ ଓଡ଼ିଶାର ଗୋଟିଏ ଜାତି 'ସରାକ' । ସରାକ ଗୁରୁ ବୟୋବୃଦ୍ଧ ଦୀନବନ୍ଧୁ ଦାସଙ୍କୁ ଆବିଷ୍କାର କରିଥିଲେ ଡ. ମହାନ୍ତି ବାଙ୍କୀ ଉପଖଣ୍ଡ ରଗଡ଼ି ନାମକ ଗ୍ରାମରୁ । ପୁନଶ୍ଚ ବଡମ୍ବା ମାଣିଆବନ୍ଧର ସଦାଶିବଙ୍କ ପାତ୍ର ସରକଜାତି ଧର୍ମଗ୍ରନ୍ଥ 'ଶିଶୁବେଦ' ସମ୍ବନ୍ଧରେ ତାଙ୍କ ରଚିତ 'ବୁଦ୍ଧଦେବ ଓ ବୌଦ୍ଧଧର୍ମ' ଗ୍ରନ୍ଥରେ କରିଛନ୍ତି ଆଲୋକିତ । ସେହି ମାନେ ଓଡ଼ିଶାରେ ବୌଦ୍ଧ ସଂପ୍ରଦାୟର ଅବଶେଷ । ମହାଭାରତ ମଧ୍ୟପର୍ବ, ସାରଳା କରିଛନ୍ତି ଉଲ୍ଲେଖ, ଦେବକୀ କରିଛନ୍ତି 'କାମାକ୍ଷୀ' ବ୍ରତ, ବେଦାଧ୍ୟାୟୀ ବ୍ରାହ୍ମଣଙ୍କ ସହିତ ପଚିଶ ସହସ୍ର 'ଶିଶୁ ବେଦୀ'ଙ୍କୁ ସିଏ କରିଥିଲେ ନିମନ୍ତ୍ରିତ । ବ୍ରହ୍ମା, ରକ୍, ସାମ ଯର୍ଜୁ ଓ ଅଥର୍ବ ସୃଷ୍ଟି କରିଥିବା ବେଳେ ଶିବ ସୃଷ୍ଟି କରିଥିଲେ ଶିଶୁବେଦ । 'ଆୟୁର୍ବେଦ ଜ୍ୟୋତିର୍ବେଦ, ଧନୁର୍ବେଦ ଶିଶୁମୁନା ବେଦ', ଶିବସର୍ଜ୍ଜନା ଅନ୍ୟ ଚତୁର୍ବେଦ (ହିଷ୍ଟ୍ରି ଏଣ୍ଡ ଡକ୍ଟ୍ରିନ୍ସ ଅଫ୍ ଦି ନାଥଜ୍ / ଗୋପୀନାଥ କବିରାଜ, ୬ଷ୍ଠ ଭାଗ, ପୃଷ୍ଠା ୨୪) । 'ସଭାପର୍ବ'ରେ ବର୍ଣ୍ଣିତ ହୋଇଛି ।

ଆବର ଜ୍ୟୋତି ଧନୁ ସିଶୁମୁନା ଅଯପା ପଞ୍ଚବେଦ ମନ୍ତେଂ
ଯଥା ବାକ୍ୟ ଉଚ୍ଚାରଣ  କରନ୍ତି ପ୍ରୋହିତେ ।

ସୁଷୁମ୍ନା ଶବ୍‌ଦରୁ 'ସିଶୁମୁନା' ବା 'ଶିଶୁମୁନା' ଶବ୍ଦ ଓ ତହିଁରୁ ଶିଶୁବେଦ । ଅନ୍ୟଏକ ପ୍ରାଚୀନ ଓଡ଼ିଆ ଉପାଦେୟ ଗ୍ରନ୍ଥ ବିଷ୍ଣୁଗର୍ଭପୁରାଣ, ଚତୁର୍ଥ ଅଧ୍ୟାୟରେ ବର୍ଣ୍ଣିତ-

ସାମ-ରକ-ଯଜୁ-ଅଥର୍ବ  ମଧ୍ୟେ  ଶିଶୁବେଦ
ଶିଶୁବେଦ ମଧ୍ୟେ ଅଛି ବ୍ରହ୍ମରନ୍ଧ୍ର ଭେଦ ।
ଭ୍ରୂଲତା ମଧ୍ୟକୁ ସେ ଅଛି ଦ୍ୱାର ଫିଟି
ସେ ଦ୍ୱାରେ ଉଜାଣି ଟେକିଲେ ଅଲେଖଙ୍କୁ ଭେଟି ।



Source: Author, Digitized by PPRACHIN, SOA

ଅପ୍ରକାଶିତ ଗ୍ରନ୍ଥ 'ତତ୍ତ୍ୱସାର ଟୀକା ସିଦ୍ଧାନ୍ତ ଚନ୍ଦ୍ରିକା'ରୁ ଡ. ମହାନ୍ତି 'ଶିଶୁବେଦ' କୁ 'ଶିଶୁବୋଧ' ରୂପେ ପ୍ରାପ୍ତ ହୋଇଛନ୍ତି,- 'ଶିଶୁ ଯେ ବାଳକ । ବାଳକମାନେ ଅଳପକେ ତମଗୁଣ ବହନ୍ତି, ତାହାଙ୍କର ଯେଉଁ ବୋଧ । ସେ ଶିଶୁବେଦ ବୋଲଟି । ସୁଜନ ଜନ ନ ଜାଣନ୍ତି ଶିଶୁବେଦର ବାଣୀ । ଦୁଇ କର୍ଣ୍ଣରେ ତୁଳା ଦେଇଂ ବୁଝ ପରିମାଣି । ଯେଉଁ ଧ୍ୱନି ଆକାଶ ମଧ୍ୟରେ ପୁରୋଇଂ । ସେ ଶ୍ରୀ ଅନ୍ତର୍ଯ୍ୟାମୀ । ନିରାକାର ସ୍ୱାମୀ । ସେ ଶିଶୁବେଦଟି । ଯେକ ନୁହଂଇ ବେଳ ବିଧି ପୁଣି । ଶିଶୁବେଦ ମଧ୍ୟେଂ ପ୍ରକାଶ । ସେ ଯେ ଚକ୍ଷୁଟି । ଯେ ବାଳକ ମତି । ଏହି ମତରେ ବାଳ ତରୁଣ ବୃଦ୍ଧ ତିନିରୂପ ଧରିବ ତିନି କାଳରେ'। (ଓଡ଼ିଶାର ନାଥ ସଂପ୍ରଦାୟ ଓ ନାଥ ସାହିତ୍ୟ / ଡ. ବଂଶୀଧର ମହାନ୍ତି, ପୃଷ୍ଠା ୨୦୨) । ନାଥସିଦ୍ଧ ମଧ୍ୟରେ ଅବତାରବାଦ ପ୍ରଚଳିତ ଏବଂ ଅଲୌକିକତା ଧର୍ମ ପ୍ରବର୍ତ୍ତକଙ୍କ ଠାରେ ଆରୋପିତ । ଗୋରେଖ ସଂହିତାରେ ବର୍ଣ୍ଣିତ, 'ଅରୂପଟି ରେଖ ଶିଶୁ ବେଦ ସେହିଠାର / ଶିଶୁବେଦ ଭିତରୁ ସେ ଗୋରେଖ ଅବତାର ।' 'ସିଦ୍ଧ ସିଦ୍ଧାନ୍ତ ପଦ୍ଧତି'ରେ କୁହାଯାଇଛି ଗୋରେଖନାଥ ସ୍ୱୟଂ ଶିବ, 'ଅହମେବାସ୍ମି ଗୋରେକ୍ଷୋ ମୁଦ୍ରୂପଂ ତନ୍ନିବୋଧତ / ଯୋଗମାର୍ଗ ପ୍ରଚାରାୟ ମୟା ରୂପମିଦଂ ଧୃତମ୍ ।' ଏହି ପୁସ୍ତକରେ ବର୍ଣ୍ଣିତ ସିଏ ସମସ୍ତଙ୍କ ରକ୍ଷାକର୍ତ୍ତା । ସଂସାର ସମୁଦ୍ରରୁ ମାନବକୁ ମୋକ୍ଷ ପ୍ରଦାନ କରୁଥିବା ହେତୁ 'ଗୋରକ୍ଷ' ନାମରେ ପରିଚିତ । ପ୍ରବୃତ୍ତି ଓ ନିବୃତ୍ତି ଦୁଇ ପନ୍ଥାର ସିଏ ସଂସ୍ଥାପକ ଅଟନ୍ତି । ନିଜ ଆତ୍ମ ସ୍ୱରୂପ ବୋଧକରି ସ୍ଥାପିତ କରିଥାନ୍ତି ସଜ୍ଜନ ସୁରକ୍ଷା, ତେଣୁ ଗୋରକ୍ଷୋଽସୌ ନିଗଦ୍ୟତେ ।' ଅନ୍ୟ ଏକ ଯୌଗିକ ବ୍ୟାଖ୍ୟା ।

ଓଡ଼ିଆ ସାହିତ୍ୟ ଜନ୍ମପର୍ବରେ 'ଚର୍ଯ୍ୟାପଦ' ପରେ ଆସେ 'ଶିଶୁବେଦ' ଏବଂ ତତ୍‌ପରେ 'ରୁଦ୍ରସୁଧାନିଧି' ଗ୍ରନ୍ଥ । 'ରୁଦ୍ରସୁଧାନିଧି' ଶିବସ୍ତୁତି 'ସାକ୍ଷାତ୍ ବ୍ରହ୍ମ ସ୍ୱରୂପ । ସହସ୍ର ନାଡ଼ି ଚକ୍ର ଶୋଧନ । ଶୁକ୍ରାଦି ଋଷି ବଂଦିତ । ଶୁକ୍ର ତେଜ 'ଶିଶୁବେଦ' (ପୃଷ୍ଠା ୪୯) । ମହାଭାରତ ସଭାପର୍ବ, ବନପର୍ବ ଓ ବିରାଟପର୍ବ ଆଦିରେ ଭର୍ତ୍ତି ଶିଶୁଦେବ ପ୍ରଶସ୍ତି । 'ବନପର୍ବରେ ସାରଳା ଲେଖିଛନ୍ତି, 'ଯେବେଣ ଶାସ୍ତ୍ର ବାହାର ଶିଶୁମୁନା ବେଦୁଂ/ ଶୁଦ୍ର ମୁନି ପଦ ମୋର ଶ୍ରୀ ସାରଳା ପ୍ରସାଦୁଂ ।' ଚୈତନ୍ୟ ଦାସ 'ବିଷ୍ଣୁ ଗର୍ଭ ପୁରାଣ'ର ବହୁ ଅଧ୍ୟାୟରେ ଉତ୍କୀର୍ଣ୍ଣ କରାଇଛନ୍ତି 'ଶିଶୁଦେବ' ପ୍ରସଂଗ —

ନାରଦ ବୋଇଲେ ତୁ ଶୁଣିସି ନାଗରାଜା
ଶିଶୁବେଦ ପୁରାଣେ ଅଛି ମୁକତି ସାଧ୍ୟ ବୀଜା ।
ଶିଶୁବେଦ ପୁରାଣ ପଢ଼ନ୍ତି ଯେତେ ପ୍ରାଣୀ
ଏହି ମହୀମଣ୍ଡଳେ ସେମାନେ ବୋଲାନ୍ତି ବ୍ରାହ୍ମ ଜ୍ଞାନୀ ।



Source: Author, Digitized by PPRACHIN, SOA

ପରବର୍ତ୍ତୀ ପଞ୍ଚସଖା କାଳ ଶିଶୁବେଦ ପ୍ରଭାବରେ ଖୁବ୍ ପ୍ରଭାବିତ । 'ଶୂନ୍ୟସଂହିତା'ରେ ଅଚ୍ୟୁତଙ୍କ ପଂକ୍ତି- 'ଶିଶୁବେଦ ଉଲଟ ସେ ଅନାଦିର ଦେହ / ଫୁରୁଅଛି ନାଦ ଘୋଷ ଜଗତ ସେ ମୋହ' । ସେହିପରି 'ହ' ଅକ୍ଷର ଶିଶୁବେଦ ପ୍ରମାଣ । 'ରି' ଅକ୍ଷରୁ ହୋଇଛି ପବନ ।'

ଶିଶୁ ଅନନ୍ତଙ୍କ ରଚନା-'ଅବଣ ଭୋଜନ । ଶ୍ୱେତଗଙ୍ଗା ଆଚମନ । ଅଚ୍ୟୁତ ଗୋତ୍ର, ଅନନ୍ତ । ଶାଖା । ଶୁକ୍ଳବର୍ଣ୍ଣ, ଶିଶୁବେଦ ।'

ବଳରାମ ଦାସ 'ବ୍ରହ୍ମଗୀତା', 'ଗୁପ୍ତଗୀତା' ଓ 'ଦୀପ୍ତିସାର ଗୀତ' ପ୍ରଭୃତିରେ ଶିଶୁଦେବ ତତ୍ତ୍ୱର କରିଛନ୍ତି ଅଜସ୍ର ବ୍ୟାଖ୍ୟା । ଶିଶୁବେଦର ଷଷ୍ଠଶ୍ଳୋକ, 'ଉଦେଗିରି ପୁଣ୍ୟଗିରି ଅସ୍ତଗିରି ମେଳା / ହସ୍ତୀଚରାଇ ପର୍ବତମାଳା / ଯେବଣ ସେ ହସ୍ତୀ ମହାରସ ଖାଇଂ / ବେନି ପଛି ଛେଦିଲେ ଗଗନେ ସମ୍ପାଇ' । ବଳରାମ କରିଛନ୍ତି ନିମ୍ନ ରୂପେ ବ୍ୟାଖ୍ୟା—

ପଞ୍ଚୁଆତ୍ମାକୁ କରିଣୀ କରି ନେଇ ବାନ୍ଧିଲି ବୃକ୍ଷର ଡାଳେ
ମହାରସ ଗୁମ୍ଫା ଭିତରେ ଖୋଇଲି ଆକାଶ ଗଙ୍ଗାର ବଳେ ।
ଉଦେଗିରି ଅସ୍ତଗିରି ପୁଣ୍ୟଗିରି ତିନି ଯେକ କରି ମେଳା
ଅନେକ ପ୍ରକାରେ ରକ୍ଷା କରିଥିଲି ଚରିବ ପର୍ବତମାଳା ।

ଶିଶୁବେଦ ଦ୍ୱିତୀୟ ଶ୍ଳୋକ- 'କାଳ କମଳ ନିରଞ୍ଜନ ତିନିହେଁ / ଯେକଇଁ ଠାବରେ ବାସ / ଯେଉଁଗୁରୁ ପ୍ରତି ପ୍ରତି କରି କହିବ / ସେ ଗୁରୁର ମୁହିଁ ଦାସର ଦାସ ।' 'ଛତିଶ ଗୁପ୍ତ ଗୀତା'ରେ ବଳରାମଙ୍କ ପଂକ୍ତି- 'କାଳ କମଳରେ ସ୍ଥାନ / ଯେଥି ମଧ୍ୟେ ନିରଂଜନ', ପୁନଶ୍ଚ- 'କାଳ ଯେ କମଳ ନିରଂଜନ ତିନିପେଡ଼ି', ପ୍ରଭୃତ ଧାଡ଼ି ସ୍ପଷ୍ଟ ପ୍ରମାଣିତ କରେ ଶିଶୁବେଦର ପ୍ରଭାବ । 'ଘଟସାଗର'ରେ ଅଚ୍ୟୁତଙ୍କ ବାକ୍ୟ- 'କାଳ କମଳ ନିରଂଜନ ଛେଦି / ଜୀବ ପରମ ତିକଟରେ ଭେଦୀ ।' 'ମଣିବନ୍ଧ ଗୀତା'- 'କାଳ କମଳ ନିରଂଜନ ଦେଖ / ନିରଂଜନ ମଧ୍ୟେ ସୁଖ ସାରିକ୍ଷ' (ପୃଷ୍ଠା ୧୩) । ପୁନଶ୍ଚ- 'କାଳ କମଳ ନିରଞ୍ଜନ ଛନ୍ଦି । ଶିବ ଆସନଟିକୁ କାଳକୁ ଭେଦି' (ପୃଷ୍ଠା ୩, ଲୋହିଗୀତା / ଅଚ୍ୟୁତାନନ୍ଦ) ।

ଜଗନ୍ନାଥ ଦାସ 'ନୀଳଗିରି ଧ୍ୟାନ'ରେ କରିଛନ୍ତି ଶିଶୁବେଦର ସ୍ମରଣ- 'ଅକାରଂ ଶିଶୁବେଦଞ୍ଚ ଭାବୟତି ସାଧୁ ଉତ୍ତମା/....କଣ୍ଠ ମୂଳେ ସ୍ଥିତା ଦୃଷ୍ଟି ଦୃଷ୍ଟ ଚ ବାୟୁ ମଣ୍ଡଳେ / ପୂର୍ଣ୍ଣବ୍ରହ୍ମ ଭବେଦ୍ ଜ୍ୟୋତି ଆଦି ବୌଦ୍ଧ ନମୋନମଃ ।' (ପୃଷ୍ଠା ୨୫) । 'ନାମ ବ୍ରହ୍ମଗୀତା', କୃଷ୍ଣଦାସ କରିଛନ୍ତି ଉଲ୍ଲେଖ-'ନିଶବଦ ଘରୁ ଶିଶୁବେଦ ହେଲା / ତହୁଁ ଜନ୍ମ ଷୋଳଗୋପୀ ।' ଦ୍ୱାରିକା ଦାସ 'ପରଚେ ଗୀତା'ରେ ଉଲ୍ଲେଖ କରିଛନ୍ତି, 'କମଳ ଜ୍ଞାନ ଖଡ଼ଗ ଯେ କ୍ଷୟୋ ଶିଶୁବେଦ ପଦ୍ମ ଘେନି ଆଠୟେ ।'



Source: Author, Digitized by PPRACHIN, SOA

ପରବର୍ତ୍ତୀ ଦୁଇଶତ ବର୍ଷର ସାହିତ୍ୟ ଓ ଧର୍ମଧାରାକୁ ପ୍ରଭାବିତ ଓ ଆକୃଷ୍ଟ କରି ରଖିଥିବା ଏକ ଯୁଗଜୟୀ ଗ୍ରନ୍ଥ ଶିଶୁବେଦ ଏବଂ ଏହାର ସ୍ରଷ୍ଟା ପ୍ରତିଭାରେ ଅନନ୍ୟ । ଶିଶୁବେଦ ରଚନା ଶୈଳୀ ଦୃଷ୍ଟିରୁ ଭାଷାର ବିକାଶ କ୍ରମରେ ହେବା ବେଳେ ଗୋଟିଏ ପାବଛ ଏହାର ବିଷୟବସ୍ତୁ ସିଦ୍ଧ କବିଙ୍କ ସାଧନାର ଐଶ୍ୱର୍ଯ୍ୟ । ଗୋଟିଏ କାଳଜୟୀ ସାମାଜିକ ଏବଂ ଆଧ୍ୟାତ୍ମିକ ସମ୍ପଦ । ତେଣୁ ମହାକାଳ ପାକସ୍ଥଳୀ ତାହାକୁ କରିପାରି ନାହିଁ ହଜମ ।

ଡକ୍ଟର ବଂଶୀଧର ମହାନ୍ତି ତାଙ୍କ ଥେସିସ୍‌ର ମୁଖବନ୍ଧରେ କରିଛନ୍ତି ଉଲ୍ଲେଖ, 'ପ୍ରାଚୀନ ଓଡ଼ିଆ ସାହିତ୍ୟରେ ବିଶେଷତଃ ସାରଳା ଦାସ (ଖ୍ରୀ: ୧୫ଶ ଶତାବ୍ଦୀ)ଙ୍କ ରଚନା ଓ ପରବର୍ତ୍ତୀ ପଞ୍ଚସଖା ସାହିତ୍ୟ ଓ ଅନ୍ୟାନ୍ୟ ବହୁ ସନ୍ଥ ସାହିତ୍ୟରେ 'ଶିଶୁବେଦ'ର ବହୁଳ ଉଲ୍ଲେଖ ଓ ବିଭିନ୍ନ ବ୍ୟାଖ୍ୟା ଦେଖିବାକୁ ମିଳିଥାଏ । ଅପଭ୍ରଂଶ ଭାଷାରେ ଲିଖିତ 'ଗୋରେଖବାଣୀ' ର କେତେକ ପଦର ମଧ୍ୟ ଶିଶୁବେଦର ପଦ ସହିତ ପୂର୍ଣ୍ଣ ସାମଞ୍ଜସ୍ୟ ରହିଛି । ଏହି ସବୁ ଦୃଷ୍ଟିରୁ 'ଶିଶୁବେଦ'କୁ ଓଡ଼ିଆ ସାହିତ୍ୟର ପ୍ରାଚୀନତମ ରଚନା (ଖ୍ରୀ: ୧୩ଶ ଶତାବ୍ଦୀ) ବୋଲି ଗ୍ରହଣ କରାଯାଇଛି । ଏହି ଗ୍ରନ୍ଥଟିର ଆବିଷ୍କାର ଓଡ଼ିଆ ସାହିତ୍ୟରେ ନୂତନ । ବୌଦ୍ଧ ସହଜିୟା ସାହିତ୍ୟ (ବୌଦ୍ଧଗାନ ଓ ଦୋହା) ଓ ସାରଳା ସାହିତ୍ୟ ମଧ୍ୟରେ ଯେଉଁ ଅନ୍ଧକାରମୟ ଯୁଗ ଥିଲା ତନ୍ମଧ୍ୟରେ 'ଶିଶୁବେଦ' ଓ 'ଅମରକୋଷ ଗୀତା' (ଅସଂପୂର୍ଣ୍ଣ) ଏକ ନୂତନ ଯୁଗର ସଂଧାନ ଦେଇଥାଏ ।'

ଓଡ଼ିଶାରେ 'ନାଥ' ସଂପ୍ରଦାୟ ଅଛନ୍ତି, 'ନାଥ' ଗୋରକ୍ଷପନ୍ଥୀ ଯୋଗୀଙ୍କ ଗୋଟିଏ ପଦବୀ । କିନ୍ତୁ 'ନାଥ' ଶବ୍‌ଦର ତାତ୍ତ୍ୱିକ ଓ ଆଧ୍ୟାତ୍ମିକ ଅର୍ଥ ପ୍ରାଚୀନ ସଂସ୍କୃତ ଗ୍ରନ୍ଥମାନଙ୍କରେ ନିର୍ଣ୍ଣୀତ ହୋଇଅଛି । ଶକ୍ତି ସଙ୍ଗମ ତନ୍ତ୍ରରେ ବର୍ଣ୍ଣିତ-ଶ୍ରୀ ମୋକ୍ଷଦାନ ଦକ୍ଷତ୍ୱାନ୍ ନାଥ ବ୍ରହ୍ମାନୁବୋଧନାତ୍ / ସ୍ଥଗିତା ଜ୍ଞାନ ବିଭବାନ୍ ଶ୍ରୀନାଥ ଇତି ଗୀୟତେ । ଅର୍ଥାତ୍ ମୋକ୍ଷଦାନ ଦକ୍ଷ 'ନାଥବ୍ରହ୍ମା' ଙ୍କ ପ୍ରତୀକ 'ନା' ଏବଂ 'ଥ' ଅର୍ଥ ଅଜ୍ଞାନକୁ ଦୂର କରିବାରେ ଯିଏ ଦକ୍ଷ ! ଗୋରକ୍ଷନାଥ ସେହି ଯୋଗ-ତାନ୍ତ୍ରିକ ଧାରାର ମୁଖ୍ୟ, ତାହାଙ୍କୁ କୁହାଯାଇଛି 'ଶିବ' !

ଗୋରକ୍ଷନାଥ କିଏ ? ଆଜି ଯଦି ପ୍ରଶ୍ନ କରାଯାଏ, ଆମ ପାଖରେ ଗୋଟିଏ ସ୍ୱଷ୍ଟ ଉତ୍ତର ନାହିଁ । ଅଥଚ ଗୋରକ୍ଷନାଥଙ୍କ 'ଶିଶୁବେଦ' ଆମର ଦୁଇଶତବର୍ଷ ସାହିତ୍ୟକୁ କରିଛି ପ୍ରଭାବିତ । ନାଥ ସଂପ୍ରଦାୟର ପ୍ରାଚୀନ ମଠ ଓଡ଼ିଶାରେ ଭର୍ତ୍ତି, ଅଥଚ ନାଥ-ସଂସ୍କୃତି ଉପରେ ଆମ ପାଖରେ ଖଣ୍ଡିଏ ହେଲେ ପୁସ୍ତକ ଅଛି ?

ଦେଶ ସ୍ୱାଧୀନ ହେବା ପୂର୍ବରୁ G.W.Briggs ରଚନା କରିଛନ୍ତି 'Gorekhnath and the Kanphata Jogis' ! ଗବେଷକ A.Banarjee ଲେଖିଛନ୍ତ 'Philosophy



Source: Author, Digitized by PPRACHIN, SOA

of Gorekhnath' । ଡ଼. ମୋହନ ସିଂହଙ୍କ ପ୍ରକାଶ ପାଇଛି "Gorekhnath and Medieval Hindu Mysticism" ଶୀର୍ଷକ ଗ୍ରନ୍ଥ । ବଂଗଳା ଓ ହିନ୍ଦୀ ସାହିତ୍ୟରେ ଗୋରକ୍ଷନାଥ ସମ୍ବନ୍ଧୀୟ ଗ୍ରନ୍ଥମାନ ରହିଛି । ମାତ୍ର ଓଡ଼ିଆ ଏହି ଦିଗରେ ଖୁବ୍ ପଛରେ ପଡ଼ିଛି । ଅଥଚ କବିତା ରଚନା କରି ନିଜର ସ୍ୱୀକୃତି ସଂଗ୍ରହ କରିଥିବା କିଛି ବ୍ୟକ୍ତି ତେଲୁଗୁ ଭାଷା କ୍ଲାସିକ୍ ହେଲା, ଓଡ଼ିଆ ଭାଷା କ୍ଲାସିକ୍ ହେବନାହିଁ କାହିଁକି, ଖାଲି ସ୍ୱପ୍ନଭଙ୍ଗ ପର ପ୍ରଳାପ କରୁଛନ୍ତି ! ନିଜର ଗରିମାମୟ ଅତୀତକୁ ମାଟିତଳୁ ନକାଢ଼ି ସମକାଳର ବିଦେଶୀ ଚେତନାକୁ ନିଜର କଲେ କେହି କ୍ଲାସିକର ମର୍ଯ୍ୟାଦା ଆମ ଭାଷାକୁ ଦେବେକି ? ଯଦି ଦିଏ ତାହା କଲମ କାଗଜରେ ଗଣତନ୍ତ୍ର ଓ ସ୍ୱାଧୀନତା ପରି ବୋଧହେବ ।

**ଶିଶୁବେଦର ଆଙ୍ଗିକ: ଏକ ଦୃଶ୍ୟପଟ**

ତାଳପତ୍ର ପୋଥିରୁ ଡ. ବଂଶୀଧର ମହାନ୍ତିଙ୍କ ଦ୍ୱାରା ସଂଗୃହୀତ 'ଶିଶୁବେଦ' ପାଠକଙ୍କ ଅବଗତି ନିମନ୍ତେ ଏଠାରେ ହେଲା ଉଦ୍ଧୃତ—

ସୁଜନ ଜନ ଜାଣଇଂ ଶିଶୁଦେବ ବାଣୀ
ଦୁଇ କର୍ଣ୍ଣେ ତୁଳା ଦେଇ ବୁଝ ପରିମାଣିଂ
ରାତ୍ର ପ୍ରହରେ ଥାଉଂ ଉଠିଣ ବସିବ
କର୍ଣ୍ଣର ମୂଳକୁ ସେ ତ ଲୟେ କରିବ ।
ଯେଉଁ ଧ୍ୱନି ଆକାଶର ମଧ୍ୟରେ ପୁରୋଇଂ
ସେ ଶ୍ରୀଅନ୍ତର୍ଯ୍ୟାମୀ ନିରାକାର ସ୍ୱାମୀ ।
ନ ବୋଇଲେ କଳିକି ସୁବୁଧି ହିଁ କାହାଣୀ
କାବ୍ୟ ଶାହାସ୍ତ୍ର ମଧ୍ୟ ସମସ୍ତ ଭଣଇଂ ।
ସେ ଶିଶୁବେଦଟି ।
ଯେକ ନୁହଇଂ ବେନି ବିଧି ପୁଣି ଶିଶୁବେଦ ମଧେଂ ପ୍ରକାଶ
ବଦନ୍ତି ନାଥେ ଶିଶୁବେଦର ବିଶୁଆସ ।

ଯେକ ନୁହଇଂ ଦୁଇଦୁଇ ହୋଇ ଅଛିଂ । ସେ ଯେ ଚକ୍ଷୁଟି । ବେନି ପିତୁଳି ସେହି ଯେକ ଜଣେଂ । ବେନି ଚକ୍ଷୁ ଧ୍ୱନି ହୋଇ ଅଛିଂ । ଧ୍ୱନି ଘରେ ମନ ପଶିଲେ ସମାଦି ଲାଗଇଂ । ଯେହାକୁ ପରମ ଯୋଗୀ ସମାଦି ବୋଲି ।୧।

ଶ୍ଳୋକ- କାଳ କମଳ ନିରଂଜନ ଯେକଇଂ ଘରେ
ବାସା ଯେହା ସେ ପ୍ରତି ପ୍ରତି କରି ବୁଝାବଇଂ
ସେ ମୋର ଗୁରୁ ମୁହିଂ ତା'ର ଦାସର ଦାସ ।



Source: Author, Digitized by PPRACHIN, SOA

ଅର୍ଥ-କାଳ ଯାହା କହି ସେ ଚକ୍ଷୁଟି । ତାହାର ଯେ ପିଛଡ଼ା ଢ଼ାଙ୍କୁଣି ଅଛି ଯେ ଯମର କଟାକ୍ଷଟି । ଯେହାକୁ କାଳ କହି । କମଳ ଯାହାକୁ ବୋଲି ସେ ଯେଟି ରହିଅଛି । କଳା ଡୋଳା ସ୍ଥିର କରି ଉଦେ କଲେ ନିରଂଜନ କହିଟି । ତେଣୁଂ କହି ତିନିହେଂ ଯେକଇ ଘରେ ବାସ ।

ଶ୍ଳୋକ- ସୁଜାତି ସ୍ମୁଦ୍ରେଂ ଥିତା କ୍ଷୀର ନୀର
ମାତା ଗର୍ଭେ ପଶି ନ ଖାଇଲା କ୍ଷୀର ।
କେତେ ହେଂ ଅଇଲା ପୁଣ କେତେହେଂ ରହିଂ ଅକ୍ଷି
ତାହାକୁ ପରଚେ ହୁଅ ସଦଗୁରୁ ପୁଛି ।

ଅର୍ଥ- ଚକ୍ଷୁଭିରେ ଯେଉଁ ପିତୁଳି ଅଛି । ସେ କରଣ ବିଯୋଗଟି । ସେ ଗୋରଖନାଥଙ୍କ ପରମ ଶୂନ୍ୟଟି ।

ଶ୍ଳୋକ-ନୟନ ମନ ଦୁଇ ଯେକଇ ମତ
ନୟନ ମନ ଭିତରେ ପରମଂ ଗୁରୁତ୍ୱ ।

ଅର୍ଥ-ବ୍ରହ୍ମ ଘରେ ସ୍ୱୟଂ ଧ୍ୱନି ପ୍ରକାଶ । ବଦନ୍ତି ଗୋରେଖନାଥେ ନୟନକୁ ମନ ବୋହି । ନୟନ ଉପରେ ମନୁଆର ବାସଟି । ତେଣୁ କରି ଶୂନ୍ୟର କଥାକୁ ମନ ଯାଇଂଟି । ସେ ଦେଖିଲେ କହିଂ ପାରଇଟିକି । ଶୁଣିଲା କଥାକୁ ଶୃତି ନ ପାରଇଟି ।

ଶ୍ଳୋକ-ପବନ ପାଲଟିକେ
ପ୍ରକୃତି ଛଡ଼ା କମଳ ଫୁଟା କେ ।
ତେବେ ହେଂ ଶୁଖିବାର ପାଣି
ଚନ୍ଦ୍ରଂ ସୂର୍ଯ୍ୟକୁଂ ଯେଉଁ ଯୋଗୀ ଶୁଣି ପାରଇ
ସେ ଯୋଗୀ ଅତ୍ୟନ୍ତ ଗରୁଆ ଜାଣି ।

ଅର୍ଥ-ଚନ୍ଦ୍ର ସୂର୍ଯ୍ୟ ବୋଲି ସେ ଚକ୍ଷୁଟି । ପିଛଡ଼ା ଥିର କଲେ ତାହାକୁ ଦେବତା ବୋଲି । ଦେବତା ଯେ ସେ ନିର୍ଣ୍ଣୟ ହୋଇ ଅଛିଂ । ଯେମନ୍ତ କଲେ ସିଧ ଦେହୀ ।

ଶ୍ଳୋକ- ଉଦେଗିରି ଅସ୍ତଗିରି ପୁର୍ଣ୍ୟଗିରି ମେଳା
ହସ୍ତୀ ଚରାବଇ ପର୍ବତମାଳା ।
ଯେବଣ ସେ ପକ୍ଷୀ ମହାରସ ଖାଇ ।
ବେନି ପକ୍ଷୀ ଛେଦିଲେ ଗଗନେ ସମ୍ଭାର ।

ଅର୍ଥ-ପକ୍ଷୀ ଯେ ବୋଲି ବେନି ପିଛଡ଼ାଟି । ଶୂନ୍ୟଗିରି ବୋଲି ଯେ ସେ ମନଟି । ସେ ମନ ଲେଉଟି ଧ୍ୱନିଘରେ ପଶିଲେ ମନକୁ ମନ ଦେଖଇ । ରହି ପାରିଲେ ପବନ ପ୍ରାଣ ପଲବିତ ହୋଇ ରହଇ । ଯେହାକୁ ଶୂନ୍ୟ ପ୍ରମାଣ ସମାଦି ବୋଲି ।



Source: Author, Digitized by PPRACHIN, SOA

ଶ୍ଳୋକ- ମନ ମରଇ ତ ପଲବଇ ପ୍ରାଣ
ମନ ଚଞ୍ଚଳ ହୋଇଲେ ନ ଲଭଇ ଗ୍ୟାନଂ ।
ମନ ଇନ୍ଦ୍ରି ପ୍ରକୃତି ଲଭଇ ତାହା ସୁଖେ
ସିଦ୍ଧି ଚଢ଼ଇ ବ୍ରହ୍ମ ସୃଷ୍ଟି ବିହରଇ ସୁଖେ ।

ଅର୍ଥ- ମନ ଯୋଗ ଭିତରେ ରହିଲେ ପବନ ନିଶ୍ଚଳ ହୋଇଂ । ବିନ୍ଦୁ କିଂଶା ପ୍ରକାଶଇ । କାୟା ଝଙ୍କଇ । ଉତ୍ପତ୍ତି ପ୍ରଳୟ ନୁହଇଂ । କାଳଖଣ୍ଡଇଂ । ଖୋଜିଲେ ପାଇ ଧୁନି । ଗଲେ ବାହୁଡ଼ାଇ ଆଇଂ । ମଲେ ଜିଆଇଂ ଆଣଇଂ । ପବନ ନ ପଶଇଟି । ଯେହାକୁ ପରମ ଯୋଗ ସମାଦି ବୋଲାଇଂ ।

ଶ୍ଳୋକ- ତାହାକୁ ଦେଖି ହୋ ମନଥିର ହୋଇଂ
ନିଚଳ ଥାଇ ଆପ ପ୍ରଚେ ବୋଲାଇଂ ।

ଅର୍ଥ- ସେ ଚକ୍ଷୁଟି । ଯେହାକୁ ଥିର କହେ ପରଚେ ଯୋଗ ବୋଲି ।

ଶ୍ଳୋକ- ଅକଳିତ ମନ ଥମ୍ଭୀଭୂତ ବାଇ
ପିଣ୍ଡ ଛାଡ଼ି ପ୍ରାଣ କେବେ ହେଂ ନ ଯାଇଂ
ସତି ସତି ଭାଷନ୍ତି ଶ୍ରୀ ଗୋରେଖ ରାୟେ
ପୁରେ ପୁରେ ବାସ ନଯାୟେ ।

ଅର୍ଥ- ଚକ୍ଷୁ ଦେଖି କଳନା କରଇ । ସେ ପ୍ରାଣ କି ପୁଣ୍ୟ ଦେହୀ ବୋଲି । ଚକ୍ଷୁ ଭିତରେ ପିତୁଳିକି ଲୟେ କଲେ ମନଥିର ହୋଇ । ଯେହାକୁ ନିରଂଜନ ପରଚେ ସମାଦି ବୋଲି ।

ଶ୍ଳୋକ- ମନ କଳା ଚରମନ ଭୋଳା
ତା ତୁଲେ ଭୀତି ନ ଯାଇଂ ।
ଶକ୍ତି ପାତ୍ର କୁଣ୍ଡଳୀ ଭାବି
ମୂଳ କମଳ ଚାପିଲେ
ଯେ ପଛଳି ପୁଲିୟା ବୋଲାଇ ।

ଅର୍ଥ- କୁଣ୍ଡଳୀକି ସପ୍ତଫେଣୀ ବୋଲି । ସର୍ପିଣୀ ପବନକୁ ବୋଲି । ଗୁହ୍ୟଦ୍ୱାରେ ବାମ ଗୋଇଠି ଦେଇଂ ବସିବ । ପବନ ଲାଗି ପିଂଗଳା ପଶିଲେ ଯେହାକୁ ରବିଚନ୍ଦ୍ର ଓଢ଼ଣ ବୋଲି ।

ଶ୍ଳୋକ- ମନେମନେ ଧ୍ରୁବ ବଚନ କହିଂ ପିଇବା ନିର୍ଝର ପାଣି
ଗୁରୁ ପ୍ରସନେ ଅମୃତ ଭୁଞ୍ଜିବା ଯେ ପାଇଲଇଂ ଶ୍ରୀଗୁରୁ ବାଣୀ
ଯେହି ତତ୍ତ୍ୱ ଯେବେ ମନେ ଧରେ ଜାଣି
ଯମରାଜ ହାତରେ ବୁହାଇବା ପାଣି ।



Source: Author, Digitized by PPRACHIN, SOA

ଅର୍ଥ- ସେ ଚକ୍ଷୁ ଉପରେ ପିତୁଳି ନିର୍ଣ୍ଣୟ କଲେ ସେ ଦେବତା ସମାନ ହୁଅଇ ।

ଶ୍ଳୋକ- ଆଉଠ ହାତ କଲେ ବର ଭିତର
କାହିଂ ଥାଇ ଜୀବ ଦେଉଛି ଉତ୍ତର
ହେତୁ ମତି ଦେଇଂ ବୁଝ ମନୁରାୟେ
ମରିଗଲେ ପ୍ରାଣ କାହିଁ ସମ୍ଭାୟେ ।
ନାଦରୁ କାୟା ବିଂଦରୁ ଘର ।
ତହିଂରେ ରାଜା ଚନ୍ଦ୍ରଶେଖର ।
କପୋଳର ଅଷ୍ଟ-ନାଡ଼ି ଭିତର
ତହିଂ ଥାଇ ଜୀବ ଦେଉଛି ଉତ୍ତର ।

ଅର୍ଥ- ମଲେ ପ୍ରାଣ କାହିଂ ସମ୍ଭାଇ । କାୟା ମାଟିରେ ସମ୍ଭାଇ । ତେଜ ଅଗ୍ନିରେ ସମ୍ଭାଇ । ପବନ ପବନେ ସମ୍ଭାଇ । ପଞ୍ଚତତ୍ତ୍ୱଂ ଯେ ଯାହା ଥାନକୁ ଯାଇଂ ।

ଶ୍ଳୋକ- ସର୍ବଚଳଇ ନ ଚଳଇ ଯେକେ
ନ ପଶଇ ନ ପୁରଇ ନ ରହଇ ଶେଷେ ।
ଅହର୍ନିଶ ବରଷଇ ନ ତିନ୍ତଇ ସେ ଯେ
ଖଡ଼ଗେ ହାଣିଲେ ନ ଛିଡ଼ଇ ସେ ଯେ ।

ଅର୍ଥ- ସବଦ ଗୁରୁ ଚରଣେ ପୁଛିଲେ ପାଇବା । ସେ ରୁପ ବାହାର ଅଟଳ ଶୂନ୍ୟଂ ରହିଛି ମେରୁର ଭିତର । ସେ ଯେ ନିରଞ୍ଜନ ଅଖଣ୍ଡିତ ଶୂନ୍ୟଟି । ସେ ଦୁଇଂକର ରୂପରେଖ ନାହିଁ । ବାହରେ ଚକ୍ଷୁ ଭିତରେ ନିରଞ୍ଜନ । ସୁନାପରା ଦେଖୁ ରହିଲେ । ଯେହାକୁ ନିଷ୍ପତି ଯୋଗ କହିଂ ।

ଶ୍ଳୋକ- ସବଦେ କୋଳାହଳ ସବଦେ ନିନ
କେବଣ ସବଦ ଘେନି ତତୁଲ୍ୟ ନିନ ।
ସବଦ ଶୁଉଇଁ ନିସବଦ ପାଶ ସବଦ ନିସବଦବାଣୀ
ସବଦ ଯେ ବୋଲି ସେ ବ୍ରହ୍ମଂ ଧୂନି ।

ଅର୍ଥ- ନିସବଦଂଯେ ସେ ମନର ଚକ୍ଷୁଟି । ଶୁଣିବାକୁ ମନ ଯାଇଁଟି । ଶ୍ରୁତିର ମଧ୍ୟେଂ ଚୈତନ୍ୟରୂପେକ ହୋଇଂ । ବ୍ରହ୍ମଧୂନି ହେତୁ ଯେ କଳା ଘେନି ରହିଲେ । ଯେହାକୁ ଅଲେଖ-ଜୀବ ସମାଦି ବୋଲି ।



Source: Author, Digitized by PPRACHIN, SOA

ଶ୍ଳୋକ- ମରମର ପଣ୍ଡିତ ମରଣହିଂ କଷ୍ଟ
କେବଣ ସେ ମରଣ ହୋ ଗୋରେଖ ନଷ୍ଟ
ମଲେଣ ଯେ ପିଣ୍ଡ ଯିବ କାହିଂକି
ଯାଉଂ ଯାଉଂ ପ୍ରାଣ ସରମୃତି ହିଂକି ।

ଅର୍ଥ- ଜୀବ ତାହାର ପରମ ଶୂନ୍ୟଟି । ଆକାଶ ମଧ୍ୟେଂ ପରମ ପୁରଟି । ଯେଉଂ ଘରେ ବସି ଦେଖୁଅଛି ସେ ଘରେ ଜାଗ୍ରତକଳା ଘେନିଂ । ମନଶୂନ୍ୟ ମଧେଂ ପବନ ରହିଲା । ଯେହାକୁ ସପନାଧିକ -ପରମ ଯୋଗ ସମାଦି ବୋଲି ।

ଶ୍ଳୋକ- ଡାହାଣ ବ୍ରତେକ କେ ସରସା ପାଇଲେ
ଦିନୁ ଦିନ ଜଡ଼ର କିଯେ
ମହାରସ ଶୋଷିବେ ଖଞ୍ଜନ ନ ରସିବେ ।
ଗୋରେଖ ନାଥ ବୋଇଲେ
ହେ ଶ୍ରୀଗୁରୁ ଉପାୟେ ।

ଅର୍ଥ- ଡ଼ାହାଣ ବ୍ରତେକ ଯେ ସେ ଦେଶ ଦକ୍ଷିଣ ପିଂଗଳି ପଡ଼ା । ଉଧମୁଖ ହୋଇଂ ଯାହା ରସ ଖାଇଲେ ଅଙ୍ଗେ ଚନ୍ଦ୍ର ରହଇଂ । ଆକାସେ ଅମୃତ ଝରଇଂ । ଅବନା ଗମନ ନାମଂ ନ ରହଇଂ । ଆନ ଘରେ ବାହାରଇଂ । କାଉଂରି ମଣ୍ଡଳେ ବିନ୍ଦୁ ରହଇଂ । ପିତୁଳିର ଦୃଷ୍ଟି ନ ଖସଇ ମନ ଯେ ସେ ହସ୍ତୀ ଲୁଚି ଯାଇ । ଯେହାକୁ ଅଖଣ୍ଡ ବିନ୍ଦୁ ସମାଦି ବୋଲି ।

ଶ୍ଳୋକ- ସର ବଢ଼ିଲେ ପବନ ଯେ ରୁହଇ
ଉର୍ଦ୍ଧରେ ଖାଇ ନାରି ଶୋକେ
ସେ ଯୋଗୀ ମହା ସିଧ୍ୟ ।

ଅର୍ଥ- ଇଅଂଳା ଯେ ଦୃଷ୍ଟି । ପିତୁଳା ପଣେ ନାସିକା ପବନ ସେ ଯେ ପାଇଂ । ଇଅଂଳା ପିଅଂଳା ସେ ଯେ ଉର୍ଦ୍ଧମୁଖେ ଉଠିଲେ ମହାରସ ଯେ ସେ ଗଗନ ମଣ୍ଡଳକୁ ଯାଇଂ । ବିନ୍ଦୁ ଘରେ ଇଅଂଳା ପିଅଂଳା ରହିଲେ ଯେହାକୁ ଅବନା ସମାଦି ବୋଲିଂ । ଯେ ମନପବନ ଯେକ ହୋଇଲେ କାୟା ବସଇଟି ।

ଶ୍ଳୋକ- ଗଗନ ଅଭ୍ୟାନ୍ତଂର ନିରନ୍ତର
ମନ ତହିଂକି ରହେ ଅଗୋଚର
ମତି ବିବର୍ଜିତ ସଦ୍‌ଗୁରୁ କହିଂ ।
ଯେ ରସେ ରହିଲେ ଗ୍ୟାନ୍‌କୁ ଲଭଇ ।



Source: Author, Digitized by PPRACHIN, SOA

ଅର୍ଥ- ଗଗନ ଯେ ସେ ଚକ୍ଷୁଟି । ଅଭିନ୍ନ ଯେ ସେ ସହସଦଳ କମଳଟି । ମନବୁଧି ଚଇତନ୍ୟଂ ୟେ ପରମହଂସ । ଘରେ ରହିଲେ ୟେହାକୁ ପରମଂ ଯୋଗ ସମାଦି ବୋଲଟି ।

ଶ୍ଲୋକ- ଯେସନେ କେ ପବନଂ ପବ଼ନା ନ ରହଇଂ ନୀର
ତେସେନେ କମଳ ପବନ ଘର
ସମାକ୍ଷର ସମ କରି ଜାଣେ
ତେବେ ପିଣ୍ଡଂର କାରଣ ପରମାଣେଂ ।

ଅର୍ଥ- ମନବଗ ଯେସନ । ମାଛ ଯେ ସେ ପବନ । ନୀର ଯେ ସନେକ ବିନ୍ଦୁଂ, ମନ ପବନକୁ ଲୟେ କଲେ । ବଗ ମାଛ ନୀର ତିନିହେଂ ବିବର୍ଜିତ ହୁଅନ୍ତିଂ । ୟେହାକୁ ସହଜ ଯୋଗ ସମାଦି ବୋଲିଂ ।

ଶ୍ଲୋକ- କେବଣ ଚକ୍ରେ ଲାଗଇ ସମାଦି
କେବଳ ଚକ୍ରେ ଲାଗଇ ସୁସ୍ୱାଦ
କେବଣ ଚକ୍ର ନ ଆସଇ ମନ
କେବଣ ଚକ୍ରେ ବହଇଂ ପବନ ।

ଅର୍ଥ- କଣ୍ଠ ଚକ୍ର ସମାଦି ଲାଗଇ ସୁସ୍ୱାଦେ । ଶ୍ରୁତିଚକ୍ର ଧୁନି ସୋଦନଂ । ନାସାଚକ୍ରେ ବହଇଂ ପବନ । ଗଗନ ଯେ ବୋଇଲୁ ସେ ଧୁନି ନିରନ୍ତରେ ଗମନ । ଯୋତି ଉଦୟ କଲେ ୟେହାକୁ ଗଗନରକ୍ଷ ସମାଦି ବୋଲି ।

ଶ୍ଲୋକ- କଚରି ଝଲକମ ନୃପତି ଢ଼ାଲେ
ଖିଅନା ଘୋର ଘୋର ନୁହଁଇଂ ମୃତୀ
ଲମ୍ବ ନୁହଇଂ ମୋଟ ନୁହଇଂ କାୟା
ରେଖ ନାହିଁ ରୂପ ନାହିଁ ଖଣ୍ଡି ନାହିଁ ମାୟା
ଗନ୍ଧ ବ୍ୟାପିତ ୟେକର କାୟା
ତୁଳାହୁଂ ଉଶ୍ୱାସ ତିନି ଭୂବନେ ମାୟା ।
ବାଳ ଅର୍ଧ ପ୍ରମାଣେଂ ସରୁଆଂ ।
ନିଦ୍ରା ପରତେ ନାହିଂ ଫୁଟେ ଅହନିଶି ବରସେ ।
କିଛି ନାହିଂ ତୁଟେ ଉର୍ମ ମାୟା ।

ଅର୍ଥ- ଅହନିଶି ବରଷେ ସେ ଚକ୍ଷୁଟି । ସେ ନିରଂଜନ ଶୂନ୍ୟଟି, ବେନି ଚକ୍ଷୁଥିର କଲେ ସାଂଗେ ଉଜାଗର କରି ଲୟେ କଲେଂ ପରମ ପୁରୁଷକୁ ଭେଟ ପାଇଟି ।



Source: Author, Digitized by PPRACHIN, SOA

ସିଶୁମୁନା ଗ୍ୟାନ ଯେଟି । ଅନେକ ଜନ୍ମର ଦୁର୍ଗତି ଫିଟାଇବ । ଶ୍ରୀଗୁରୁ ବଚନେ ଥିଲେଟି । ଗୋରେଖ ନାଥଙ୍କ ଦୟା କରଇଂ ଛାୟା । ତାଦୂତ କରି ସଦ୍ଗୁର୍ ବଚନେଂ । ଚୈତନ୍ୟ ରହି ଯାଇଂ ନୟନେ ।

ଶ୍ଳୋକ- ଝିମିଝିମି ବରଷା ମରି ଯାଉଂ ମାଛ
ଯେ ତତ ଜାଣିଲେ ମରଣହିଂ ମିଛ
ଓଁ ରଜ ଓଁ ବୀଜ ଯେ ବେନି ଅକ୍ଷର ଭଜନ
ବେନି ଅକ୍ଷରୁ ନାହିଂ ଆଉ ସଦ୍ଗୁରୁ କହିଲେଂ
ପରମ ତତ ।

ଆଉମାନ ସଂସାରମତ
ଶ୍ରୀକୃଷ୍ଣ କହିଲେ ଯୁଜେଷ୍ଣି ଅଗ୍ରତେ ।
ରାମ ନାମଂ ଜୟ ଦୁଇ ଗୋଟି ଅକ୍ଷର
ଯେହା ଚିହ୍ନିଲେ ନାହିଂ ଜପମନ୍ତ ।
ନାହିଂ ସ୍ନାହାନ ସନ୍ଧ୍ୟା ନାହିଂ ତର୍ପଣ ନାହିଂ ଶୁଚି
ଗୁରୁ ମୁଖେ ନାହି ପୁଛି । -
ଯେହା ଯେ ଦୃଢ଼ କରି ଧରଇ
ତାକୁ ସେ ବୋଲି ଅଚୁତ ଗୋତ୍ରୀ
ତାହାର ନାହିଁ ନାନା ବାରବ୍ରତ
ଯେ ନାମ ଧରଇଂ ହୁଅଇଂ ମୁକତ ।
ବେଶ୍ୟାଘର ବ୍ରାହ୍ମଣ ମୁକତ
ଯହିଂ ଉପୂତି ଦେଖାଇ ନାମ ଯାର
ଅନନ୍ତଂ ନାହିଂ ତାହାର ଅନ୍ତ ।
ଆତ୍ମ ପରଚେ ସଦା ଜୟେ ସଂପୂର୍ଣ୍ଣ ।
ଇତି ଶ୍ରୀ ଶିଶୁବେଦ ଗୁରୁ-ଶିଷ୍ୟ ସମ୍ବାଦେ
ଶ୍ରୀ ଶିଶୁବେଦ ସଂପୂର୍ଣ୍ଣ ହୋଇଲେଂ ।'





Source: Author, Digitized by PPRACHIN, SOA

# ପ୍ରକାଶ୍ୟତାର ବେଦୀ ଉପରେ କବିତା ଦେବୀଟିଏ

ଶବ୍ଦ ଭୂମି ବ୍ରହ୍ମଭୂମି । ସତ୍, ଚିତ୍ ଓ ଆନନ୍ଦମୟ ଭୂମି କବିତା !

ମହାନ୍ ତନ୍ତ୍ରଶାସ୍ତ୍ର 'ସାରଦା ତିଳକ' (ପ୍ରଥମ ଅଧ୍ୟାୟ) ବର୍ଣ୍ଣନା କରିଛନ୍ତି, From the Sakala Paramesvar came Sakti; from Sakti came Nada, and from Nada issued Bindu. (Principles of Tantra, Part-I, Page 154, F.N.by Sir John Woodroffe) । ବିନ୍ଦୁରୁ ବୃତ୍ତ ବା ଶୂନ୍ୟର ଉତ୍ପତ୍ତି । ଶୂନ୍ୟ ଏକ ଆକାର, ଆକାରରୁ ଅକ୍ଷର ଓ ଅକ୍ଷରମାନଙ୍କ ସମଷ୍ଟିରୁ ଶବ୍ଦ ସୃଷ୍ଟି । ପୁନଶ୍ଚ କୁହା ଯାଇଛି, Language, which is the gross form of sound; is its own author. The sound in the subtle state and which exist in gross form as speech (Vaikhari) is uncreated. ପରା, ପଶ୍ୟନ୍ତି ଓ ମଧ୍ୟମା ଅନୁଚ୍ଚାରିତ ବାକ୍ । ମାନବ ଦ୍ୱାରା ଉଚ୍ଚାରିତ ବାକ୍‌କୁ କହନ୍ତି ବୈଖରୀ । ବୈଖରୀ ଶବ୍ଦ ବ୍ରହ୍ମ ଅକ୍ଷରବ୍ରହ୍ମଙ୍କ ଉଦ୍‌ଯୋଗରୁ କୃପା ସ୍ୱରୂପ ମାନବ ପ୍ରାପ୍ତ । ପରାଶକ୍ତି ନିଜେ ଶବ୍ଦ ଭୂମି ରୂପେ ଅବତୀର୍ଣ୍ଣା ।

ମହାମାୟାର ସୌନ୍ଦର୍ଯ୍ୟମୟ ଅକ୍ଷର ଲୀଳା, ଶବ୍ଦବାଜୀ କବିତା ! ମନେରଖିବାକୁ ହୁଏ, ସାଂପ୍ରତିକ କବିତା ନୁହେଁ ବିଶୁଦ୍ଧ ଶବ୍ଦ ସ୍ଥାପତ୍ୟ, ଶବ୍ଦ ଶୈଳ୍ପିକତା ଉର୍ଦ୍ଧ୍ୱରେ କବିତା । କବିତା କବିଙ୍କ ବଂଚିବା ଶୈଳୀର ନାଁ; ଜୀବନଭୂମିର ଠିକଣା । କବି ଜୀବନ ପୃଥିବୀରେ ପାଦ ଥାପି ଚାଲୁ ନଥାନ୍ତି, ସିଏ ଉଡୁ ଥାଆନ୍ତି ! ସିଏ ଉଡୁଥାନ୍ତି ଆକାଶ ଉର୍ଦ୍ଧ୍ୱରେ; ଚିଦାକାଶରେ !

ଚିଦାକାଶ ? ନାଦବ୍ରହ୍ମଙ୍କ ଜନ୍ମଭୂମି !

ଅଳତା ବୋଳା ପାଦରେ କବିତା ସେହିଠାରୁ ଓହ୍ଲାଇ ଆସିଥାଏ; କବିତା ଅବତରଣ କରିଥାଏ ! ଧଳା ଫର୍ଦ୍ଦର ଭୂମି ଉପରେ ଥାପିଥାଏ ତା' ଗୋଲଗୋଲ ଲକ୍ଷ୍ମୀପାଦ । କବିତାର ବିଷୟ ଯାହା ଏବଂ ଯେତେ ବ୍ୟକ୍ତିଗତ ହେଉନା କାହିଁକି !! କବିତା ହିଁ କବିତା !

ଗୋଲାପ, ପଦ୍ମ ଓ କଦମ୍ବ କେବଳ ପୁଷ୍ପ ? ଆଉ ମଣ୍ଡା, ମନ୍ଦାର ଓ ଟଗର ଏମାନଙ୍କୁ ପୁଷ୍ପ ପଂକ୍ତିରୁ ବାଦ ଦିଆଯାଇ ହେବ ? ଏମାନଙ୍କ ବିନ୍ଧାଣରେ ନିକୃଷ୍ଟତାର ବିଧାନ କେଉଁଠି ? ନା ଆମ ରୁଚି ଓ ଦୃଷ୍ଟିରେ ଗୋଟିଏ ଅସୁସ୍ଥତା ତା'ର ଅଦୃଶ୍ୟ ଭୂତାଣୁ ପ୍ରସାରିତ କରିଛି ? କାଳଗତ ଧାରା ଦୃଷ୍ଟିରୁ ରଚିତ କବିତା ଯେମିତି ମୃଣ୍ମୟୀ ମୂର୍ତ୍ତି, ତହିଁରେ



Source: Author, Digitized by PPRACHIN, SOA

ବିଡ଼ମ୍ବିତ ଚିତ୍ ! ସମକାଳ ରୁଚି ଓ ସୌନ୍ଦର୍ଯ୍ୟ ନୁହେଁ ଯଥେଷ୍ଟ, ଶିବ ସ୍ୱରୂପ ଜୀବ ତହିଁରେ ଆବଶ୍ୟକ । ଶବ୍ଦର ଶସ୍ତା ଧ୍ୱନି ନୁହେଁ କବିତା ! କବିତା ପ୍ରକାଶିତ ହେବା ପୂର୍ବରୁ, Jiva then, himself thinks and speaks in his mind, ତାହାପରେ ବୈଖରୀ ରୂପେ ନିର୍ଝରି ଆସେ । ଜୀବର ପରିଭାଷା-Jiva is nothing but the appearance of the eternally existing Sakti of Dhvani...! ପୁନଶ୍ଚ- Jiva is nothing but Dhvani in the from...। ଧ୍ୱନି କେମିତି ନିଏ ଆକୃତି, ଆଗକୁ କୁହା ଯାଇଛି, Thought impressions acquired in previous births, a Jiva forms words mentally...(Principles of Tantra, II, Page 189, By Sir John Woodroffe) ।

ପୁଷ୍ପ ଅକାରଣରେ ଜନନୀ ପ୍ରକୃତି ପ୍ରସ୍ଫୁଟିତ କରାନ୍ତି ନାହିଁ । 'ପୁରୁଷ' ଯେତେବେଳେ 'ବଂଶବର୍ଦ୍ଧନ' ନାମକୁ ସାର୍ଥକ କରିବାକୁ ସୃଷ୍ଟି ପ୍ରକ୍ରିୟା ସଂକଳ୍ପରତ ହୁଅନ୍ତି, ସେହି ମହାବ୍ୟବସ୍ଥାର ଅଂଶ ସ୍ୱରୂପ ପୁଷ୍ପ ହୁଏ ବିକଶିତ । କବିତାର କଳାକୃଷ୍ଣ ଜନ୍ମ ହୁଅନ୍ତି ଯେତେବେଳେ ଚୌମେଘ ରୁନ୍ଧିଦିଏ ସମଗ୍ର ଚିଦାକାଶ, ଅନ୍ଧକାର କଟ୍‌କଟ୍ ନଥାଏ ବିଂନ୍ଦୁଏ ଆଶାର ଆଲୋକ ! ବଂଦୀ ହସ୍ତପଦ, ଅଷ୍ଟମୀ ତିଥିର ଜହ୍ନ ଗୋଟିଏ ମୁହୂର୍ତ୍ତ, ମାତ୍ର ମୁହୂର୍ତ୍ତକ ଲାଗି ତାହାର ବଙ୍କିମ ମୁଖ ପ୍ରକାଶ କରିବା ପରି ଝଲିସି ଉଠେ ଶବ୍ଦର ନୀଳ ଇନ୍ଦ୍ରମଣି ! ସବୁ ଅସହାୟତାର ବୃନ୍ତକୁ ଚିରି ମୁଖରିତ ହୁଏ ଝରଣାପରି କବିତା ପୁଷ୍ପ ! ତା ସୌନ୍ଦର୍ଯ୍ୟର ଚନ୍ଦ୍ରାତପ ସୌରଭରେ ଉଚ୍ଛୁଳି ପଡ଼େ ଦିକ୍ ବିଦିଗ । କବିତା ଯେମିତି ବସନ୍ତ ଋତୁର ମଳୟ, ଯାହାକୁ ଛୁଏଁ ତା ଆଙ୍ଗୁଠି ସିଏ ହୋଇଯାଏ ଚନ୍ଦନ ! ଏଣୁ କବିତାକୁ କୁହାଯାଇଛି 'କୁହୁକ' ! କେଉଁ ଆଦିମ କାଳରୁ ରଚିତ ସଂଜୀବନୀ ମଂତ୍ରଟି ଆଉ କ'ଣ ?

କବିତା ଖାଲି ଗୋଟିଏ ରଚନା ଶୈଳୀ ନୁହେଁ, କବିତା ଗୋଟିଏ ଶବ୍ଦାବୟବ (Form) ଅବଶ୍ୟ, କବିତା ନିଜେ ଏକ ଅନ୍ତର୍ଧ୍ୱନି । ଯେଉଁ ଅନ୍ତର୍ଧ୍ୱନିର ସ୍ଥୂଳ ଦେହ କବିତା । ଯଦି ଅନ୍ତର୍ଧ୍ୱନିର ଶରୀର ଶବ୍ଦ ହୁଏ, ତେବେ ତାହା କବିତା ନୁହେଁ, ପଦ୍ୟ ! ପଦ୍ୟରେ ଶବ୍ଦ ସହିତ ଥାଏ ଅର୍ଥ ସଂପର୍କ । କବିତାର ଶବ୍ଦମାନ ରୂପକଳ୍ପ ଓ ପ୍ରତୀକ । ଧ୍ୱନି ଓ ଛନ୍ଦର ତାଳେ-ତାଳେ କବିତ୍ୱ ରୂପ ପ୍ରାପ୍ତିରେ ହୋଇଥାଏ ସଂଜୀବୀତ । କବିତା ସହିତ ଥାଏ ରୂପର ସଂପର୍କ, ଯେଣୁ କବିତା ନିଜେ ଏକ ରୂପକଳ୍ପ, କବିତା ନିଜେ ଏକ ଶବ୍ଦ ଚିତ୍ର, କବିତା ନିଜେ ଏକ ଅନୁରାଗପୂର୍ଣ୍ଣ ଅନୁପମ ଉଚ୍ଚାରଣ ! ପଦ୍ୟ ସହିତ ଥାଏ ଅର୍ଥର ସଂପର୍କ ! ଅର୍ଥବନ୍ଧା ଶବ୍ଦରେ ହୋଇଥାଏ ପଦ୍ୟର ଆଙ୍ଗିକ ଗଠିତ । କବିତାର ଶବ୍ଦ ଭାବ ଉଦ୍ରେକକାରୀ ଗୋଟିଏ ଚିହ୍ନ । ଶବ୍ଦ କେବଳ ଶବ୍ଦ, ଭାବ ପ୍ରତୀକୀତ ଶୈଳ୍ପିକ ଏକ ଉପାଦାନ । ଧାଡ଼ିରେ ବସି ଗଲେ ତାରାପରି ଫୁଟି ଉଠେ ସୁଷମା ! ନିମ୍ନ ଉଦ୍ଧୃତିରୁ ଲକ୍ଷ୍ୟ କରନ୍ତୁ ସୁଷମାର ଜ୍ୟୋଚ୍ଛନା !



Source: Author, Digitized by PPRACHIN, SOA

ତମେ ତ ମୋ ପାଇଁ ସେଇ ଦୂର ଆକାଶ
ଚାବି ହଜି ଯାଇଥିବା ବଂଦ ଘରର ଦରଜା ।
ଦିନେ ଗଢ଼ି ଦେଇଥିଲ
କବିତା ଧାଡ଼ିକରେ ଯେଉଁ ତୋରଣ
ସେଥିରୁ ଆଜି ବି ମହକି ଆସୁଛି ସୁଗନ୍ଧରାଜର ବାସ୍ନା !

ଦିନେ ବାନ୍ଧି ଦେଇଥିଲ
ମନ୍ତ୍ରକରା ଯେଉଁ ତାବିଜ
ସେଥିରୁ ଆଜି ବି ଶୁଭୁଛି ମୋକ୍ଷର ପ୍ରାର୍ଥନା !

ଦିନେ ଲେଖି ଦେଇଥିଲ
ସମୁଦ୍ର ବାଲିରେ ଯେଉଁ ନାଆଁ
ତାହା ଆଜି ବି ମଲ୍ଲୀଫୁଲପରି ଦିଶୁଛି ଧୋବ ଫରଫର ।

ଏବେ ବି ତମର ପଦେ କଥାକୁ
କାନ ଡେରିଚି ବୋଲି
ଡର ଲାଗୁ ନାହିଁ ଆଉ ନିଜକୁ ।

ଏମିତିରେ ତ ପତ୍ର ଉପରେ ବର୍ଷା ବିନ୍ଦୁଟିଏ ପଡ଼ିଲେ
ଲାଗେ ତମେ ଡାକୁଚ,

–ଚାହିଁଲେ କ'ଣ / ସୈରିନ୍ଧ୍ରୀ ସାହୁ

ଏଠାରେ ଶବ୍ଦ ଶୈଳ୍ପିକତା ଊର୍ଦ୍ଧ୍ୱରେ କବିତା । କବିତା ଏଠି କବୀଙ୍କ ବଂଚିବା ଶୈଳୀର ଠିକଣା ! ଚିତ୍ ଆକାଶରେ ଡ଼େଣା ମେଲି ତୃଷା ରୂପିଣୀ ଭାବର ଯେଉଁ ପକ୍ଷୀଟି ଉଡ଼ିଛି ସିଏ 'ସପ୍ତଶତୀ ଚଣ୍ଡୀ'ର 'ଯା ଦେବୀ ସର୍ବଭୂତେଷୁ ତୃଷା ରୂପେଣ ସଂସ୍ଥିତା', ପରମ ସୌନ୍ଦର୍ଯ୍ୟମୟୀ ମହାମାୟା ! ବୈଖରୀ ଶବ୍‌ଦବ୍ରହ୍ମ ଅକ୍ଷରବ୍ରହ୍ମଙ୍କ ଉଦ୍‌ଯୋଗରୁ ଲୀଳା ଭୂମିରେ ଅବତୀର୍ଣ୍ଣ । କବିତା ଶବ୍‌ଦର ଅବତାର, ବିଷୟ ଭୂମିକୁ ଅବତରଣ କରିଅଛି । ବିଷୟ ଯେତେ ବ୍ୟକ୍ତିଗତ ହେଲେ ମଧ୍ୟ କବିତା ଏଠି ଏକ କବିତା ! ସମୟ ସ୍ରୋତରେ କବିତା ଏଠି ଅକାରଣରେ ଚହଲି ଉଠିନାହିଁ, ଜନ୍ମ ଜନ୍ମାନ୍ତର ଧରି ମାନବ ଜନ୍ମର ଗଚ୍ଛିତ



Source: Author, Digitized by PPRACHIN, SOA

ଯାତନା ମୁକ୍ତି ତୃଷ୍ଣା ହୋଇଛି ଅଭୀପ୍ସା । ସେହି ଅଭିପ୍ସାଟିକୁ ଚମତ୍କାର ଗୋଟିଏ କଳ୍ପନା ଚିତ୍ରକଳ୍ପ ମାଧ୍ୟମରେ କରିଛି ଶକ୍ତ ଓ ଉଜ୍ଜ୍ୱଳ-

ଯେତେ ଉଚ୍ଛନ୍ନ ହେଲେ ବି
ସମୟ କ'ଣ ମାଲ୍ୟାଣୀ ହୋଇ
ତମକୁ କରିଦେବ ମଂତ୍ରସିଦ୍ଧ ବାଘ
ନା ମୁଁ ହୋଇ ପାରିବି ବଉଳା ଗାଈ !

ଏଇଠି ଅନ୍ୟ ଗୋଟିଏ ତତ୍ତ୍ୱ ଆସିଛି ସମ୍ମୁଖକୁ, Poetry is born not in the mind but in the heart over flowing with feelings. ଏଠାରେ କବିତାର Key-note ପ୍ରବଳ ଉତ୍କଣ୍ଠା (Passion) ଏବଂ କଳ୍ପନା (Imagination) ପ୍ରବଳ ଉତ୍କଣ୍ଠାକୁ ହୃଦୟ କରିଛି ଜୀବନ୍ତ ଏଠାରେ ଅତି ଚମତ୍କାର ଭାବେ ! ଉତ୍କଣ୍ଠା ଓ କଳ୍ପନା ଦୁଇଟି ଯାକ ଖୁବ୍ ପ୍ରାକୃତିକ ଏବଂ ମାନବିକ ! ଚିତ୍ରକଳ୍ପ ସ୍ମରଣ କରାଇଦିଏ ୱାର୍ଡସୱାର୍ଥଙ୍କ ତଥ୍ୟ, Poetry sheds no tears such as angels weep, but natural and human tears...! ଇଲିୟଟ ଲେଖିଛନ୍ତି ଏବଂ ସ୍ପଷ୍ଟ ସ୍ୱୀକାର କରିଛନ୍ତି, Literature is certainly an art-form, but it has other values also, ସେଇ ଅନ୍ୟ ମୂଲ୍ୟବୋଧ ମଧ୍ୟରେ ଆସେ ନାହିଁ Aesthetic ! ଯେଣୁ କବିତାର ମୁଖ୍ୟ ବୃତ୍ତି Aesthetic! ଗଭୀର ପ୍ରାଣପ୍ରାଚୁର୍ଯ୍ୟ ଭରା ଆବେଦନ ସ୍ୱାଦକୁ ତ କରିଛି ଶାଣିତ, ମୋଟ କବିତାଟିକୁ କରିଛି ସୁଷମାରେ ତେଜଦୀପ୍ତ ! ଯଥାଯଥ ଭାଷାର ବସ୍ତୁବୋଧ କଳାର ଉପାଦାନ ରୂପେ କବିତାଟିକୁ କରିଅଛି ତାତ୍ପର୍ଯ୍ୟପୂର୍ଣ୍ଣ ।

ପ୍ରତୀକକୁ ବାଦ ଦେଲେ ନାହିଁ ଆଧୁନିକ କବିତ୍ୱର ଅସ୍ତିତ୍ୱ । କବିତ୍ୱ ସୌନ୍ଦର୍ଯ୍ୟତତ୍ତ୍ୱ ଦୃଷ୍ଟିରୁ ନୈସର୍ଗୀକ ଓ ଆଧ୍ୟାତ୍ମିକ, କିନ୍ତୁ କବିତା ବ୍ୟକ୍ତିଗତ ! କବିତା କବି ଜୀବନର ସୁଖଦୁଃଖ, ଅନୁଭବର ଚିନ୍ମୟ ସ୍ୱରୂପ, ଯାହାର ମାଧ୍ୟମ ଶବ୍ଦ ! ଶବ୍ଦ ଏକ ଉପାଦାନ ! ଏହାର ଉଦାହରଣ ଓ ପ୍ରମାଣ—

ପକ୍ଷୀଟିଏ ଉଡ଼ି ଗଲେ
କି ପବନରେ ଝର୍କା ଖୋଲି ଗଲେ
ଲାଗେ ତମେ ଛୁଇଁ ଦଉଚ
ଚଢ଼େଇକୁ, ପବନକୁ, ପାଣିକୁ !
ଆଜି ଜହ୍ନ କି ଆକାଶ
କେହି ବୁଝି ନାହାନ୍ତି ପ୍ରତୀକ୍ଷାର ପରିଭାଷା ।

-ଚାହିଁଲେ କ'ଣ / ସୈରିନ୍ଧ୍ରୀ ସାହୁ



Source: Author, Digitized by PPRACHIN, SOA

କବିତାର ଉଚ୍ଚାରଣ ଏଠାରେ Oblique ବା ତିର୍ଯ୍ୟକ । କୁହାଯାଇଛି, Poetry organizes a unique unrepeatable pattern of works... ଗୋଟିଏ ସୁନ୍ଦର Fashion ରେ ଶବ୍ଦମାନ ବ୍ୟବହୃତ । ମନର ସ୍ୱତଃ ଜାତ କାର୍ଯ୍ୟ ଇମେଜ୍ । ଜୀବନ ପଟୁ କବିତା ଆଡ଼କୁ ଶାବ୍ଦିକ ରେଖା ଟାଣୁଛି ଇମେଜ୍ । Poetry is very personal,ତେଣୁ ଗୋପନୀୟ ଭାବ ଓ ଅନୁଭବ ଇମେଜ୍‌ମାନଙ୍କ ଦ୍ୱାରା ହୁଏ ଆର୍ଟ । Imegery ପ୍ରୟୋଗ ଢ଼ାଂଚା ମୁଖ୍ୟତଃ ଦୁଇ ପ୍ରକାର । 'ମେଣ୍ଟାଲ୍ ଫର୍ମ୍', ସନ୍ଦର୍ଭରେ Marjorie Boulton କରିଛନ୍ତି ବ୍ୟକ୍ତ,In general a poem may have a series of images that supports or contradict one another, or a single dominant image on which the sequence and structure of the poem depend.

ଇମେଜ୍‌ର ଗୋଟିଏ ଅନୁକ୍ରମ ଉପରେ ନିର୍ଭର କରେ କବିତା । ଉପରୋକ୍ତ ଉଦ୍ଧୃତିରେ ରହିଚି ଇମେଜ୍‌ର ସେହି ଅନୁକ୍ରମ, ଯାହା କବିତାକୁ ଛାତିତଳେ କରାଇଛି ଅନୁଭବ । ଇମେଜ୍‌ଗୁଡ଼ିକ ଏକଧର୍ମୀ ବା ଏକମୁଖୀ ମାର୍ଗୀ, ନାହିଁ କଂଟ୍ରାଡ଼ିକ୍ଟ । ପ୍ରତ୍ୟେକଟି ଅନିବାର୍ଯ୍ୟ ଭାବେ ଏକ ଦୃଶ୍ୟ ଚିନ୍ତାକୁ କରିଛି ଉଦ୍‌ବୋଧନ ଏବଂ ପ୍ରତ୍ୟକ୍ଷ ଦୃଶ୍ୟମାନ !

କବିତାରେ ବିଷୟ ପ୍ରାଧାନ୍ୟ ଅସ୍ଥିର ଏବଂ ରୂପ ସୃଷ୍ଟି ମୁଖ୍ୟ । ରମଣୀୟତା ହିଁ କବିତାର ନିୟାମକ, ତାହା ସୈରିନ୍ଧ୍ରୀ ସାହୁଙ୍କ କବିତା କରିଛି ପ୍ରତିପାଦିତ । ଶବ୍ଦ ସଜାଇ ଦେଲେ ଫୁଟି ଉଠେ ନାହିଁ ଚିତ୍ର, ଚିତ୍ର ଉତ୍ପାଦନ ପାଇଁ ଗୋଟଏ ଏକାଧିକ ଟେକ୍‌ନିକ୍ ଅବଜ୍ଞାତ ହେବା ଅନିବାର୍ଯ୍ୟ ।

କାବ୍ୟିକ କୌଶଳ ବା ଶବ୍ଦ ଗୁନ୍ଥନ ଶୈଳୀ ସମୟାନୁଯାୟୀ ଅଲଗା ଅଲଗା । 'ଯୁଗୋପଯୋଗୀ' ଶବ୍ଦ ସତ୍ୟକୁ ବା ଶବ୍ଦର ଅବତାରକୁ କରିଥାଏ ଆଂଶିକ ଓ କବିତାକୁ ସୀମିତ ତଥା ନିୟନ୍ତ୍ରିତ । ଶବ୍ଦରେ Semblance ମୁଖ୍ୟ । କବିତାକୁ ଜ୍ୱଳନ୍ତ ଓ ଜୀବନ୍ତ କରିଛି ସୈରିନ୍ଧ୍ରୀଙ୍କ Semblance ! ସୌନ୍ଦର୍ଯ୍ୟ ସଂରଚନା କବିତାର ଅବିଚ୍ଛେଦ୍ୟ ବୈଶିଷ୍ଟ୍ୟ, Desire of beauty କୁ ସମକାଳ କବିଙ୍କ ମଧ୍ୟରୁ ଅଧିକାଂଶ କବି ତ୍ୟାଗ କରି ସାରିଛନ୍ତି ! ତେଣୁ ସେମାନଙ୍କ କବିତା ମୃତଶିଶୁ ! ମୃତ କବିତାକୁ ଧରି ଯୁଗୋପଯୋଗୀ କବି ଅଶ୍ରୁମୁଂଚନ ପରିବର୍ତ୍ତେ ଗର୍ବରେ ମୁଖରିତ; ଯାହାଙ୍କ ମୁଖରର ନାହିଁ ଅର୍ଥ ! ଡେକ୍‌ଚିରୁ ଉଛୁଳି ପଡୁଥିବା ଦୁଗ୍ଧ ଯେମିତି ହୁଏ ପାକାଗ୍ନି ବା ଭୂ ତୃଷ୍ୟ, ଠିକ୍ ସେମିତି ସେମାନଙ୍କ କବିତାର ଭାଗ୍ୟ, କଳାପଟାର ଅକ୍ଷରପରି ଲିଭା ଯିବା ହିଁ ଏକମାତ୍ର ଧାର୍ଯ୍ୟ । ମୃତ କବିତାର ଉଦାହରଣ ଅନାବଶ୍ୟକ । ଅନ୍ଧକାର ସ୍ୱାଭାବିକ, ଆଲୋକ ବିରଳ ଓ ଅଭୀପ୍ସିତ ! ଚକ୍ଷୁ ସାମ୍ନାରେ ଅନେକ ଦ୍ରୁମ, କାହିଁ ଚନ୍ଦନ ବୃକ୍ଷ ? ଜୀବନ୍ତ କବିତା ସଂଖ୍ୟା ବହୁତ କମ୍ । ଜୀବନ୍ତ କାବ୍ୟଗ୍ରନ୍ଥଙ୍କ ସଂଖ୍ୟା ମଧ୍ୟ ସ୍ୱଳ୍ପ । ବିଶ୍ୱାୟନ ସଂସ୍କୃତିକୁ ଦ୍ରୁତ ପରିବର୍ତ୍ତିତ କରୁଥିବା



Source: Author, Digitized by PPRACHIN, SOA

ବିକାଶଶୀଳ ବିଜ୍ଞାନର ଧାରା କବିତା ଧାରାର ଗତିକୁ ପ୍ରତିହତ ଓ ପ୍ରତ୍ୟାଖ୍ୟାତ କରି ଚାଲିଛି । କବିତାର ଶୈଳ୍ପିକତା ଖଣ୍ଡିଏ ଟି ସାର୍ଟର ଶୈଳ୍ପିକତା ଠାରୁ ଏବେ ନିକୃଷ୍ଟ ବୋଧ ହେଉଛି ।

କବିତା ନିୟନ୍ତ୍ରିତ କିମ୍ବା ହ୍ରାସ କରି ପାରିବ ନାହିଁ ଦରଦାମ, କବିତା କ୍ୟାନସର୍ ଭଲ କରି ପାରିବ ନାହିଁ କିମ୍ବା ଲାଗିଥିବା ଅଗ୍ନିକୁ ନିର୍ବାପିତ କରି ପାରିବ ନାହିଁ । କବିତା କ'ଣ କରିପାରିବ ? To a greater degree than other arts, it can reveal the condition of living. This should help us amend them, ବୋଲି ବ୍ୟକ୍ତ କରିଛନ୍ତି, 'ପୋଏଟ୍ରୀ ଇନ୍ ଆୱାର ଟାଇମ୍ସ' (୧୯୫୬) ରେ ସମୀକ୍ଷକ Babet Deutsch । କବିତା ମୂଲ୍ୟବାନ, କାରଣ କବିତା ସୃଷ୍ଟି କରିଥାଏ ତାହାର ନିଜର ଗୋଟିଏ ଜଗତ । ଏହି ବିଶୃଙ୍ଖଳିତ ବିଶ୍ୱରେ କବିତା ଅଧିକୃତ କରିଥାଏ ଏକ ଅନ୍ତୋର୍ଲ୍ଲାସ । ଏହା ହିଁ ବୋଧେ ଇଲିୟଟ କହିଥିବା କବିତାର 'Other Values'! ଅନନ୍ତ କାଳରୁ ମାନବ ଚେତନାରେ କବିତା ସର୍ଜ୍ଜନା କଳା ଜମାଟ ବାନ୍ଧି ରହିଅଛି । ଟିକିଏ ଠୋକର ବାଜିଲେ କାଂସ୍ୟ ପାତ୍ରର କଂପନପରି ଜମାଟ ବନ୍ଧ ଭାଙ୍ଗି କବିତା ବାହାରି ଆସେ । କବିତା ଏକ ସ୍ୱତଃସ୍ଫୂର୍ତ୍ତ ପ୍ରକାଶ । ଡାଳ ଭିତରେ ଲୁଚିଥାଏ ବୃନ୍ତ ଓ ବୃନ୍ତ ଭିତରେ ଛପିଥାଏ ପୁଷ୍ପ, ତାହାକୁ ଅନୁକୂଳ ପରିବେଶ ଲାଭ ହେଲେ ତାହା ହୋଇଥାଏ ବିକଶିତ ।

କବିତା ବିଷୟବସ୍ତୁ ହେବା ପାଇଁ ମୁକ୍ତ ରହିଛି ସମସ୍ତ 'Field of existence', (Future poetry, P. 278, by Sri Aurovindo) ! ପ୍ରକୃତି ଓ ମାନବ ଦୁହିଁଙ୍କ ଅସୀମିତ କ୍ଷେତ୍ର ବିସ୍ତୃତ । ତହିଁରୁ ସୀମିତ ପରିଧି ଗୋଟିଏ କବିତାର ବିଷୟ ପାଇଁ ସ୍ୱୀକାର କରିବାକୁ ହୁଏ । ଶବ୍ଦ ପଛରେ ଥାଏ 'Soul -vision'ର ଚାପ, ଛନ୍ଦର ଉଦ୍ଦୀପନା କବିତାର ଯାତ୍ରା ପଥ କରିଥାଏ ପ୍ରସ୍ତୁତ । ଆଙ୍ଗିକର କୁହୁକ ଦ୍ୱୀପରେ କବି କରିଥାଏ ନିଜ ଅସ୍ତିତ୍ୱ ଆବିଷ୍କୃତ । ଅଭୌତିକ ଓ କଂକ୍ରିଟ୍ ମଧ୍ୟରେ ମଧ୍ୟସ୍ଥତା ସ୍ୱରୂପ କବିତା ନେଇ ଥାଏ ଜନ୍ମ । Truth of spirit ଏବଂ Truth of life ମଧ୍ୟରେ ମଧ୍ୟସ୍ଥି କବିତା ମାନବିକ ସ୍ତରଟିକୁ କରିଥାଏ ପରିତୃପ୍ତ । କବିତାର ସ୍ୱରରେ ଏହି ପରିତୃପ୍ତି କରିବା ଗୁଣଟି ବ୍ୟତୀତ ଆଉ ଥାଏ କ'ଣ ? ଅଛି ବା କ'ଣ ?

ପୂର୍ବରୁ ସୂଚିତ ସୈରିନ୍ଧ୍ରୀଙ୍କ କବିତାଟି ଏକ ଅଭୀପ୍ସା । ପ୍ରକୃତରେ ସମସ୍ତ କଳା ଅଟେ ଏକଏକ ଅଭୀପ୍ସା । ମୁରରୀ ତାଙ୍କ ରଚିତ 'Pure poetry in English Critical Essays' (ପୃଷ୍ଠା ୩୧୨), ଉଲ୍ଲେଖ କରିଛନ୍ତି, Pure poetry,....which is the supreme form of prayer! ଏହି ଦୃଷ୍ଟିରୁ ପ୍ରାବନ୍ଧିକ କେ.ଡ଼ି. ସେଥିନା ଉଲ୍ଲେଖ



Source: Author, Digitized by PPRACHIN, SOA

କରିଛନ୍ତି...all the arts aspire, but each by the magic medium proper to it- wards, notes, colours, lines-they all aspire to the condition of prayer. କବିତା ହେଉ କି ତୂଳୀରେ ଗାର ହେଉ, ସଂଗୀତର ସ୍ୱଚ୍ଛ ସ୍ୱର ହେଉ କି ରଂଗର ସ୍ପର୍ଶ ହେଉ, ପ୍ରାର୍ଥନାର ଦାବୀ ନେଇ ଏକ ଅଭୀଳିପ୍ସା ପରିଗ୍ରହଣ କରିଥାଏ ଆଙ୍ଗିକ (Form)।

'କାବ୍ୟିକ ଅଭୀପ୍ସାର ସ୍ତର' ପ୍ରବନ୍ଧରେ ଡକ୍ଟର ଏସ୍.କେ. ପ୍ରାସାଦ ଉଲ୍ଲେଖ କରିଛନ୍ତି, ନାସ୍ତିକ କବି Paul Valery who stated: Le premier vers est un don du ciel, and thus admitted that sometimes God gave him a line of poetry to start of with. (The Literary criticism of Sri Aurovindo, P. 256) । ସମୟ କେତେବେଳେ ବଂଧା ନୁହେଁ, ଶିଳ୍ପୀ ବା କବି ପାଖରେ ସୃଜନ ଅଭୀପ୍ସାଟିଏ ଥିବା ଦରକାର । କବି ସୌନ୍ଦର୍ଯ୍ୟର ପ୍ରେମିକ । ସୌନ୍ଦର୍ଯ୍ୟ ତାହାଙ୍କ ଈଶ୍ୱରୀ । 'କଳ୍ପନା' ଡ଼େଣାଯୁକ୍ତ ସେବିକା, ସରସ୍ୱତୀଙ୍କ ବାର୍ତ୍ତା ବାହିକା, ସତ୍ୟ ଓ ସୌନ୍ଦର୍ଯ୍ୟ ମଝିରେ ରାସ୍ତାଟିଏପରି ଲମ୍ବି ଆସିଥାଏ ।

ସତ୍ୟ କ'ଣ ? କାବ୍ୟିକ ସତ୍ୟ ସାଂସାରିକ ସତ୍ୟଠାରୁ ଅଲଗା ଏକ କଳାତ୍ମକତା । ସୌନ୍ଦର୍ଯ୍ୟ କ'ଣ ? ଗୋଟାଏ ଗୋଲାପୀ ଚେତନା, ଗୋଟିଏ ଚିର ଚିନ୍ମୟ ଅସୀମ ଅବ୍‌ଜେକ୍ଟ, ଯାହା ସୃଷ୍ଟିକରେ ଚେତନାର ସ୍ନାୟୁରେ ବିମଳ ଉଦ୍ଦୀପନା । ଏହାର ଅନ୍ୟ କିଛି living interpretation ଭାବି ଓ ଅନୁଭବି ହୁଏନା !

ଜୀବନର ରାସ୍ତା ଉପରେ କବିତା ଥାଏ । କବିତା ଥାଏ କବିର ସମଗ୍ର ସତ୍ତାକୁ ଘେରି, ଭବିଷ୍ୟତ ପରି ଉର୍ଦ୍ଧ୍ୱ ପବନରେ ଓହ୍ଲାଇ ଆସିଥାଏ, ଯେମିତି ଅବତାରଟିଏ ! ଥାଉ ବରଂ ଅନ୍ଧକାର କି ଅଭିଶାପ ସମଗ୍ର ପରିବେଶକୁ କରି ଆଚ୍ଛନ୍ନ, କଣ୍ଠରେ ତା' ପୂର୍ଣ୍ଣ କାତର ସ୍ତବ, ପ୍ରାଣରେ ଅଭୀପ୍ସା, ପ୍ରକାଶନର ଆଲୋକକୁ ଥରେ ଦେଖିବ ! ଥରେ ପ୍ରକାଶିତ ହୋଇଯିବା ପରେ ତା' ମୃତ୍ୟୁ ଅସମ୍ଭବ ! ସିଏ ଅକ୍ଷୟ ଅକ୍ଷର ବ୍ରହ୍ମ ! 'ଅକ୍ଷରଂ ବ୍ରହ୍ମ ପରମଂ, ଯାହାଙ୍କ 'ସ୍ୱଭାବୋଽଧ୍ୟାତ୍ମମୁଚ୍ୟତେ' ! ଯେମିତି ଅଗ୍ନିରୁ ଅସଂଖ୍ୟ ବା ଶତ ସହସ୍ର ସ୍ଫୁଲିଙ୍ଗ ହୁଏ ରୂପ ପ୍ରାପ୍ତ, ତଥାକ୍ଷରାନ୍ ବିବିଧଃ ସୌମ୍ୟ ଭାବାଃ ପ୍ରଜ୍ଞାୟତେ, ହେ ସୌମ୍ୟ ! ସେହିପରି ଅକ୍ଷର ବହୁତ ପ୍ରକାର ଏବଂ ବହୁତ ପ୍ରକାର ଭାବ ବା ରୂପ କରିଥାଏ ଉତ୍ପନ୍ନ । ତ୍ରିକାଳାତୀତଂ ତଦପ୍ୟୋଂକାର ଏବ । ପୁନଶ୍ଚ ଓମିତ୍ୟେକ୍ଷରଂମିଦ ସର୍ବମ୍, ଏହି ଅକ୍ଷରମାନ ସମସ୍ତ ଓମ୍ ଅଟନ୍ତି ଓ ଅଟନ୍ତି କାଳାତୀତ ବୋଲି ମାଣ୍ଡୁକ୍ୟ ଉପନିଷଦ କରିଛନ୍ତି ବ୍ୟକ୍ତ ।

ଆଗମ ଶାସ୍ତ୍ରରେ ବର୍ଣ୍ଣିତ, ଅକାରଃ ସର୍ବବର୍ଣ୍ଣାଗ୍ର୍ୟ ପ୍ରକାଶଃ ପରମଃ ଶିବଃ, ମୂଳାଧାରରେ ପ୍ରଶୁପ୍ତ ଅଗ୍ନିକ୍ରିୟା-କୌଶଳରେ ଉଦ୍‌ବୁଦ୍ଧ ହୋଇ ଉର୍ଦ୍ଧ୍ୱକୁ ହୁଏ ପ୍ରବାହିତ । ବିକୀର୍ଣ୍ଣହେଲେ ବି ସେହି ବର୍ଣ୍ଣ ମାତୃକା ମୂଳ ସହିତ ଯୋଗ ଅକ୍ଷୁର୍ଣ୍ଣ ରହିଥବା ହେତୁ



Source: Author, Digitized by PPRACHIN, SOA

ତାହାକୁ କୁହାଯାଏ ଅକ୍ଷର । ଯିଏ ବର୍ଣ୍ଣକୁ ଅଧିକୃତ କରିଛି, ସିଏ କାଳକୁ ଅଧିକୃତ କରିଛି । ତେଣୁ ବାକ୍ ଓ ଅର୍ଥ ନିତ୍ୟ ସଂଯୁକ୍ତ । ଏହାରି ଲାଗି ସ୍ଥୂଳ ସୂକ୍ଷ୍ମ ଓ କାରଣ ଜଗତର ଗତି ଅବାଧିତ ! ପୁନଶ୍ଚ-ଯାହା ଶୁକ୍ଳବର୍ଣ୍ଣ ବା ଶୁଦ୍ଧତତ୍ତ୍ୱ, ତାହା ବିନ୍ଦୁ ତତ୍ତ୍ୱ, ତାହା ଚନ୍ଦ୍ରବିନ୍ଦୁ, ତାହା ଚିଦାକାଶ ଏବଂ ତାହା ଶବ୍‌ଦ ମାତୃକା । ଏହାର ବିକ୍ଷୋଭରେ ନାଦ ଏବଂ ବର୍ଣ୍ଣ ହୁଏ ଉତ୍ପନ୍ନ । ଅକାରାଦି ବର୍ଣ୍ଣମାଳା ଏହି ଶୁଦ୍ଧ ସତ୍ତ୍ୱ ରୂପ ଚନ୍ଦ୍ରବିନ୍ଦୁରୁ ଶୁକ୍ଳବର୍ଣ୍ଣରେ ହୋଇଥାଏ କ୍ଷରିତ । ମହା ମହୋପାଧ୍ୟାୟ ଗୋପୀନାଥ କବିରାଜ କରିଛନ୍ତି ଉଲ୍ଲେଖ, ବିକ୍ଷୁବ୍ଧ ସବିତୃ-ବିନ୍ଦୁରୁ ଶୁଦ୍ଧାବସ୍ଥାରେ ବାହାରକୁ ବାହାରି ବିସ୍ତୃତ ନାଦମୟ ରଶ୍ମିଚକ୍ର ଯାହା ତାହା ବାସ୍ତବରେ ଅ-କାର ଆଦି ବର୍ଣ୍ଣମାଳା । ବାହ୍ୟଭାବରେ ଅଣଚାଶ ବାୟୁଙ୍କ କଂପନ ଅଣଚାଶ ବର୍ଣ୍ଣ ବାହାରକୁ ହୋଇଥାଏ ପ୍ରକଟ । ଏହି ପଚାଶ ବର୍ଣ୍ଣ ବ୍ୟଷ୍ଟି ଓ ସମଷ୍ଟି ଭାବେ ଅ ଠାରୁ କ୍ଷ ପର୍ଯ୍ୟନ୍ତ ଷଡ଼ଚକ୍ର ମଝିରେ ପଚାଶ ଦଳରେ ପ୍ରକାଶମାନ । ଏହି ବର୍ଣ୍ଣତତ୍ତ୍ୱ ବା ନାଦତତ୍ତ୍ୱକୁ ଆୟତ ବ୍ୟତତ ବ୍ରହ୍ମବିଦ୍ୟାର କେହି ଅଧିକାର ପ୍ରାପ୍ତ ହୋଇନାହିଁ । ଜଗତ ଶବ୍‌ଦବ୍ରହ୍ମରୁ ସୃଷ୍ଟି, ଶବ୍‌ଦ ବ୍ରହ୍ମଣି ନିଷ୍ଣାତଃ ପର ବ୍ରହ୍ମାଧି ଗଛତି, ଅନ୍ତରେ ସେହି ଶବ୍‌ଦ ବ୍ରହ୍ମରେ ହିଁ ହୋଇଥାଏ ବିଲୀନ ।

ବାହ୍ୟ ଜୀବନ ଆଡ଼କୁ ଘନିଷ୍ଠ ଭାବେ ଗତି ନୁହେଁ କବିଙ୍କ ପ୍ରକୃତ ବିଜିନେସ୍ । ଜୀବନର Passions ଓ Emotions ର ଅଭିବ୍ୟକ୍ତି ପାଇଁ ବା ଆଦର୍ଶ ଜୀବନର ଚିତ୍ରକଳ୍ପକୁ ଆକୃତି ଦେବା ନୁହେଁ କବିଙ୍କ ବିଜିନେସ । Life of the soul କବିତାର Expressive form; କିନ୍ତୁ କବିଙ୍କ ଅନୁଭୂତି ଅଭିବ୍ୟକ୍ତି ଏକ ଅଲଗା ରାସ୍ତା । ଏଥିରେ ନଥାଏ ବୃହତ୍ତର ଅନ୍ତର୍ଦୃଷ୍ଟ । 'Poetry is the rhythmic voice of life.'(Sri Aurovindo) । ଜୀବନର ଛନ୍ଦମୟ ସ୍ୱର କବିତା । ଜୀବନକୁ ନିଜ ଭିତରୁ ନ ଖୋଜି ଆମ କବି ଖୋଜୁଛନ୍ତି ନିଜ ପ୍ରିୟତମାଠୁ, ମିଳୁଛି ? ପ୍ରେମଥାଏ କେଉଁଠି ? ଶବ୍‌ଦ ସଜ୍ଜିତ କରିବାରେ ? ଶବ୍‌ଦ ସଜ୍ଜିତ କରିବା ଏକ ଶିଳ୍ପୀ ସ୍ୱଭାବ, ତହିଁରୁ ଚିନ୍ମୟ ଭଲ ପାଇବାକୁ ପାଇ ହେବ ? ଯେଉଁ କବିତା ସମକାଳ କବିଙ୍କଠାରୁ ଉତ୍ତୁରୁଛି ତାହାକୁ ଅସ୍ତିତ୍ୱବାଦୀ ଗୋଟିଏ ପ୍ରଖ୍ୟାତ ଚିତ୍ର ବୋଲି ଗ୍ରହଣ କଲେ ଠିକ୍ ବୁଝିହେବ, ତାହା ହେଲା ଗାଧୁଆ କୁଣ୍ଡରେ ବନ୍‌ଶୀ ଖେଳା, ମାଛ ମିଳିବ ?

ବ୍ୟକ୍ତିଗତ କିଛି ଭାବନା ସେମାନଙ୍କ ନିସ୍ତେଜ ଶବ୍‌ଦରୁ ଫୁଟି ଉଠୁଛି, ଯାହା କଳାକୁ ସ୍ପଂଦନ ସହିତ ନିଷ୍ପ୍ରାଣ ବସ୍ତୁ ରୂପେ ଅନାଦୃତ ଲାଭ କରାଇଛି । କବିତାର ଏକ୍ସପରିମେଣ୍ଟ ଅର୍ଥ ପାଠକ ଯାହା ଚାହାନ୍ତି ତାହା ଠାରୁ ଅଧିକ ସେମାନଙ୍କୁ ପ୍ରଦାନ କରିବା । ଯାହା ସେମାନେ ନ ଚାହାଁନ୍ତି ତାହାକୁ ଯବରଦସ୍ତ ଦେଲେ ତାହା ହେବ କ'ଣ ?



Source: Author, Digitized by PPRACHIN, SOA

ପ୍ରତ୍ୟାଖ୍ୟାତ ! ଜୀବନ ଝରଣା ଜଳ ସ୍ପର୍ଶରେ ରିଫ୍ରେସ୍ ନୁହେଁ ଯେଉଁ ଭାବ ଓ ଭାବନାର ପୁଷ୍ପ ସେଗୁଡ଼ିକ ଝାଉଁଳା । ପ୍ରାଣ ସ୍ପଂଦନ ଓ ଜୀବନ ଠାରୁ ଛାଡ଼ପତ୍ର ସଂଗ୍ରହ କରିଥାଏ ସେମାନଙ୍କର Subjective impressions ଏବଂ Thought abstractions ! ଭାବନାର ଶକ୍ତି (Power of thought) ଏବଂ ସୌନ୍ଦର୍ଯ୍ୟ କବିତାର ସତ୍ୟ ଓ ଉଦ୍ଦେଶ୍ୟ ଅଟେ କବିତାର ଜୀବନ ଓ ଆବେଗ ! ତେଣୁ ଭାବକୁ କର ସୁନ୍ଦର ଓ ଜୀବନ୍ତ । ଏହି ଦୁଇ ପ୍ରଥମେ ଜୀବନ ସହିତ କର ଏକ, ତା ପରେ ଲେଖ ତୁମ ପ୍ରେମର ମଂତ୍ର, କବିତା ହେବ ସାର୍ବଜନୀନ ଓ ଜାଗତିକ !

ଆଲୋକିତ ଶୂନ୍ୟତାକୁ ଲମ୍ଫ ଦେବା ପରେ ହିଁ ଅନ୍ତର୍ଜୀବନ ତା ଦ୍ୱାରର କବାଟ ଫିଟାଇବ ! Physical life ଓ Physical living କଳ୍ପନାକୁ ଉପାଦାନ ଦେବ, ଦେହ(Form)ଟିଏ ଦେବ; କିନ୍ତୁ ଦେହଟିକୁ ସଂଜୀବୀତ କରିବ ଅନ୍ତର୍ଜୀବନର ଆଲୋକିତ ଶୂନ୍ୟତା । ଶବ୍‌ଦକୁ ସ୍ୱର ଦିଏ ସେହି ଜୀବାତ୍ମା ! ପ୍ରଫେସର ଦାଶରଥି ଦାସ ଗୋଟିଏ ଆଲୋଚନାରେ କରିଛନ୍ତି ବ୍ୟକ୍ତ, 'କବିତା ଚେତନାର ପ୍ରସୂନ ବୋଲି ମୂଲ୍ୟବାନ । ଆଉ ଚୈତନ୍ୟ ମାନେ ଆଧ୍ୟାତ୍ମିକ' । ପୁନଶ୍ଚ ତାଙ୍କ ଅନ୍ୟ ଏକ ମନ୍ତବ୍ୟ-ପ୍ରକୃତରେ ଭଲ କବିତାର ସତ୍ୟ ହଜାର ହଜାର ବର୍ଷ ତଳେ ଯାହା ଥିଲା ଆଜି ତାହା ଅଛି ।...କବିତାର ଅମର୍ତ୍ତ୍ୟ ଆକୃତି ଚିର ପୁରାତନ । କିନ୍ତୁ ଉପଲବ୍ଧି ନୂଆ, ଉପସ୍ଥାପନା ବି ନୂଆ ଓ ସମକାଳୀନ (ଆଧୁନିକ, ସ୍ୱନକ୍ଷତ୍ର ସଂଖ୍ୟା ୨୦୦୩, ପୃଷ୍ଠା ୮) ।

ପ୍ରକାଶ୍ୟତାର ବେଦୀ ଉପରେ କବିତା ଦେବୀଟିଏ । ସିଏ ମୃଣ୍ମୟୀ ନୁହେଁ, ନୁହେଁ ଧାତୁ କିମ୍ବା ପ୍ରସ୍ତର ନିର୍ମିତ ! ସିଏ ଶବ୍‌ଦ ଦ୍ୱାରା ଗଠିତ, ଅନୁରାଗପୂର୍ଣ୍ଣ ଅନୁପମ ଉଚ୍ଚାରଣ ଏକ ! ନିଶ୍ଚିତ !





Source: Author, Digitized by PPRACHIN, SOA

## ନକୁଳ ଚନ୍ଦ୍ର ସାହୁ (୧୯୫୧) :

ଧାରାରେ ବଂଚୁଥିବା ପୃଥିବୀକୁ ପଛ କରି, ଗଦ୍ୟ ଶିଳ୍ପୀ ନକୁଳ ଚନ୍ଦ୍ର ନିର୍ମାଣ କରନ୍ତି ସାରସ୍ୱତ ସ୍ୱପ୍ନର ଏକ ସ୍ୱତନ୍ତ୍ର ଅଥଚ ପରିଚ୍ଛନ୍ନ ପରିଧି ! ସାହିତ୍ୟରେ 'ଶବ୍ଦ'କୁ 'ବ୍ରହ୍ମ'ର ସ୍ୱରୂପରେ ଅଧିଷ୍ଠିତ କରି ସେ ସତ୍ ଚିତ୍ ଆନନ୍ଦର ଉପାସନାରେ ହିଁ ମଗ୍ନ ଓ ବିହ୍ୱଳ ! ସାହିତ୍ୟ ତାଙ୍କ ପାଇଁ କେବଳ ଶବ୍ଦର କାରିଗରୀ ନ ହୋଇ ହୋଇଛି -ସତ୍ୟ ଓ ସମ୍ଭାବନାର ସଂକଳ୍ପ ! ପ୍ରବନ୍ଧର ପୃଥିବୀ ପାଇଁ ସେ ଚେନାଏ ପ୍ରତିଶ୍ରୁତି ଓ ଆଞ୍ଜୁଳାଏ ଆଶ୍ୱାସନା ! ସବୁଥିରେ ନିଆରା ନାୟକପଣ, ତାଙ୍କ ସୃଷ୍ଟିର ନବନୀତ ନିବେଦନକୁ ପ୍ରଦାନ କରେ ମୂର୍ତ୍ତି ରୂପ । କେବେ 'ସୃଷ୍ଟିର ସ୍ନାୟୁ ଓ ଶବ୍ଦର ଆତ୍ମା', 'ସାହିତ୍ୟ ଦର୍ଶନ'ରେ ତ କେବେ 'ଶବ୍ଦର ଅବତାର ଓ ମୁହୂର୍ତ୍ତର ମୂର୍ତ୍ତିରେ ହୋଇଥାଏ ଉଦ୍ଭାସିତ ।'

ଓଡ଼ିଆ ସାହିତ୍ୟର ଅଭିନବ ଇତିହାସ-
ଡ. ବେଣୁଧର ପାଢୀ
(ଧ୍ୱନି ପ୍ରତିଧ୍ୱନି,ରବିବାର ୮.୬.୨୦୧୪)

Source: Author, Digitized by PPRACHIN, SOA

